# ଶାରୀ ଓ ମୂକପୁତ୍ରର କାହାଣୀ
## (ନିର୍ବାଚିତ ଗଳ୍ପ)

ଗାଳ୍ପିକ : ରାଜ୍ୟବର୍ଦ୍ଧନ ଧଳ ମହାପାତ୍ର
ସା/ପୋ- କଣ୍ଟିପୁର, ଜି. ଯାଜପୁର
ମୋ. - ୯୪୩୭୪୨୭୬୯୧
୭୦୦୮୦୨୭୨୮୩



ପ୍ରକାଶକ: ଓଁ ସାଇ ପବ୍ଲିକେଶନ୍
ବାଙ୍କାବଜାର, କଟକ-୨

ମୁଦ୍ରଣ: ପଞ୍ଚସଖା ପ୍ରକାଶନ
ସୂତାହାଟ, କଟକ

ଡିଟିପି : ଉମା ପ୍ରିଣ୍ଟର୍ସ
ଜଗନ୍ନାଥ ବଲ୍ଲଭ, କଟକ-୧

ପ୍ରଚ୍ଛଦ : ରମାକାନ୍ତ ସାମନ୍ତରାୟ
ଭୁବନେଶ୍ୱର

ପ୍ରଥମ ମୁଦ୍ରଣ: ୨୦୨୧

ମୂଲ୍ୟ : ୨୪୫/- ଟଙ୍କା

**SARI O MUKAPUTRARA KAHANI**
(Selected Stories)

**Written by :**
**Rajyabardhan Dhal Mahapatra**
At/Po- Kantipur
Dist. - Jajpur



Published by : **Omm Sai Publication**
Banka Bazar, Cuttack-2

Printed by : **Panchasakha Prakashan**
Sutahat, Cuttack

DTP by : **Uma Printers**
Jagannath Ballav, Cuttack-1

Cover Design by : **Ramakanta Samantaray**

**1st. Publication : 2021**

**Price : 245/-**

# ଉତ୍ସର୍ଗ

ପତ୍ନୀ ପୁଷ୍ପା

ଓ

ମୋତେ ଆଜିଯାଏ ଶ୍ରଦ୍ଧାଦେଇ
ଲେଖେଇ ଆସିଥିବା ମୋର ପ୍ରିୟ
ପାଠକ / ପାଠିକା ମାନଂକୁ

# ଗଳ୍ପସୂଚୀ

# ଶାରୀ ଓ ମୂକପୁତ୍ରର କାହାଣୀ

ରାତି ଅଧରେ ଭୀମରାଜ ପକ୍ଷୀର ଡାକ ଶୁଣିଲା ଗାଆଁ ମୁଖିଆ । ବିଶ୍ୱାସ କରିପାରିଲା ନାହିଁ କାନକୁ । ଭଲ କରି ଶୁଣିବାପାଇଁ ପୁଣିଥରେ କାନ ପାରିଲା । ନା, ଇଏ ଭୀମରାଜ ପକ୍ଷୀର ଡାକ । ଅଶୁଭ, ଅଶୁଭ । ଡାକ ପକାଇଲା ସାହିସାରା । ବାଡ଼େଇଲା ତାଟିକବାଟ, ଉଠ ଉଠ । ନିଦ ମଳମଳ ଆଖିରେ ଖୋଲିଗଲା ସବୁ ତାଟିକବାଟ । ଘେରିଗଲା ବହୁ ପ୍ରଶ୍ନିଳ ଆଖି । କ'ଣ ହୋଇଛି ? ବାଘ ପଶି ଆସିଛି କି ଗାଆଁ ଭିତରକୁ ? ଉଠାଇ ନେଇଛି କି କାହାର ଛେଳି, ମେଣ୍ଢା ଅବା ଗାଈକୁ ? ମୁଖିଆ ସମସ୍ତଙ୍କୁ ଚୁପ୍ ରହିବାକୁ ନିର୍ଦ୍ଦେଶ ଦେଇ କହିଲା – "ଶୁଣ, ଶୁଣ ଏ ଡାକକୁ ।"

ସମସ୍ତେ କାନପାରିଲେ ରାତିର ଅନ୍ଧାର ଓ ନିରବତାକୁ ଚିରି ଭାସି ଆସୁଥିବା ସ୍ୱରପ୍ରତି ।

"ଶୁଣିପାରୁଛ ?"

ଆପାତତଃ ଯୁବକ ଅବସ୍ଥାରେ ଥିବା ଦୁଇ ଜଣ କହିଲେ – "ଶୁଣୁଛୁ ଯେ, ହେଲେ ଇଏ ବାଘ କିମ୍ବା ହାତୀର ଗର୍ଜନ ନୁହଁ ଇଏ ଏକ ପକ୍ଷୀର ସ୍ୱର ।"

"ହଁ, ଇଏ ପକ୍ଷୀର ସ୍ୱର ।"

ଏ ଶବ୍ଦକୁ କାନ ପାରିଥିବା ବୟସ୍କ ଲୋକମାନେ ଭିତରେ ଭିତରେ ଭୀତଗ୍ରସ୍ତ ହୋଇସାରିଥିଲେ । ସେମାନେ କହିଲେ – "ଇଏ କେବଳ ପକ୍ଷୀର ଡାକ ନୁହଁ, ଗାଆଁ ଉଜାଡ଼ିବାର ଡାକ । ଆମେ ଏଇନେ କ'ଣ କରିବା ମୁଖିଆ ? କ୍ଷେତରେ ପାଚିଛି ଧାନ, ଡଙ୍ଗରରେ ମକା, କାନ୍ଦୁଲ, ଏସବୁକୁ ଛାଡ଼ି କେମିତି.... ?

"ଇଏ ତ ପହରିଆର ଭାଗ୍ୟଲିଖନ । କ୍ଷେତର ଧାନ, ଡଙ୍ଗରର ମକା, କାନ୍ଦୁଲକୁ ଲୋଭ କରି କ'ଣ ଜୀବନ ଦେବା କି ? ବଞ୍ଚିଥିଲେ ସିନା ଲୋଭ, ଯେବେ ଜୀବନ ନ ରହିବ, ତେବେ ?

"କୁଆଡ଼େ ଯିବା ତା'ହେଲେ ?"

ଏଠି ଆସି ଗାଆଁ ବସାଇବାଟା କେତେ ବରଷ ହୋଇଛି ? ଏଠିକି ଆସି ରହିବା ବେଳେ ଆମେ କ'ଣ ଚିନ୍ତା କରିଥିଲେ ସେକଥା ? ଗୋଡ଼ ଯୁଆଡ଼େ କଢ଼ାଇନେଲା ଏବଂ ଯେଉଁ ଜାଗା ଆପଣାର ଲାଗିଲା ସେଇଠି ବସିଯିବା । ଆଉ ଡେରି କରନା, ଯାଅ । ବାନ୍ଧିପକାଅ ଯେଝା ଯେଝା ଆସବାବପତ୍ର । ରାତି ନ ପାହୁଣୁ ଏଠି ଲଗାଇବାକୁ ପଡ଼ିବ ନିଆଁ ।

ସୁନାବେଡ଼ା ଅଭୟାରଣ୍ୟ ମଝିରେ ଲାଗିଛି ନିଆଁ । ପହରିଆମାନେ ଉଜାଡ଼ି ଦେଇଛନ୍ତି ଗାଆଁ । ଏ ଖବର ଆମ ଅଫିସରେ ପହଞ୍ଚିବାରୁ ଡି.ଏଫ୍.ଓ. ବଡ଼ ବିଚଳିତ ହୋଇ ଡକାଇ ପଠାଇଲେ ଆମ ସମସ୍ତଙ୍କୁ । ନର୍ଦ୍ଦେଶ ଦେଲେ ତୁରନ୍ତ ଯାଇ ଦେଖ, ଗାଆଁକୁ ଜାଳି ଦେଇଛନ୍ତି ମାନେ ସେ ନିଆଁ ବ୍ୟାପିଯିବ ସାରା ଅଭୟାରଣ୍ୟକୁ । ପୁଣି ଗୋଟାଏ ଜାଗାରେ ଯାଇ ସେମାନେ ବସାଇବେ ଗାଆଁ । କାଟିବେ ଜଙ୍ଗଲ । ଛାରଖାର ହୋଇଯିବ ଏ ଅଭୟାରଣ୍ୟ ।

ମୋ ଉପରେ ଦାୟିତ୍ୱ ପଡ଼ିଲା କିଛି ଫରେଷ୍ଟର ଓ ଫରେଷ୍ଟଗାର୍ଡଙ୍କୁ ସାଥୀରେ ନେଇ ସେଠାରେ ପହଞ୍ଚିବାକୁ । ସେଠାରେ ପହଞ୍ଚିବା ସହଜ କାର୍ଯ୍ୟ ନ ଥିଲା । ଫରେଷ୍ଟ ରେଷ୍ଟ ସେଡ୍ ଯାଏଁ ମାତ୍ର ଯାଇପାରିବ ଜିପ୍ । ସେଠାରୁ ଦଶ ବାର କିଲୋମିଟର ଜଙ୍ଗଲ, ଝରଣା ଓ ପାହାଡ଼ ଅତିକ୍ରମ କଲେ ଯାଇ ପଡ଼ିବ ପହରିଆପଡ଼ା । ତେଣୁ ରୀତିମତ କ୍ୟାମ୍ପ ଆରେଞ୍ଜମେଣ୍ଟ କରି ଆମେ ବାହାରି ପଡ଼ିଲୁ ସେ ଗାଆଁ ଅଭିମୁଖେ ।

ପହରିଆପଡ଼ାରେ ପହଞ୍ଚିବା ବେଳକୁ ବେଳ ରତରତ । ଜଳି ଯାଇଥିଲା ପୂରା ଗାଆଁଟି । ଗାଆଁ ପାଲଟି ଯାଇଥିଲା ଠାଏ ଠାଏ ଗଦା ହୋଇଥିବା ପାଉଁଶ ସ୍ତୂପରେ । ଆମେ ପାଉଁଶଗଦା ଉଖାରି ଦେଖିଲୁ ନିଆଁ ଅଛି କି ନାହିଁ । ଆମର ସୌଭାଗ୍ୟ ଯେ ପାଉଁଶଗଦାର ନିଆଁ ନ ଥିଲା କି ନିଆଁ ବ୍ୟାପି ନଥିଲା ପାଖ ଜଙ୍ଗଲକୁ । ପ୍ରଥମ ଦାୟିତ୍ୱରୁ ଅବ୍ୟାହତି ମିଳିବାରୁ ଆମେ ସ୍ୱସ୍ତିରେ ନିଃଶ୍ୱାସ ନେଲୁ । ସେମାନେ କୁଆଡ଼େ ଗଲେ ପରେ ଖୋଜିବା । ଏବେ ରାତ୍ର ରହଣିପାଇଁ ଟେଣ୍ଟ୍‌ର ବ୍ୟବସ୍ଥା କଲୁ ।

ସକାଳେ ଝରଣାକୁ ଯାଇ ନିତ୍ୟକର୍ମ ସାରି ଫେରିବେଳେ ଦେଖିଲି ଗଛରେ ବନ୍ଧା ଯାଇଥିବା ଫାଶରେ ଛନ୍ଦି ହୋଇ ରହିଛି ଚଢ଼େଇଟିଏ । ଗଛରେ ଚଢ଼ି ଫାଶ ଫିଟାଇ ଚଢ଼େଇଟିକୁ ଧରି ଦେଖିଲି ସେଇଟି ଗୋଟିଏ ଶାରୀ ଛୁଆ ।

ମୁଁ ଆମ ଟେଣ୍ଟ ପାଖରେ ପହଞ୍ଚୁ ପହଞ୍ଚୁ ଆମର ଜଣେ ଫରେଷ୍ଟ ଗାର୍ଡ ମୋ ହାତରେ ଶାରୀ ଛୁଆଟିକୁ ଦେଖି କହିଲା – "ଆପଣ ଏ ଶାରୀଟିକୁ କେଉଁଠୁ ଧରିଲେ ସାର୍ ? ଇଏ ତ ଏକ ବିରଳ ଜାତୀୟ ଶାରୀ ।"

"ବିରଳ ଜାତୀୟ" । ମୁଁ ବିସ୍ମୟରେ ପଚାରିଲି ।

"ହଁ ସାର୍, ଏହି ଜାତୀୟ ଶାରୀ କଥା କହିବାରେ ମଣିଷଙ୍କୁ ଟପିଯାଏ । ଯାକୁ ବେଶି ଶିଖାଇବାକୁ ପଡ଼େନା । ଇଏ ଶୁଣି ଶୁଣି ସବୁ ଶିଖିଯାଏ ।"

"ତା'ହେଲେ ତ ବହୁତ ଭଲ କଥା । ମୋ ପୁଅକୁ ତ ଏବେ ଦୁଇମାସ ହୋଇଛି । ଇଏ ଆଉ ଗୋଟେ ସଦସ୍ୟ ଯୋଡ଼ା ହୋଇଯିବ ପରିବାରରେ । ଉଭୟ ଏକା ସାଙ୍ଗରେ କଥା କହିବା ଆରମ୍ଭ କରିବେ ।"

ଘରେ ପହଞ୍ଚିବା ପରେ ଏ ଶାରୀ ଛୁଆର ବିଶେଷତ୍ୱ ବିଷୟରେ ମୋ ସ୍ତ୍ରୀଙ୍କୁ କହିଲି । ସେ ଖୁସି ହୋଇ ତା' ପାଇଁ ଗୋଟେ ଭଲ ପଞ୍ଜୁରୀର ବ୍ୟବସ୍ଥା କଲେ ।

ଦୋଳିରେ ଝୁଲୁଥିଲା ପୁଅ । ପଞ୍ଜୁରୀ ଭିତରେ ଶାରୀ । ପୁଅ ହାତ ଗୋଡ଼ ଛାଟି ଖେଳନାକୁ ଚାହିଁ ହାଉଁ ହାଉଁ ହେଉଥିଲା । ଶାରୀଟି ପଞ୍ଜୁରୀରେ ତଳ ଉପର ହୋଇ ଖଣ୍ଡି ରାବ ଦେଉଥିଲା । ପୁଅ ପେଟେଇବା ଆରମ୍ଭ କଲା । ଶାରୀଟି ପର ହଲାଉଥିଲା ପଞ୍ଜୁରୀ ଭିତରେ ।

ପୁଅ ହାମୁଡ଼େଇବା ଆରମ୍ଭ କଲା, ଶାରୀଟି ଖଣ୍ଡି ଖଣ୍ଡି କଥା କହିଲା, ଶାରୀଟି ଯେଉଁଦିନ ଖଣ୍ଡି ଖଣ୍ଡି କଥା କହିଲା, ସେଦିନ ଆମେ ଖୁସି ହୋଇଗଲୁ । ମାତ୍ର ପର ମୁହୂର୍ତ୍ତରେ ସେ ଖୁସି ମିଳାଇଗଲା ଯେତେବେଳେ ଆମେ ଭାବିଲୁ ଆଠ ନଅ ମାସର ଶାରୀ ଛୁଆଟା ଯଦି କଥା କହିବା ଶିଖିପାରିଲା, ତେବେ ଆମ ପୁଅ ତ କିଛି ଶବ୍ଦ କହିପାରୁଥାଆନ୍ତା । ମାତ୍ର ଏହା ଭିତରେ କେବଳ ହାଉଁ ହାଉଁ ଶବ୍ଦ ବ୍ୟତୀତ ଆଉ ତ କିଛି ଶିଖିନି ।

ମନକୁ ବୁଝାଇଲୁ । ବହୁତ ପିଲା ବିଳମ୍ବରେ କଥା କହି ଶିଖିବାର ନଜିର ଅଛି, ହୁଏତ ପୁଅ ବିଳମ୍ବରେ କଥା କହିବ । ବର୍ଷେ ଗଲା, ପୁଅର ସେହି ଦଶା । ଦେଢ଼ ବର୍ଷ ଗଲା ତଥାପି ଖୋଲିଲାନି ପାଟି । ଅଥଚ ଶାରୀର ପାଟିରେ ଏବେ ବାଜୁ ନ ଥିଲା ବାଟୁଳି । ବାପା, ମାଆଠାରୁ ଆରମ୍ଭ କରି ପିଅନ, ଚାରକଯାଏଁ ସମସ୍ତଙ୍କ ନାଆଁ ଥିଲା ତା' ତୁଣ୍ଡରେ । ଟି.ଭି. ବିଜ୍ଞାପନକୁ ବି ଶୁଣି ଶୁଣି ତାକୁ ଧୀରେ ଧୀରେ କହିବା ଆରମ୍ଭ କରିଦେଇଥିଲା । ଘରର କଲିଂ ବେଲ୍ ବାଜିବକ୍ଷଣି ଡାକ ଛାଡୁଥିଲା ମାଆ ! କିଏ ଆସିଲେ ଦେଖ, ପୁଅ କାନ୍ଦିଲେ ଡାକୁଥିଲା, ମାଆ ! ବାବୁ କାନ୍ଦୁଛନ୍ତି କିମ୍ୱା ପୁଅ ମାଟି, ଗୋଡ଼ି ପାଟିରେ ପୂରାଇଲେ, ବାବୁ ଅସନା ହେଉଛନ୍ତି ବୋଲି ଡାକ ଛାଡୁଥିଲା ଶାରୀ । ଶାରୀର କଥା ଶୁଣି ଶୁଣି ଆମେ ଚିନ୍ତିତ ହୋଇପଡୁଥିଲୁ ପୁଅପାଇଁ । ତା'ର

ଯଦି କିଛି ତ୍ରୁଟି ନ ଥାନ୍ତା ତାହାଲେ ଏତେଦିନ ଯାଏ ପାଟି ଖୋଲୁ ନଥାନ୍ତା କିପରି ? ଦେଢ଼ ବର୍ଷର ହେଲାଣି, କେବଳ ବିକଟାଳ ହାଉଁ ହାଉଁ ଶବ୍ଦ ବ୍ୟତୀତ ଆଉ କିଛଇ ଶବ୍ଦ ତା'ପାଟିରୁ ବାହାରୁନି କିପରି ?

ପୁଅକୁ ଧରି ପହଞ୍ଚିଲୁ ଡାକ୍ତରଙ୍କ ପାଖରେ । ସେ ସବୁ ପରୀକ୍ଷା ନିରୀକ୍ଷା କଲାପରେ କହିଲେ, କୌଣସି ଗଠନଗତ ତ୍ରୁଟି ନାହିଁ । କିଛି ପିଲାଙ୍କର ବହୁ ବିଳମ୍ବରେ ପାଟି ଖୋଲେ । ଏହାର ମଧ୍ୟ ସେମିତି ହୋଇପାରେ । ତେଣୁ ଧୈର୍ଯ୍ୟ ଧରି ଅପେକ୍ଷା କରନ୍ତୁ । ତେବେ ଚେଷ୍ଟା କରିବେ ତା' ସହ ବେଶି କଥାବାର୍ତ୍ତା କରିବା ପାଇଁ ।

ଦୁଇବର୍ଷ ପୂରିଲା, ଫିଟିଲାନି ପୁଅର ପାଟି । ବରଂ ତା'ର ହାଉଁ ହାଉଁ ଶବ୍ଦଟା ଧୀରେ ଧୀରେ କର୍କଶ ରୂପ ଧାରଣ କରୁଥିଲା । ଆମେ ଆଶଙ୍କା କଲୁ ପୁଅ ମୂକ ହେବ । ଏଥର ଦେଖାଇଲୁ ବଡ଼ଡାକ୍ତର । ସେ ସମସ୍ତ ପରୀକ୍ଷା ପରେ କହିଲେ, ଆପଣଙ୍କ ପୁଅର ସ୍ୱରପେଟିକାରେ କୌଣସି ଗଠନଗତ ତ୍ରୁଟି ନାହିଁ । ସମସ୍ୟାଟା ରହିଛି ସ୍ନାୟୁଗତ । ଭଲ ହେବ ଯଦି ଆପଣ ଏଥିପାଇଁ କୌଣସି ସ୍ନାୟୁ ବିଶେଷଜ୍ଞଙ୍କ ପରାମର୍ଶ ନିଅନ୍ତି । ଏ ଦିଗରେ ଆମକୁ ସାହାଯ୍ୟ କରିବାପାଇଁ ସେ ଜଣେ ସ୍ନାୟୁ ବିଶେଷଜ୍ଞଙ୍କର ଠିକଣା ଦେଲେ ।

ତାଙ୍କ ପାଖରେ ପହଞ୍ଚିବା ପରେ 'ଦାସେ ଆଇଲେ ମୂଳରୁ ଗାଆ' ପରି ପୁଣି ଥରେ ଆରମ୍ଭ ହେଲା ସମସ୍ତ ପରୀକ୍ଷା ନିରୀକ୍ଷା । କିଛି ନୂଆ ପରୀକ୍ଷା ସହ ଯୋଡ଼ା ହେଲା ହେଡ୍ ସ୍କାନିଂ । ସବୁ ପରୀକ୍ଷା ସରିବା ପରେ ଡାକ୍ତ କହିଲେ – "ସ୍ୱିଚ୍ ମୋଡୁଲେସନ୍‌ପାଇଁ ବ୍ରେନକୁ ଯେଉଁ ନର୍ଭ କମାଣ୍ଡ କରୁଛି ତାହା ଇନାକ୍ଟିଭ ହୋଇଯାଇଛି । ତାକୁ ଅପରେସନ୍ କରାଯାଇ ଆକ୍ଟିଭେଟ୍ କରାଯାଇପାରେ । କିନ୍ତୁ ସେଥିରେ ଗୋଟିଏ ସମସ୍ୟା ରହିଛି ।"

" କି ସମସ୍ୟା ?"

"ଯଦି ଅପରେସନ୍ ସଫଳ ନ ହୁଏ, ତେବେ ଲାଭ ଅପେକ୍ଷା କ୍ଷତି ଅଧିକ ହେବ । ଆପଣମାନେ ଯଦି ସେ ରିକ୍‌ସ ନେବାକୁ ପ୍ରସ୍ତୁତ ହେବେ ତେବେ ମୁଁ ଅପରେସନ୍ କରିଦେଇପାରେ, କିନ୍ତୁ ଏବେ ନୁହେଁ. ଏହାର ବୟସ ବଢ଼ିବା ପରେ ।"

"କେତେ ବର୍ଷ ହେଲେ ?"

"ପିଲାକୁ ପାଞ୍ଚବର୍ଷ ହେଉ । ତେବେ ଏହା ଭିତରେ ଆପଣମାନେ ଚେଷ୍ଟା ଜାରି ରଖିଥାଆନ୍ତୁ । କୌଣସି ଚମତ୍କାରିତା ଘଟି ସେ ଯଦି କଥା କହିବା ଆରମ୍ଭ କଲା ତ ଭଲ କଥା ।"

ଆମ ମନ ବୁଝିବାପାଇଁ ଡାକ୍ତର ଏକଥା କହୁଥିଲେ, ଆମେ ଜାଣିଥିଲୁ । କିଛି ଯେ ଚମତ୍କାରିତା ଘଟିବ – ଏ ବିଶ୍ୱାସ ଯଦିଓ ଆସୁ ନ ଥିଲା ତଥାପି ମନକୁ ବୁଝାଇ ଫେରିଲୁ । ଫେରିବା ପରେ ମୋର ସ୍ତ୍ରୀ ସଂପୂର୍ଣ୍ଣ ଈଶ୍ୱରଙ୍କ ଭରସାରେ ରହି ନାନା ଧର୍ମ କର୍ମରେ ମନ ଦେଲେ । ଘରେ ଅହରହ ଗୀତା, ଭାଗବତ, ଚଣ୍ଡୀପାଠ,ହୋମ, ଯଜ୍ଞ ଆମକୁ ବାରମ୍ବାର ସ୍ମରଣ କରିବାକୁ ବାଧ୍ୟ କରୁଥିଲା ଯେ, ଏ ପୂଜା କୌଣସି ମହତ୍ତର ଲକ୍ଷ୍ୟ କିମ୍ବା ମୋକ୍ଷ ପ୍ରାପ୍ତି ପାଇଁ ଉଦ୍ଦିଷ୍ଟ ନୁହେଁ, ଏହା କେବଳ ପୁଅର ପାଟି ଖୋଲିବା ପାଇଁ ।

ଆମର ମନ୍ତ୍ର ଜପ ଓ ପୂଜାର ପ୍ରାଦୁର୍ଭାବ ଯେତେବେଳେ ଅଧିକ ବୃଦ୍ଧି ପାଏ, ବାଲୁତ ପୁତ୍ର ତାହାର ସ୍ୱଭାବ ସୁଲଭ ହାଉଁ ହାଉଁ ସ୍ୱରକୁ ଅଧିକ କରେ । ସେ ପୂଜା ପାଠରେ ନିଜକୁ ସାମିଲ କରି ବସିରହେ ପାଖରେ । ଏହା ଫଳରେ ମୋ ସ୍ତ୍ରୀଙ୍କ ମନରେ ଧୀରେ ଧୀରେ ବିଶ୍ୱାସ ଜନ୍ମୁଥିଲା ଯେ ଦିନେନା ଦିନେ ଅକସ୍ମାତ୍ ଖୋଲିଯିବ ତା' ପାଟି, ସେ ଡାକ ଛାଡ଼ିବ ମାଆ – ମାଆ ।

ଆମର ଦୀର୍ଘଦିନର ପୂଜା ଫଳରେ ମଧ୍ୟ ଘଟୁ ନଥିଲା ସେମିତି କିଛି ଚମତ୍କାରିତା । କିନ୍ତୁ ଆମ ଅଲକ୍ଷ୍ୟରେ ଘଟୁଥିଲା ଆଉ ଏକ ଚମତ୍କାରିତା ଯାହାକୁ ଆମେ କେହି ନଜର ଦେଇ ନଥବଲୁ । ବିଷ୍ଣୁ ସହସ୍ର ନାମଠାରୁ, ଗୀତା, ଭାଗବତ ଓ ବିଭିନ୍ନ ମନ୍ତ୍ର, ଯାହା ଏଇ କିଛି ବର୍ଷ ହେଲା ପଢ଼ା ଚାଲିଥିଲା ଘରେ, ତାକୁ ଶାରୀଟି ପ୍ରାୟ ମୁଖସ୍ତ କରିସାରିଥିଲା । ଆମର ନିତିଦିନିଆ କାମପାଇଁ ଯେତେବେଳେ ବନ୍ଦ ହୋଇଯାଏ ମନ୍ତ୍ରପାଠ, ସେ ଆରମ୍ଭ କରିଦେଉଥିଲା ତା'ର ମନ୍ତ୍ରପାଠ । ସଂସ୍କୃତ ଶବ୍ଦର ଏତେ ଶୁଦ୍ଧ ଉଚ୍ଚାରଣ ପୁଣି ସାମାନ୍ୟ ଏକ ପକ୍ଷୀ ମୁହଁରେ ଶୁଣି ଆମେ ଆଶ୍ଚର୍ଯ୍ୟ ହେଉଥିଲୁ । ମୁଁ ତ ମନେ ମନେ ଭାବୁଥିଲି ସେ ଫରେଷ୍ଟର କହିଥିବା କଥା ସତ, ଇଏ ଏକ ବିଚିତ୍ର ଓ ବିରଳ ପକ୍ଷୀ ।

ସିନ୍ଦୂରା ଫାଟିବା ପୂର୍ବରୁ ଶାରୀ ଡାକ ଛାଡ଼ିବ – ମୁନ୍ନା ଉଠ, ସକାଳ ହେଲା । ତା'ର ଡାକ ଶୁଣି ପୁଅ ଧୀରେ କରି ଉଠିଯାଏ ତା' ପଞ୍ଜୁରି ପାଖକୁ । ଶାରୀ କହିବ, କୁହ ଓଁ । ପୁଅ ଚେଷ୍ଟା କରୁଥିବ ବାରମ୍ବାର । ମାତ୍ରେ ସବୁବେଳ ପରି ସେଇ ଗୋଟିଏ ଶବ୍ଦ ହିଁ ବାହାରୁଥିବ ତା' ପାଟିରୁ, ହାଉଁ ହାଉଁ । ପୁଅ ତା'ର ପଞ୍ଜୁରୀର ଦ୍ୱାର ଖୋଲିଦେବ । ସେ ଉଠି ଆସି ତା' କାନ୍ଧରେ ବସିଯାଇ କହିବ, କୁହ ଓଁ । ସେ ଓଁ ଓଁ କହି ଚାଲିଥିବ ଅଥଚ ପୁଅ ଓଲଟାଇ ପାରୁ ନଥିବ ତା'ର ଜିଭକୁ । ସେ କେବଳ

ଗେହ୍ଲା କରୁଥିବ ଶାରୀଟିକୁ ପରମ ଆତ୍ମୀୟତାରେ । ଚାହୁଁଥିବ ତା'ର କଥାକୁହା ଥଣ୍ଟକୁ ଗୋଟେ ବିସ୍ମୟ ଭାବ ନେଇ ।

ପୁଅ ଯଦିଓ କଥା କହିପାରୁ ନ ଥିଲା, ତଥାପି ଅନ୍ୟ ସବୁ ସ୍ୱାଭାବିକ ପିଲାଙ୍କ ପରି ତା'ର ଅଝଟ ପଣ ଥିଲା । ସବୁଠୁ ବେଶି ଅଝଟ ଥିଲା ଖାଇବା ସମୟ । କିନ୍ତୁ ଶାରୀ ପାଖରେ ବସାଇ ଖୁଆଇବା ବେଳେ ତା'ର ଅଝଟ କମି ଯାଉଥିଲା । ଶାରୀ ପାଖରେ କିଛି ବୁଟ ଭଜା, ମଟରଛୁଇଁ କିମ୍ବା ଫଳଟିଏ ରଖିଦେଲେ, ସେ ତା'ର ଖାଇବାକୁ ଦେଖି ଦେଖି ବିନା ଅଝଟରେ ଖାଇ ନେଉଥିଲା ।

ପୁଅ କଥା କହିପାରୁ ନଥିଲା । ଏଥିପାଇଁ ବନ୍ଧୁବାନ୍ଧବ, ଆତ୍ମୀୟମାନଙ୍କ ମନରେ ଥିଲା ଦୁଃଖ । ତେଣୁ ଲାଗିରହିଥିଲା ଏମାନଙ୍କ ଭିଡ଼ ଆମ ଘରେ । ପୁଅ ପାଇଁ ସେମାନେ ଆମକୁ ସମବେଦନା ଜଣାଇବାର ଠିକ୍ ପରେ ପରେ ଆଗ୍ରହ ପ୍ରକାଶ କରୁଥିଲେ ଶାରୀର କଥା ଶୁଣିବା ପାଇଁ । ତା' କଥା ଶୁଣି ସେମାନେ ଏମିତି ତନ୍ମୟ ଓ ଆଶ୍ଚର୍ଯ୍ୟ ହୋଇଯାଉଥିଲେ ଯେ ଫେରିବା ବେଳଯାଁଏ କେବଳ ପ୍ରଶଂସା କରୁଥିଲେ ଶାରୀର କଥା କହିବାର ଶକ୍ତିକୁ । ଶାରୀର କଥା ଶୁଣିବା ପରେ ସେମାନେ ଯେଉଁ ଉଲ୍ଲାସ ଭାବ ଦେଖାନ୍ତି ସେଥିରେ କୁଆଡ଼େ ହଜିଯାଏ ସେମାନଙ୍କର ଆସିବାର ଅସଲ ଉଦ୍ଦେଶ୍ୟ । ସେମାନେ ଫେରିଯିବା ପରେ ଅଧିକ ବିମର୍ଷ ହୋଇପଡ଼ନ୍ତି ମୋ ସ୍ତ୍ରୀ । ରାଗ ତମ ତମ ହୋଇ ପ୍ରଶ୍ନ କରନ୍ତି – " କାହିଁକି ଆସିଥିଲେ ଏମାନେ, ପୁଅର ମୂକପଣ ପାଇଁ ସମବେଦନା ଜଣାଇବା ପାଇଁ ନା ଶାରୀର କଥା ଶୁଣିବା ପାଇଁ ?"

ଧୀରେ ଧୀରେ ଏଇ ଛୋଟିଆ ସହରଟିରେ ଗୋଟିଏ ଚର୍ଚ୍ଚାର ବିଷୟ ହୋଇଯାଇଥିଲା ଶାରୀ । ମୋର ପରିଚୟରେ ମଧ ଯୋଡ଼ା ହୋଇଯାଇଥିଲା, ଶାରୀ ବାଲା ରେଞ୍ଜର । ମୁଁ ଯେଉଁଠିକୁ ଯାଉଥିଲି ଯେମିତି ହେଲେ କେଉଁ ବାଗରେ ପଡ଼ିଯାଏ ଶାରୀ କଥା । ମୁଁ ତାକୁ କେଉଁଠୁ କିଣିଥିଲି, କେତେ ଟଙ୍କାରେ କିଣିଥିଲି ଏବଂ ଏହି ଭେରାଇଟିର ଶାରୀ କେଉଁଠି ମିଳିବ ଇତ୍ୟାଦି ଇତ୍ୟାଦି । କେତେକ ତ କହୁଥିଲେ ଶାରୀ କଥା କହେ ଶୁଣିଥିଲୁ, ଦେଖିଥିଲୁ ମଧ । ସେସବୁ ସାଧାରଣ ପଦେ ଦୁଇପଦ କଥା – ରାମ ରାମ, ଚକ୍ରଧର, ପକ୍ଷୀ ଜନ୍ମରୁ ପାରି କର । ଅତି ବେଶୀରେ ପାଳିଥିବା ଲୋକର ପିଲାମାନଙ୍କର ନାଆଁ ଧରି ଡାକିବା ଇତ୍ୟାଦି । ମାତ୍ର ଇଏ ତ ଅଦ୍ଭୁତ ଶାରୀ । ବିଷ୍ଣୁ ସହସ୍ର ନାମଠାରୁ ଗୀତା, ଭାଗବତ ଯାଏ ସବୁ ତୁଣ୍ଡରେ । ଆପଣ ତାକୁ ଏସବୁ ଶିଖାଇଲେ ନା ସିଏ ଆପେ ଆପେ ଶିଖିଗଲା ?

– ଆପେ ଆପେ ।

– ଆପେ ଆପେ ! ଇଏ ତ ନିଶ୍ଚୟ ଶୁକମୁନିଙ୍କୁ ଦିବ୍ୟ ଜ୍ଞାନ ଦେଇଥିବା ଶାରୀର ବଂଶଧର ହୋଇଥିବ । ଯାହା ହେଉ ଏଇଟାକୁ ଆପଣଙ୍କ ଭାଗ୍ୟ କହିବ, ଏମିତିକା ଶାରୀଟିଏ ପାଇଗଲେ ।

ଏପଟେ ପୁଅର ବାକ୍‌ହୀନତା ଓ ସେପଟେ ଶାରୀର ବାକ୍‌ପଟୁତା । ତା'ର ପ୍ରଶଂସା ଶୁଣି ଶୁଣି ତା' ପ୍ରତି ମୋର ଜନ୍ମୁଥିଲା ବିଦ୍ୱେଷ ଓ ମୋ ସ୍ତ୍ରୀଙ୍କର ଈର୍ଷା । ବେଳେବେଳେ ସେ ତା'ର ମାଆ, ମାଆ, ଡାକରେ ଅତିଷ୍ଠ ହୋଇ କହିପକାନ୍ତି, "ବନ୍ଦ କର, ବନ୍ଦ କର ସେ ଡାକ । ଯା' ମୁହଁରୁ ମାଆ ଡାକ ଶୁଣିବା କଥା ତ ଶୁଣିପାରୁନି, ଆଉ ଇଏ ଡାକିଲା, ମାଆ – ମାଆ ! ମୁଁ କ'ଣ ଅଣ୍ଡା ଫୁଟେଇ ତୋତେ ଜନ୍ମ କରିଥିଲି ?"

ମୁଁ ଜାଣିପାରେ ତାଙ୍କର କ୍ରୋଧର କାରଣ । ତାଙ୍କୁ ବୁଝାଏ ତା' ଉପରେ ଅଯଥାରେ ରାଗି ଲାଭ କ'ଣ ? ଏଇଟା ଆମର ବିମର୍ଷ ଭାଗ୍ୟ ବୋଲି ଧରିନିଅ ।

ମୋ ସ୍ତ୍ରୀ ତାଙ୍କ କ୍ରୋଧ ପ୍ରଶମିତ କରିବା ପରିବର୍ତ୍ତେ କହନ୍ତି, ମୋର ତ ଧାରଣା ହେଉଛି ମୋ ପୁଅ ମୂକହେବା ପାଇଁ ଏ ଶାରୀ ଦାୟୀ । ଇଏ ନିଶ୍ଚୟ ଏକ ମାୟାବୀ ଶାରୀ । ଚୋରାଇ ନେଇଛି ମୋ ପୁଅର କଥା କହିବା ଶକ୍ତିକୁ । ନଚେତ୍ ଶାରୀଟିଏ ହୋଇ ପାଟିରେ ବାଟୁଳି ବାଜୁନି, ଏତେ ମନ୍ତ୍ର, ଶ୍ଳୋକ କେମିତି ଗାଇଯାଉଛି ?

ମୁଁ ଗମ୍ଭୀର ହୋଇ ଚିନ୍ତା କଲି, ସତ ବି ହୋଇପାରିଥାଏ ଏକଥା । ଭଗବାନ ଗୋଟିଏ ପଟରେ ଅଯାଚିତ ଭାବେ କିଛି ଦେଲେ ଅନ୍ୟ ପଟରେ କିଛି ନେଇ ଯାଆନ୍ତି । ହେଲେ ମନର ଭାବ ମନରେ ରଖି ଚୁପ୍ ରହିଲି ।

ପୁଅ ଯେତିକି ଯେତିକି ବଡ଼ ହେଉଥଲା ତା'ର ଶବ୍ଦ ସ୍ଫୁରଣର ବୈକଲ୍ୟ ଭାବ ଓ ବୀଭତ୍ସ ସ୍ୱର ସେତିକି ଅଧିକ ଅଧିକ ବଢୁଥିଲା । ତା' ମନୋଭାବର ସମସ୍ତ ପ୍ରକାଶ ହିଁ ଗୋଟିଏ ଶବ୍ଦରେ ସୀମିତ ରହୁଥିଲା, ହାଉଁ ହାଉଁ । ତା' ମନୋଭାବକୁ ପ୍ରକାଶ କରି ନ ପାରି ସେ ଯେତିକି ଦୁଃଖିତ ହେଉ ନଥିଲା, ତା'ଠାରୁ ଅଧିକ ହେଉଥିଲୁ ଆମେ । ସବୁବେଳେ ଗୋଟିଏ ଚିନ୍ତା ଆମକୁ ଘାରି ରଖୁଥିଲା, ଆଉ ଅଳ୍ପଦିନ ପରେ ପୂରିଯିବ ପାଞ୍ଚବର୍ଷ । ଏବେ ଅପରେସନ୍ କରାଇବାର ସମୟ ଆସିଗଲାଣି । ଅପରେସନ୍ କଥା ଭାବିବାକ୍ଷଣି ଆମେ ବେଶି ଚିନ୍ତିତ ହୋଇପଡୁଥିଲୁ ଯେ ଯଦି ଅପରେସନ ସକ୍‌ସେସ୍ ନ ହୁଏ, ତେବେ ? କ'ଣ କହିଥିଲେ ଡାକ୍ତର, ଲାଭ ଅପେକ୍ଷା କ୍ଷତିଟା ଅଧିକ ହେବ ।

କ'ଣ ହୋଇପାରେ ସେ କ୍ଷତିଟା ? ପୁଅର ଜୀବନ ଉପରେ ବିପଦ କି ? ଯଦି ଜୀବନ ଉପରେ ବିପଦ, ତେବେ କ'ଣ ଲାଭ ସେ ଅପରେସନ୍ କରାଇ ? କଥା କହିପାରୁ କି ନ ପାରୁ, ବଞ୍ଚିକି ରହୁ । ପାଠ ଶାଠ ପଢ଼ି ପାରିବନି ତ ନ ପଢୁ । ଏତେ ସମ୍ପତ୍ତି ଅଛି କ'ଣ ଚଳିଯିବନି ?

ଆମେ ସ୍ୱାମୀ ସ୍ତ୍ରୀ ଉଭୟେ ଅପରେସନ୍ କରାଇବାର ରିସ୍କଟା ଜାଣି ଯଦି ଅପରେସନ୍ କରାଉଛୁ ଆଉ ଅପରେସନ୍ ପରେ ଯଦି କିଛି ହୋଇଗଲା, ତେବେ ଆମେ ନିଜକୁ କ୍ଷମା କରିପାରିବୁ ତ ? ନା, ବରଂ ଏମିତି ଥାଉ, କଥା କହି ନ ପାରିଲା ନାହିଁ ।

ମନ୍ତ୍ର ତନ୍ତ୍ର ସହ ମୋ ସ୍ତ୍ରୀ ଏବେ ବେଶି ବେଶି ସାହାରା ନେଉଥିଲେ ସାଧୁ, ସନ୍ଥ ଓ ସନ୍ନ୍ୟାସୀମାନଙ୍କର । ସେ କେଉଁଠୁ ଗୋଟେ ଖବର ସଂଗ୍ରହ କଲେ ଯେ ଜଣେ ସିଦ୍ଧ ସନ୍ନ୍ୟାସୀ ରହୁଛନ୍ତି ଋଷିକେଶର ଏକ ଗୁମ୍ଫାରେ । ତାଙ୍କର କର ସ୍ପର୍ଶରେ ସବୁ ରୋଗ, ଶୋକ ଓ ଦୁଃଖ ଦୂର ହୋଇଯାଉଛି । ସେ ମୋତେ ବାଧ୍ୟ କଲେ ତାଙ୍କ ପାଖକୁ ଯିବା ପାଇଁ । ପୁଅକୁ ସାଙ୍ଗରେ ଧରି ବହୁ କଷ୍ଟରେ ଯାଇ ଆମେ ତାଙ୍କ ପାଖରେ ପହଞ୍ଚିଲୁ । ପହଞ୍ଚିଲାବେଳକୁ ସେ ଥିଲେ ଧ୍ୟାନସ୍ଥ । ଆମକୁ ଅପେକ୍ଷା କିରବାକୁ ପଡିଲା ସାରାଦିନ ସାରା ରାତି । ତାଙ୍କର ଜଣେ ଶିଷ୍ୟ ଆମକୁ କହିଲେ – "କାଲି ସକାଳୁ ବାବାଙ୍କର ଧ୍ୟାନଭଙ୍ଗ ପରେ ସେ ପ୍ରଥମେ ଯିବେ ଗଙ୍ଗାନଦୀକୁ । ସେଠାରୁ ସ୍ନାନସାରି ଫେରିବା ସମୟ ହିଁ ହେଉଛି ପ୍ରକୃଷ୍ଟ ସମୟ, ନିଜର ସମସ୍ୟା ଉପସ୍ଥାପନ କରିବାର । ଆପଣମାନେ କାଲି ସକାଳୁ ତାଙ୍କୁ ଅନୁସରଣ କରିବେ । ମାତ୍ର ଗୋଟିଏ କଥା ମନେ ରଖିବେ, ସେ କିଛି ନ ପଚାରିବା ଯାଏଁ ତାଙ୍କ ସହ କୌଣସି କଥାବାର୍ତ୍ତା କରିବାକୁ ଚେଷ୍ଟା କରିବେ ନାହିଁ ।"

ପରଦିନ ପ୍ରଭାତରେ ବାବାଙ୍କର ଧ୍ୟାନଭଙ୍ଗ ହେଲା । ସେ ଧ୍ୟାନସ୍ଥ ମୁଦ୍ରାରୁ ଉଠି ସିଧା ଚାଲିଲେ ଗଙ୍ଗାତୀରକୁ । ଏକ ନିରାପଦ ଦୂରତାରେ ଆମେ ତାଙ୍କୁ ଅନୁସରଣ କଲୁ । ବାବା ସ୍ନାନତର୍ପଣ ସାରିବା ପରେ ଚାଲିଲେ ଆଶ୍ରମ ଅଭିମୁଖେ । ଆମେ ପୁଣି ତାଙ୍କ ପଛେ ପଛେ ଚାଲିଲୁ । ଆମର ଉପସ୍ଥିତି ବାବା ଉପଲବ୍ଧି କରିସାରିଥିଲେ । ହଠାତ୍ ଏକ ବୃକ୍ଷ ମୂଳରେ ସେ ଠିଆ ହୋଇଗଲେ । ନିଜ କମଣ୍ଡଳୁରୁ ସାମାନ୍ୟ ଜଳ ବୃକ୍ଷ ମୂଳରେ ଦେଇ ତା' ଉଦ୍ଦେଶ୍ୟରେ କହିଲେ, "ଶବ୍ଦମୟ ବିଶ୍ୱରେ ନିଜକୁ ପ୍ରକାଶ କରିବା ପାଇଁ ତମେ ଶବ୍ଦର ସାହାରା ନେଉଛ କି ?"

ଆମେ କେବଳ ଆଶ୍ଚର୍ଯ୍ୟ ହୋଇ ତାଙ୍କ କଥା ଶୁଣିଥିଲୁ । ଗୋଟିଏ ମୁହୂର୍ତ୍ତ ପରେ ସେ ତାଙ୍କ ଯାତ୍ରା ଆରମ୍ଭ କଲେ । ଏ ରହସ୍ୟର ଉତ୍ତର ପଚାରିବାର ସାହସ

କରି ନପାରି ଆମେ କେବଳ ତାଙ୍କ ପଛେ ପଛେ ଚାଲିଥିଲୁ । ସେ ତାଙ୍କର ଯାତ୍ରା ନ ରୋକି ଆମ ଉଦ୍ଦେଶ୍ୟରେ କହିଲେ, "ଅନୁସରଣ ମୂଲ୍ୟ କିଛି ନାହିଁ, ଅନୁଧ୍ୟାନ କର । ବ୍ରହ୍ମ ହିଁ ଶବ୍ଦ । ବ୍ରହ୍ମକୁ ନ ଚିହ୍ନି ଶବ୍ଦ ପାଇଁ ଏ ବ୍ୟାକୁଳତା କାହିଁକି ?"

ତାଙ୍କ ସ୍ୱରରେ କି ଶକ୍ତି ଥିଲା କେଜାଣି, ଆମେ ଆଉ ତାଙ୍କୁ ଅନୁସରଣ କରିବାର ସାହସ କରିପାରିଲୁ ନାହିଁ ।

ଘରକୁ ଫେରିବା ପରେ ମୁଁ ଚିନ୍ତା କଲି, ଏ ପୃଥିବୀରେ କୋଟି କୋଟି ପ୍ରକାର ଜୀବ ଅଛନ୍ତି । ମଣିଷକୁ ଛାଡ଼ିଦେଲେ ଆଉ ତ କେହି କଥା କହିପାରୁ ନାହାନ୍ତି । ଆଉ କେହି କଥା କହି ନ ପାରିବା ଫଳରେ ତ ଅଟକିଯାଇନି ପୃଥିବୀ, କ୍ଷୁଣ୍ଣ ହେଉନି ଏହାର ମାଧୁର୍ଯ୍ୟ, ବ୍ୟାହତ ହେଉନି ତ ଭାବର ଆଦାନ ପ୍ରଦାନ କିମ୍ବା ବ୍ୟାହତ ହେଉନି ତ ପୃଥିବୀର ଭାବମୟତା । ପ୍ରକୃତି ଭିତରେ ଥିବା ନିଃଶବ୍ଦର ଆବେଦନ ଯେତିକି ଗଭୀର, ଯଦି ଗଛ - ଲତା, ବଣ ପାହାଡ଼, ନଦ - ନଦୀ, ଜୀବଜନ୍ତୁ ସମସ୍ତେ କଥା କହିପାରୁଥାନ୍ତେ ତେବେ କ'ଣ ରହିପାରିଥାଆନ୍ତା ପୃଥିବୀର ଶାନ୍ତ, ସ୍ନିଗ୍ଧ ଓ ପବିତ୍ର ନୀରବତା ? ମଣିଷ ବ୍ୟତୀତ ଈଶ୍ୱର ସବୁଠି ଶବ୍ଦ ଦେଇଛନ୍ତି ଅଥଚ ମୁଖର କରିନାହାନ୍ତି କାହାକୁ । ସେଥିପାଇଁ ତ ମାନସିକ ଶାନ୍ତି ପାଇବା ପାଇଁ ମଣିଷ ଖୋଜେ ନିରବତା, ଖୋଜେ ପ୍ରକୃତିର କୋଳ । ମନେ ପକାଇଲି, ସେହି ବୃକ୍ଷକୁ ନିମିତ୍ତ କରି ଆମ ଉଦ୍ଦେଶ୍ୟରେ ସନ୍ନ୍ୟାସୀ କହିଥିବା କଥାକୁ - ଶବ୍ଦମୟ ବିଶ୍ୱରେ ନିଜକୁ ପ୍ରକାଶ କରିବା ପାଇଁ ତମେ ଶବ୍ଦର ସାହାରା ନେଉଛ କି ? ଧୀରେ ଧୀରେ ଉନ୍ମୋଚିତ ହେଉଥିଲା ସନ୍ନ୍ୟାସୀଙ୍କ କଥାର ରହସ୍ୟ । ମୋତେ ଲାଗିଲା ମୁଁ ଏତେ ଦିନ ଯାଏ ପୁଅର ମୂକପଣ ନେଇ ମିଥ୍ୟାରେ ଭ୍ରମୁଥିଲି । ମୋର ତା ' ଓଠର ଶବ୍ଦକୁ ନୁହଁ, ତା' ମୁହଁର ଭାବକୁ ଚିହ୍ନିବାର ଥିଲା ।

ଆଶ୍ରମରୁ ଫେରିବା ପରେ ମୋ ସ୍ତ୍ରୀଙ୍କର ମନୋଭାବର ମଧ୍ୟ ଯଥେଷ୍ଟ ପରିବର୍ତ୍ତନ ଘଟିଥିଲା । ଲାଗୁଥିଲା ସେ ଯେମିତି ତାଙ୍କର ସମସ୍ୟାର ସମାଧାନ ଖୋଜି ପାଇଯାଇଛନ୍ତି । ଆଗଭଳି ସେ ଶାରୀଟି ପ୍ରତିଟି ତାଙ୍କର ଅସୂୟା ଭାବ ଦେଖାଉ ନ ଥିଲେ । ବରଂ ଶାରୀର ଯତ୍ନ ନେବାରେ ସେ ଅଧିକ ତତ୍ପର ହୋଇ ଉଠିଥିଲେ । ନିଜେ ଘରର କାମ କଲାବେଳେ ଶାରୀକୁ କହୁଥିଲେ, ଗାଆ ଭାଗବତ କିମ୍ବା ବିଷ୍ଣୁ ସହସ୍ର ନାମ । ସନ୍ଧ୍ୟା ଆରତି ସମୟରେ ପୁଅକୁ ପାଖରେ ବସାଇ ଶାରୀକୁ କହିବେ ଗାଆ -ଜୟ ଜଗଦୀଶ ହରେ ।

ଦିନେ ସକାଳୁ ଘର ଅଗଣାରେ ଥିବା ପାଣି ଟ୍ୟାପ୍ ପାଖରେ ଶାରୀର ପଞ୍ଜୁରୀକୁ ସଫା କରି ତାକୁ ଗାଧୋଇଦେଲେ । ପୁଅ ବି ଏ କାମରେ ସାହାଯ୍ୟ କରୁଥିଲା ତାଙ୍କୁ । ଗାଧୋଇ ଦେଇସାରିବା ପରେ ପାଣି ଲାଗି ଶାରୀଟି ପୂରା ସାଙ୍କୁଡ଼ି ଯାଇଥାଏ । ସେ ଉଠି ଆସିଲେ ଘରକୁ ଗୋଟେ ଶୁଖିଲା କପଡ଼ା ନେଇ ତା'ର ପରକୁ ପୋଛି ଦେବା ପାଇଁ । ଏହି ସମୟରେ ଗୋଟେ କଳା କଟାଶ କେଜାଣି କୁଆଡ଼େ ଥିଲା, ଛପି ଛପି ଆସି ଝାମ୍ପ ଦେବାକୁ ବସିଥିଲା ଶାରୀଟି ଉପରେ । ପୁଅ ହାଉଁ ହାଉଁ ହୋଇ ଚିତ୍କାର କଲା । ତା' ସ୍ୱରରେ ପଛକୁ ହଟୁ ନଥିଲା କଟାଶଟି । ଗୋଟିଏ ବାଡ଼ି ଉଠାଇ ତା' ଆଗରେ ଠିଆ ହୋଇ ଜୋର୍‌ରେ ହାଉଁ ହାଉଁ ହେଉଥିଲା ପୁଅ, ମାତ୍ର ସେ ନଛୋଡ଼ବନ୍ଦା ହୋଇ ସୁଯୋଗକୁ ଅପେକ୍ଷା କରୁଥିଲା । ସୁଯୋଗ ଉଣ୍ଡି ସେ ଯେମିତି ଶାରୀ ଉପରକୁ ଝାମ୍ପି ପଡ଼ିଛି, ପୁଅ ଶାରୀଟିକୁ ତା' କୋଳ ଭିତରେ ଲୁଚାଇ ଧରି ଚିତ୍କାର କଲା – 'ମାଆ, ମାଆ, ମାଆ ଆ... ।'



# ବାମନ ବୃକ୍ଷ

ପ୍ରଦର୍ଶନୀ ପଡ଼ିଆରେ ବିଭିନ୍ନ ବିଭାଗ ତରଫରୁ ଦିଆଯାଇଥିବା ଷ୍ଟଲ୍‌ଗୁଡିକ ବୁଲି ବୁଲି ଦେଖୁଥିଲି । ଉଦ୍ୟାନ ବିଭାଗ ଷ୍ଟଲ୍ ନିକଟରେ ଦୃଷ୍ଟି ମୋର ଅଟକିଗଲା । ସେଠାରେ ସଜା ଯାଇଥିବା ବିଭିନ୍ନ ପ୍ରକାରର ଫୁଲକୁଣ୍ଡର ସମାରୋହ ମୋତେ ଯେତକି ଆକର୍ଷିତ କରି ନଥିଲା ତା'ଠାରୁ ଅଧିକ ଆକର୍ଷିତ କରିଥିଲା ବାମନୀକରଣ କରାଯାଇଥିବା ବିଭିନ୍ନ ବୃକ୍ଷରାଜି । ଫୁଟେ ଦେଢ଼ଫୁଟ ଉଚ୍ଚର ଗଛ ଦେହରେ ଲଦି ହୋଇଥିଲା ଗାଢ଼ ସବୁଜ ରଙ୍ଗର ଲେମ୍ବୁ, କମଳା ଓ ପିଜୁଳି । ଦେଖୁ ଦେଖୁ ମୁଁ ଚମକି ପଡ଼ିଲି ଗୋଟେ ବାମନ ବରଗଛ ଦେଖି, ଗଛଟି ଲାଗୁଥିଲା ପୂର୍ଣ୍ଣବୟସ୍କ ପରି । ତଳକୁ ଲମ୍ବି ଆସିଥିଲା ଗଇଁଠା ସୂ'ତା ପରି ଓହଳ । ଗଛର ଗଣ୍ଡିଟି ଗେବା ଗେବା ହେବା ସହ ଶାଖା ପ୍ରଶାଖା ବି ଥିଲା ଏକ ପୂର୍ଣ୍ଣବୟସ୍କ ଗଛ ପରି । ଯଦିଓ ଗଛଟି ବାମନାକୃତିର ଥିଲା କିନ୍ତୁ ପତ୍ର ଓ ଫଳଗୁଡିକ ଥିଲା ଏକ ସ୍ୱାଭାବିକ ପୂର୍ଣ୍ଣ ବିକଶିତ ବୃକ୍ଷ ପରି । ଗଛଟିକୁ ଦେଖୁ ଦେଖୁ ମୁଁ ତା' ପ୍ରତି ବିଶେଷ ଆଗ୍ରହୀ ହୋଇପଡ଼ିଲି । କୁଣ୍ଡ ପାଖରେ ଠିଆ ହୋଇ ତାକୁ ବହୁ ସମୟ ନିରୀକ୍ଷଣ କଲାପରେ ମୋତେ ଲାଗିଲା ଯେମିତି ଏ ଗଛର ପୂର୍ଣ୍ଣ ବିକଶିତ ରୂପକୁ ମୁଁ କେଉଁଠି ନା କେଉଁଠି ଦେଖିଛି । ଅଥଚ ଠିକ୍ ଭାବରେ ମନେ ପକାଇପାରୁ ନଥିଲି ଗଛଟିକୁ କେଉଁଠି ଦେଖିଛି ବୋଲି । ଗଛଟି ଲାଗୁଥିଲା ଯେମିତି ମୋ ଅବଚେତନ ମନରେ ସାଇତା ହୋଇଥିବା ଏକ ବିରାଟ ବୃକ୍ଷର ଫଟୋଗ୍ରାଫ୍ ପରି ।

ଗଛଟିକୁ କିଣି ନେବା ଉଦ୍ଦେଶ୍ୟରେ ଷ୍ଟଲ ଦାୟିତ୍ୱରେ ଥିବା କର୍ମଚାରୀ ଜଣକୁ ପଚାରିଲି - "ଏହାର ଦାମ୍ କେତେ ?"

କର୍ମଚାରୀଜଣକ କହିଲେ - " ଏଇଟି ବିକ୍ରିପାଇଁ ନୁହଁ, କେବଳ ପ୍ରଦର୍ଶନ ପାଇଁ ।"

ବିକ୍ରିପାଇଁ ନୁହଁ ଜାଣିବା ପରେ ମୋତେ ଲାଗିଲା ଯେମିତି ଏକ ଇପ୍‌ସିତ ବସ୍ତୁର ପ୍ରାପ୍ତି ସୌଭାଗ୍ୟରୁ ମୋତେ ବଞ୍ଚିତ ହେବାକୁ ପଡୁଛି ।

"ଏ ଗଛ ଆପଣଙ୍କ ଡିପାର୍ଟମେଣ୍ଟ ଦ୍ୱାରା ହୋଇଛି ତ ?

ନା' ଆମ ଡିପାର୍ଟମେଣ୍ଟ ଦ୍ୱାରା ନୁହଁ, ଆମ ଡେପୁଟି ଡାଇରେକ୍ଟର ତାଙ୍କର ବ୍ୟକ୍ତିଗତ ସଉକ୍‌ରେ ଏ ଗଛଗୁଡ଼ିକ କରିଛନ୍ତି । ପ୍ରଦର୍ଶନୀରେ ଆମ ଷ୍ଟଲକୁ ଆକର୍ଷଣୀୟ କରିବା ପାଇଁ ଆମେ ତାଙ୍କଠାରୁ ଏ ଗଛସବୁ ଆଣି ରଖିଛୁ ।

"ଏମିତିକା ଗଛଟିଏ କିଣିବାକୁ କେତେ ଟଙ୍କା ପଡ଼ିବ ?"

" ବନ୍‌ସାଇର ରେଟ୍ ଗଛର ବୟସ ନେଇ ।"

" ଏ ଗଛର ବୟସ କେତେ ହେବ ?"

"ଠିକ୍ କରି ତ ଜାଣିନି ତଥାପି ପଚିଶି ତିରିଶ ବର୍ଷର ହେବ ନିଶ୍ଚୟ । ଏମିତି ଏକ ବନ୍‌ସାଇ ଗଛର ଦାମ୍ ହଜାରେ ଟଙ୍କାରୁ ଉର୍ଦ୍ଧ୍ୱ ହେବ ନିଶ୍ଚୟ ।"

ମୁଁ ଗଛଟି ପ୍ରତି ଏତେ ଆକର୍ଷିତ ହୋଇପଡ଼ିଥିଲି ଯେ ମୋର ଆବେଗ ସମ୍ଭାଳି ନ ପାରି କହିପକାଇଲି - " ତା'ଠାରୁ ଯଥେଷ୍ଟ ଅଧିକ ଟଙ୍କା ଦେଲେ କ'ଣ ଆପଣଙ୍କ ଡେପୁଟି ଡାଇରେକ୍ଟର ଏ ଗଛଟିକୁ ବିକ୍ରି କରିବେ ନାହିଁ ?"

"ପଇସାପାଇଁ ଯେ ସେ ଏ ଗଛଟିକୁ ବିକ୍ରି କରିଦେବେ ଯେ ଭରସା ମୋର ନାହିଁ । ତେବେ ଆପଣଙ୍କର ଯଦି ଏତେ ଆଗ୍ରହ ଅଛି ତେବେ ଆପଣ ଥରେ ତାଙ୍କ ସହ କଥାବାର୍ତ୍ତା କରନ୍ତୁ । ସେ ଯେମିତିକା ଲୋକ କାହାରି ଆଗ୍ରହ ଭାଙ୍ଗିପାରିବେ ନାହିଁ ।"

ଲୋକଟିର ସେହି କଥା ପଦଟିରେ ମୋ ଭିତରେ ଗୋଟେ ଆତ୍ମବିଶ୍ୱାସ ଜନ୍ମିଲା ଯେ ମୁଁ ଡେପୁଟି - ଡାଇରେକ୍ଟରଙ୍କୁ କଳେବଳେ କୌଶଳରେ ରାଜି କରାଇ ଗଛଟିକୁ ଆଣିପାରିବି ବୋଲି ।

ପରଦିନ ପହଞ୍ଚିଲି ତାଙ୍କ ଅଫିସ୍‌ରେ । ତାଙ୍କ ସହ କିଛି ସମୟ ଆଲୋଚନା ପରେ ପଚାରିଲି ବନ୍‌ସାଇ ଗଛ ପ୍ରସ୍ତୁତ କରିବାର ପଦ୍ଧତି ବିଷୟରେ । ବନ୍‌ସାଇ ଗଛ ବିଷୟରେ ମୋର ଆଗ୍ରହ ଦେଖି ସେ ତାଙ୍କ ର୍ୟାକ୍‌ରୁ ବାହାର କଲେ ବହିଟିଏ । ବହିଟିକୁ ମୋ ହାତକୁ ବଢ଼ାଇ ଦେଇ କହିଲେ - "ଏବେ ଏ କଳା ବହୁତ ଆଗେଇ ଗଲାଣି । ଏହା ଉପରେ ଅନେକ ବହି ଲେଖା ଗଲାଣି । ଆପଣ ଏ ବହିଟିକୁ ପଢ଼ିଲେ ଏ କଳା ଉପରେ ଆପଣଙ୍କର ଏକ ମୋଟାମୋଟି ଧାରଣା ଆସିଯିବ ।

ମୁଁ ବହିଟିକୁ ଓଲଟାଇ ପୃଷ୍ଠା ପରେ ପୃଷ୍ଠା ଦେଖି ଚାଲିଥାଏ ସତ କିନ୍ତୁ ମନେ ମନେ ଚିନ୍ତା କରୁଥାଏ, ସେ ବନ୍‌ସାଇ ଗଛଟି ସମ୍ପର୍କରେ ତାଙ୍କୁ କିପରି ପଚାରିବି । ସେ ମୋର ବହି ଓଲଟାଇବାର ଆଗ୍ରହକୁ ଲକ୍ଷ୍ୟ କରି କହିଲେ – "ଖାଲି ଓଲଟାଇ ବହିଟିକୁ ଦେଖିଲେ କିଛି ହେବ ନାହିଁ । ଯଦି ଏ କଳାରେ ଆପଣଙ୍କ ରୁଚି ଅଛି ତେବେ ବହିଟି ଆପଣ ପଢ଼ିବାକୁ ନେଇପାରନ୍ତି ।"

"ମୁଁ ଶୁଣିଥିଲି ଏ ବିଷୟରେ ଆପଣଙ୍କର ରୁଚି ଓ ଜ୍ଞାନ ବହୁତ ଅଛି ବୋଲି ?"

"ଜ୍ଞାନ ବିଷୟରେ ତ କହିପାରିବିନି ତେବେ ରୁଚି ରଖେ । ରଖେ ମାନେ ରଖୁଥିଲି ।"

" ରଖୁଥିଲି ଅର୍ଥାତ୍ ଏବେ କ'ଣ ରଖୁନାହାନ୍ତି କି ?"

" ଏବେ ରୁଚି ମୋଟାମୋଟି ନାହିଁ କହିଲେ ଚଳେ ।"

" କାହିଁକି ?"

"କେତେଗୁଡ଼ିଏ ବ୍ୟକ୍ତିଗତ କାରଣପାଇଁ ମୁଁ ସେ କଳାରୁ ନିଜକୁ ଦୂରେଇ ନେଇଛି ।"

"ସେ କାରଣଗୁଡ଼ିକ କ'ଣ କିଛି ଜାଣିପାରେ କି ?"

"ବ୍ୟକ୍ତିଗତ କାରଣ ବୋଲି କହିବା ପରେ ଆଉ ସେ ବିଷୟରେ ପଚାରିବା ଠିକ୍ ହେବ ନାହିଁ ।"

" ଓଃ ସରି ! ପ୍ରଦର୍ଶନୀରେ ଆପଣଙ୍କର ସେହି ବନ୍‌ସାଇ ବରଗଛଟି ଦେଖିବା ପରେ ସେ ଗଛଟି ପ୍ରତି ଏତେମାତ୍ରାରେ ଆଗ୍ରହାନ୍ୱିତ ହୋଇପଡ଼ିଲି ଯେ ଆପଣଙ୍କୁ ବ୍ୟକ୍ତିଗତ ଭାବେ ସାକ୍ଷାତ୍ କରିବାକୁ ଚାଲିଆସିଲି ।"

" ସେ ଗଛଟି ତେବେ ଆପଣଙ୍କୁ ଭଲ ଲାଗିଛି ?"

" ଖାଲି ଭଲ ଲାଗିଛି ନୁହଁ – ଯଦି ଆପଣ ରାଜି ହୁଅନ୍ତି ତେବେ ମୁଁ ତାହାର ଉଚିତ୍ ଦାମ୍ ଦେଇ ..."

"ଆପଣ ଗଛଟିକୁ କିଣିବାକୁ ଚାହାନ୍ତି ତା'ହେଲେ ?"

" ଚାହୁଁଛି ସତ, ମାତ୍ର ଯଦି ଏଥିରେ ଆପଣଙ୍କର ଆପତ୍ତି ଥାଏ ତେବେ ମୁଁ ଦୁଃଖିତ ହେବି ନାହିଁ ।"

" ସେ କିଛି ସମୟ ଗୁମ୍ ମାରି ବସିସାରିବା ପରେ କହିଲେ – "ମୁଁ ସଙ୍ଗେ ସଙ୍ଗେ ଆପଣଙ୍କୁ କୌଣସି ପ୍ରତିଶ୍ରୁତି ଦେଇପାରୁନି । ତେବେ ଆପଣ ଆସନ୍ତାକାଲି ଅପରାହ୍ନରେ ଆସନ୍ତୁ, ମୁଁ ମୋର ମତାମତ ଜଣାଇବି ।"

ତା' ପରଦିନର ଅପରାହ୍ଣ ପର୍ଯ୍ୟନ୍ତ ଅପେକ୍ଷା ବୋଧହୁଏ ମୋ ଜୀବନର ସବୁଠୁ ଦୀର୍ଘତମ ଅପେକ୍ଷା ଥିଲା । ମୁଁ ମନେ ମନେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥାଏ ଅପରାହ୍ଣରେ ଯେମିତି ହେଲେ ତାଙ୍କୁ ରାଜି କରାଇ ଗଛଟି ମୋତେ ଦେବାର ବ୍ୟବସ୍ଥା କରାନ୍ତୁ ।

ଅପରାହ୍ଣରେ ତାଙ୍କ ଅଫିସ୍‌ରେ ପହଞ୍ଚିବା ସଙ୍ଗେ ସଙ୍ଗେ ସେ ମୋ ହାତକୁ ଗୋଟେ ସ୍ଲିପ୍ ବଢ଼ାଇ ଦେଲେ । କହିଲେ – "ପ୍ରଦର୍ଶନୀ ପରେ ଏ ସ୍ଲିପ୍ ଦେଖାଇ ଆପଣ ସେଠାରୁ ସେ ଗଛଟିକୁ ନେଇଯିବେ ।"

ମୁଁ ସ୍ଲିପ୍‌ଟିକୁ ଏକ ପରମପ୍ରାପ୍ତିର ଅନୁଭବରେ ଧରି ଅପେକ୍ଷା କଲି ଗଛଟିର ଦାମ୍ ବିଷୟରେ ସେ କ'ଣ କହୁଛନ୍ତି ବୋଲି । ସେ ମୋର ମନୋଭବକୁ ଠିକ୍ ବୁଝିପାରି କହିଲେ – " ଏସବୁ ଜିନିଷର ଦାମ୍ କରିହୁଏନା । ତେବେ ଆପଣଙ୍କର ଆଗ୍ରହପାଇଁ ଏଇଟି ମୋ ତରଫରୁ ଆପଣଙ୍କୁ ଉପହାର ।"

ପ୍ରଦର୍ଶନୀ ପରେ ଗଛଟିକୁ ଧରି ମୁଁ ଘରକୁ ଆସିଲାବେଳେ ମୋ ଭିତରେ ଥିଲା ଏକ ପୁଲକିତ ଅନୁଭବ । ଦୌପଦୀଙ୍କୁ ସ୍ୱୟଂବରରେ ଜିତି ଫେରିଥିବା ପାଣ୍ଡବମାନଙ୍କର ଏମିତିକା ଏକ ଅନୁଭବ ହୋଇଥିବ କି ନା ସନ୍ଦେହ । ପୋର୍ଟିକୋ ତଳେ ଗଛଟିକୁ ରଖିଦେଇ ଘର ଭିତରକୁ ଗଲି ମୋ ବୋଉ ଓ ପତ୍ନୀ ସ୍ମିତାଙ୍କୁ ଡାକି ଏକ ସରପ୍ରାଇଜ୍ ଦେବାପାଇଁ ।

ସେମାନଙ୍କୁ ବାହାରକୁ ଡାକିଆଣି କହିଲି – " ତମେମାନେ ନିଜେ ନିଜେ କୁହ କିଛି ଗୋଟେ ଫରକ ବାରିପାରୁଛ କି ପୋର୍ଟିକୋ ତଳେ ।"

ବୋଉ ଆଖିରେ ଚଟ୍‌କିନା ପଡ଼ିଗଲା ଫରକଟି । ସେ କହିଲା – "ଆରେ ଏ ବାମନ ବରଗଛଟିକୁ କେଉଁଠୁ ଆଣିଲୁ ?"

"ପ୍ରଦର୍ଶନୀରୁ ।"

"କ'ଣ ଘରର ବଗିଚାରେ ଲଗାଇବୁ ?"

"ଲଗାଇବି କ'ଣ – ଘଛଟି ଏଇ କୁଣ୍ଡରେ ରହିବ ।"

"କୁଣ୍ଡରେ ବରଗଛ, ପୁଣି ଘରର ବଗିଚାରେ ।"

"କ'ଣ ହେଲା ସେଥୁ ?"

"ତତେ ଏ ବୁଦ୍ଧି କିଏ ଦେଲାରେ ? ଅଗଣାରେ ବରଗଛ ଜମା ଶୁଭ ନୁହଁ । ରାସ୍ତା କଡ଼ରେ ବରଗଛ ପୋତିଲେ ସିନା ଶୁଭ ଓ ଧର୍ମ । ବାଟୋଇଙ୍କୁ ଛାଇ ଦେବ

ଓ ଚଢ଼େଇ ଚିରୁଗୁଣୀ ବସା ବାନ୍ଧିବେ । ହେଲେ ଇଏ ବାମନ ବରଗଛଟିଏ, ନା ଛା'ଇ ଦେବ ନା ତା' ଡାଳରେ କିଏ ବସା ବାନ୍ଧି ପାରିବେ ?"

"ତୋର ଯେତେ ସବୁ ମରହଟ୍ଟୀ ବୁଦ୍ଧି । ବୁଝିଲୁ, ଏଇଟା ହେଲା ବନ୍‌ସାଇ ଗଛ । ପୋଟିଁକୋ କିମ୍ବା ଡ୍ରଇଂ ଶୋଭା ପାଇଁ ଏ ଗଛ ତିଆରି କରାଯାଇଛି, ଛାଇ ଦେବାପାଇଁକି ମୋ କଥାର ପକ୍ଷ ସମର୍ଥନ ପାଇଁ ଚାହିଁଲି ମୋ ସ୍ତ୍ରୀଙ୍କ ଆଡ଼େ । ଚଢ଼େଇ ଚିରୁଗୁଣୀ ବସା ବାନ୍ଧିବା ପାଇଁ ନୁହଁ । ମୁଁ ଚାହିଁଲି ମୋ ସ୍ତ୍ରୀଙ୍କ ଆଡ଼େ ।

ସେ ବୋଧହୁଏ ଆମ ମାଆ ପୁଅଙ୍କର ଦ୍ୱନ୍ଦରେ ପଶିବାକୁ ଚାହୁଁନଥିଲେ । କେବଳ କହିଲେ – "ଗଛଟି ବହୁତ ସୁନ୍ଦର ହୋଇଛି । ଗୋଟିଏ ପୂର୍ଣ୍ଣବୟସ୍କ ବନସାଇ ନିଶ୍ଚୟ ।"

ବୋଉ ଜାଣିପାରିଲା ତା' ମତାମତର କୌଣସି ଗୁରୁତ୍ୱ ରହିବ ନାହିଁ । କେବଳ କହିଲା – " ବନ୍‌ସାଇ କି ଫନସାଇ ତ ମୁଁ ଜାଣେନା, ତେବେ ଘର ଅଗଣାରେ ବରଗଛ ଶୁଭଫଳ ଦିଏନା ବୋଲି ମୁଁ ଜାଣିଛି । ଏବେ ଯୁଗ ଆଗେଇ ଗଲାଣି । ମାଣେ ମାଣେ ଜମି ମାଡ଼ି ବସୁଥିବା ଝଙ୍କାଳିଆ ବରଗଛ ଏଇନେ କୁଣ୍ଡ ମଧ୍ୟକୁ ଆସିପାରିଲାଣି । ହଉ, ତମର ଯେଉଁଥିରେ ଖୁସି ସେଇଆ କର ।"

ମୁଁ ଜାଣିଥିଲି ବୋଉର ରହଣୀ ଏଠାରେ ବେଶିଦିନ ନୁହଁ । ସ୍ମିତାଙ୍କର ମର୍ଣ୍ଣିସିକ୍‌ନେସ୍ ଥିବାରୁ ସେ ଏଠାକୁ ଆସିଛି । ସେ ସ୍ୱାଭାବିକ ଅବସ୍ଥାକୁ ଆସିଗଲେ ବୋଉ ଗାଆଁକୁ ଚାଲିଯିବ, ପୁଣି ଯାଇ ଆସିବ ଡେଲିଭରି ବେଳକୁ ।

ବରଗଛଟିକୁ ଡ୍ରଇଁ ରୁମ୍‌ରେ ରଖିବାକୁ ମନସ୍ଥ କରି ତା'ର ଇଣ୍ଟେରିଅର ଡେକୋରେସନ୍‌କୁ ଆମକୁ ପୁରା ବଦଳାଇବାକୁ ପଡ଼ିଲା । ଗୋଟିଏ କୋଣରେ ରଖାଗଲା ଟି.ଭି. ଓ ଆର କୋଣରେ ଗଛଟିକୁ । ଯେମିତି ଟି.ଭି. ଦେଖିବା ସମୟରେ ମଧ ଦେଖି ହେଉଥିବ ଗଛଟିକୁ ଏବଂ ଯେ କେହି ଅତିଥି ଆସିଲେ ଯେମିତି ତାଙ୍କ ନଜରରେ ପଡ଼ିପାରିବ ଗଛଟି ।

ସେଦିନ ରାତିରେ ମୁଁ ବସି ସମାଚାର ଦେଖିବା ସମୟରେ ବୋଉ କାର୍ପେଟ ଉପରେ ବସି ପାନ ଭାଙ୍ଗୁଥିଲା । ପାନ ଭାଙ୍ଗୁ ଭାଙ୍ଗୁ କହିଲା – " ଏ ଗଛଟିକୁ ଦେଖିଲେ ମୋର ତମ ଗାଆଁ ବାରମାଣିଆ ପାଟର ଟିକି ବରଗଛ କଥା ଖିଆଲ ପଡୁଛି ?"

ମୁଁ ଚଟକିନା ବୋଉର କଥାକୁ ଧ୍ୟାନ ଦେଇ କହିଲି – " କେଉଁ ବରଗଛ କଥା ତୁ କହିଲୁ ?"

"ବାରମାଣିଆ ପାଟର ସେହି ଟିକି ବରଗଛ ମ' - ଯେଉଁଠି ସେ ଭୋବନା ବେହେରା ରଶି ଲଗାଇ ମରିଥିଲା, ତୁତ କାହିଁ କେବେଠାରୁ ଗାଆଁ ଛାଡ଼ିଲୁଣି, ତୋର କ'ଣ ଆଉ ସେ ଗଛ କଥା ମନରେ ଥିବ ।"

"ଠିକ୍ କଥା କହିଲୁ । ପ୍ରଦର୍ଶନୀ ପଡ଼ିଆରେ ଗଛଟିକୁ ଦେଖିବା ବେଳଠାରୁ ମୁଁ ମନେମନେ ଭାବୁଥିଲି ଏମିତି ଏକ ଗଛର ବଡ଼ ରୂପକୁ ମୁଁ କୋଉଁଠି ନା କୋଉଠି ଦେଖିଛି ଅଥଚ ମନେ ପକାଇପାରୁ ନ ଥିଲି । ପିଲାଦିନେ ବାପାଙ୍କପାଇଁ ବିଲକୁ ଖାଇବାକୁ ନେଇଯିବା ବେଳେ ତା'ର ଓହଳ ଓ ଡାଳରେ ମୁଁ କେତେଥର ଖେଳିଛି ଅଥଚ ଦେଖ ତ ମୁଁ ମନେ ପକାଇପାରୁ ନ ଥିଲି । ଏମିତି ଏକ ଗଛର ବଡ଼ରୂପ ମୁଁ ଦେଖିଥିଲି ବୋଲି ତ ଆକର୍ଷିତ ହୋଇପଡ଼ିଲି ଏହାକୁ ଆଣିବା ପାଇଁ ।"

ବୋଉ କୌତୁହଳି ହୋଇ ପଚାରିଲା - "ଏ ଗଛକୁ କେମିତି ଏମିତି ଛୋଟ କରୁଛନ୍ତି ? ଏ ଗଛଟିର ତ ବୟସ ହୋଇଯାଇଛି ବୋଲି ତା'ର ଓହଳ ଓ ଫଳକୁ ଦେଖିଲେ ଲାଗୁଛି ।"

"ସବୁ ବିଜ୍ଞାନ ଓ ମଣିଷର କରାମତି ବୋଉ ।"

"ମଲା, ଭଲ କଥା ସିନା ବିଜ୍ଞାନ କରନ୍ତା । ଏଇ ଅଭେଲା କଥାରେ ବି ତମ ବିଜ୍ଞାନ ମୁଣ୍ଡ ଖେଳାଉଛି । ଗଛକୁ ଯଦି ବାମନ କରିପାରୁଛନ୍ତି ମଣିଷକୁ ବି ବାମନ କରି ଖେଳନା କରିବେ ।"

ବୋଉ ଓ ମୋ ଭିତରେ ଚାଲିଥିବା କଥାବାର୍ତ୍ତାକୁ ଶୁଣୁଥିଲେ ସ୍ମିତା । ସେ ବୋଉର ପକ୍ଷ ସମର୍ଥନ କରି କହିଲେ - " ପ୍ରକୃତି ଉପରେ ମଣିଷର ଇଏ ଏକ ରୀତିମତ ଅତ୍ୟାଚାର । ବଢ଼ିବାକୁ ଚାହୁଁଥିବା ଗୋଟେ ଘଛର ଚେରକୁ ବାରମ୍ବାର କାଟି କାଟି ଏବଂ ତାକୁ କେବଳ ବଞ୍ଚିବା ନିମିତ୍ତ ଖାଦ୍ୟଦେଇ ବଢ଼ିବାର ସୁଯୋଗ ନ ଦେବାଟା ଅନ୍ୟାୟ ନିଶ୍ଚୟ ।"

"ରଖ, ରଖ ତମର ସେ ଦାର୍ଶନିକ ଭାବ । କ୍ଷୁଦ୍ର ଭିତରେ ସୌନ୍ଦର୍ଯ୍ୟର ଝଲକ ନ ଦେଖି ତମେ ସବୁ ଅଯଥା କଥାରେ ମୁଣ୍ଡ ଖେଳାଉଛ ।"

ପରଦିନ ସକାଳୁ ମୁଁ ଉଠିବା ବେଳକୁ ବୋଉ ଗାଧୋଇ ଠାକୁରଙ୍କ ପୂଜା ସାରି ବରଗଛଟି ମୂଳରେ ମନ୍ତ୍ରପଢ଼ି ପାଣି ଢ଼ାଳୁଥାଏ । ମୁଁ ଚିତ୍କାର କରି କହିଲି - " ଇଏ ତୁ କ'ଣ କରୁଛୁ ବୋଉ ? ସେ ଗଛରେ ପାଣି ଦେବୁ ତେବେ ତ ସେ ଧୀରେ ଧୀରେ ଆମ ଗାଆଁ ଟିକି ବରଗଛ ହୋଇଯିବ ।,ଆଉ କ'ଣ କୁଣ୍ଡରେ ନା ଡ୍ରଇଂ ରୁମ୍‌ରେ ରହିବ"

ବୋଉ ଚୁପ୍‌ଚାପ୍ ତା'ର ପାଣିଦେବା କର୍ମ ସାରିବା ପରେ କହିଲା – " ବର କିମ୍ବା ଅଶ୍ୱତ୍ଥ ବୃକ୍ଷ ଘର ଭିତରେ ରହିଲେ ବି ତାକୁ ଗାଧୋଇ ସାରି ଟିକିଏ ଜଳଦାନ କରିବା ବିଧି । ତମ ବିଜ୍ଞାନ ପରା କହିଛି ଗଛର ଜୀବନ ଅଛି ବୋଲି ।"

ମୁଁ ଆଉ ସକାଳୁ ସକାଳୁ ବୋଉ ସହ ଏ ବିଷୟରେ ଯୁକ୍ତି ତର୍କ ନ କରିବାକୁ ଚାହିଁ ଚୁପ୍ ରହିଲି ।

ସ୍ମିତାଙ୍କର ମର୍ଣ୍ଣିଙ୍ଗ୍‌ସିକ୍‌ନେସ୍ ବନ୍ଦ ହୋଇଯିବା ପରେ ସେ ଧୀରେ ଧୀରେ ସୁସ୍ଥ ହେଉଥିଲେ । ତାଙ୍କର ସୁସ୍ଥତା ଦେଖି ବୋଉ କହିଲା – "ମୁଁ ଏବେ ଘରକୁ ଚାଲିଯାଉଛି । ସେପଟର କାମକୁ ବି ଦେଖିବାକୁ ପଡ଼ିବ । ଡେଲିଭରି ମାସେ ଖଣ୍ଡେ ଥିବ ମୁଁ ପୁଣି ଆସିବି ।"

ବୋଉ ଗାଆଁକୁ ଯିବାବେଳେ ଗାଡ଼ିରେ ବସୁ ବସୁ ମୋତେ କହିଲା – "ସେ ଗଛଟିରେ ମୁନ୍ଦେ ମୁନ୍ଦେ ପାଣି ଦେଉଥିବୁରେ ।"

ମୁଁ ଖୁବ୍ ହାଲକା ଭାବେ 'ହଁ' ଟିଏ ମାରିଦେଇ ଚିନ୍ତା କରୁଥିଲି ଗଛଟି କେମିତି ବୋଉର ଚେତନା ରାଜ୍ୟକୁ ମାଡ଼ିବସିଛି ବୋଲି ।

ଦିନେ ରାତିରେ ବିଳମ୍ବିତ ପ୍ରହର ଯାଏଁ ମୁଁ ବସି ଟି.ଭି. ଦେଖୁଥାଏ । ସ୍ମିତା ଶୋଇଯାଇଥିଲେ ବେଡ୍ ରୁମ୍‌ରେ, କୁଣ୍ଡ ଭିତରେ ଥିବା ଗଛଟିକୁ ମୁଁ କିଛି ସମୟ ନିବିଷ୍ଟ ହୋଇ ଚାହିଁଲି । ମୋତେ ଲାଗିଲା ଗଛ ଭିତରୁ ଯେମିତି ଏକ ଆର୍ତ୍ତ ଆବେଦନ ଆସୁଛି – ମୋତେ ଏ ବାମନ ଜନ୍ମରୁ ମୁକ୍ତି କର, ମୁଁ ଖୁବ୍ ତୃଷାର୍ତ୍ତ, ମୋତେ ଜଳ ଦିଅ । ମୋ ଭିତରେ ଥିବା ବିରାଟ କାୟା ବିସ୍ତାରର ଶକ୍ତିକୁ ଏମିତି ସୀମିତ କରନା ।

ଏ ମୋର ମାନସିକ ଭ୍ରାନ୍ତି ହୋଇପାରେ ଭାବି ନିଜକୁ ପ୍ରକୃତିସ୍ଥ କଲି । କିଛି ସମୟ ପରେ ମୋର ପୁନଃ ଅନୁଭବ ହେଲା ଗଛଟି ତା'ର କାୟା ବିସ୍ତାର କରୁଛି । ବଢ଼ି ବଢ଼ି ସେ ପାଲଟି ଯାଉଛି ଆମ ଗାଆଁର ଟିକି ବରଗଛ । ଗଛଟି ମୋର ମାନସିକ ଭ୍ରାନ୍ତି ଓ ଉଦବେଳନ ସୃଷ୍ଟି କରୁଛି ଭାବି ଟି.ଭି. ବନ୍ଦ କରି ଶୋଇବାକୁ ଚାଲିଗଲି । ତା'ପରଠାରୁ ଗଛଟିକୁ ଆଉ କେବେ ନିବଷ୍ଟ ଭାବରେ ଦେଖିବା ପାଇଁ ମୁଁ ଚେଷ୍ଟା କରିନି ।

ଥରେ ରାତିଅଧରେ ସ୍ମିତା ନିଦରୁ ଉଠିପଡ଼ି ମୋତେ ଉଠାଇଲେ – "ହେ, ଉଠ, ଉଠ ତ । ମୋତେ ଖୁବ୍ ଶୋଷ ଲାଗୁଛି ।"

ମୁଁ ଉଠି ରୁମ୍‌ର ଲାଇଟ୍ ଜଳାଇଲି । ତାଙ୍କ ପାଇଁ ପାଣି ଗ୍ଲାସଟିଏ ଆଣିଲି । ପାଣିତକ ପିଇସାରି ସେ କହିଲେ – "ମୋତେ ଏମିତି ଲାଗୁଛି ଯେ ଯେତେ

ପାଣି ପିଇଲେ ବି ମୋ ଶୋଷ ମରିବ ନାହିଁ । କି ଅଜବ ସ୍ୱପ୍ନଟିଏ ଦେଖିଲି ଯେ ମୁଁ ।"

"କି ସ୍ୱପ୍ନ ଦେଖିଲ ?"

"ମୁଁ ସ୍ୱପ୍ନ ଦେଖିଲି – ମୋ ଭିତରେ ବଢୁଥିବା ଶିଶୁଟି କହୁଛି ମୁଁ କ୍ଷୁଧାର୍ତ୍ତ ଓ ତୃଷାର୍ତ୍ତ । ମୋତେ ଖାଦ୍ୟ ଓ ଜଳ ଦିଅ । ସେ ଖାଦ୍ୟ ଓ ଜଳ ନପାଇ ସଂଗ୍ରାମ କରୁଛି । ତା'ର କ୍ଷୁଧା ଓ ତୃଷ୍ଣା ମେଣ୍ଟାଇବାର ସଂଗ୍ରାମରେ ସେ ରାମ୍ପୁଡ଼ି ବିଦାରି ପକାଇବାକୁ ଚାହୁଁଛି ସମଗ୍ର ବସୁଧା । ଇଏ କେମିତିକା ସ୍ୱପ୍ନ ?"

"ତମେ ଆଜି ରାତିରେ ଠିକ୍ ଭାବରେ ଖାଇଥିଲ ତ ? ତମକୁ ଏଇନେ ଭୋକ – ଭୋକ ଲାଗୁଛି କି ?"

"ନାହିଁ ତ – ।"

"ମୁଁ କ'ଣ କହୁଥିଲି କି ତମେ ଏଇନେ ଏକା ନୁହଁ । ତମ ଭିତରୁ ଖାଦ୍ୟ ନେଇ ଆଉ ଗୋଟେ ଜୀବନ ବଢୁଛି । ଖାଇବା ସମୟରେ ତା' ପାଇଁ ବି ଧ୍ୟାନ ଦେବାକୁ ପଡ଼ିବ ।"

ଏହା ପରଠାରୁ ସ୍ମିତା ସବୁଦିନ ସକାଳୁ ଉଠି ତାଙ୍କର ଭିନ୍ନ ଭିନ୍ନ ସ୍ୱପ୍ନର ଘଟଣାମାନ ଗପନ୍ତି । ଯେଉଁ ଦିନ ତାଙ୍କଠାରୁ କୌଣସି ସ୍ୱପ୍ନ କଥା ନ ଶୁଣେ ମୁଁ ପଚାରେ ଆଜି କ'ଣ କୌଣସି ସ୍ୱପ୍ନ ବୃତ୍ତାନ୍ତ ନାହିଁ କି ?

"ସେଇ ଏକା ପ୍ରକାରର ସ୍ୱପ୍ନ – ଭୋକ ଓ ଶୋଷ ପ୍ରାୟ ସବୁଦିନ ତ ଦେଖୁଛି । କେତେଦିନ ଯାଏଁ ତାକୁ ଆଉ ରିପିଟ୍ କରି ତମକୁ ଶୁଣାଉଥିବି । ମୁଁ ଏବେ ଧରି ନେଇଛି ଏ ଗୁଡ଼ାକ ସବୁ ଗର୍ଭାବସ୍ଥାର ଲକ୍ଷଣ ବୋଲି ।"

"ଗର୍ଭାବସ୍ଥାର ଲକ୍ଷଣ ଯେ ହେଲେ ସମୟାନୁଯାୟୀ ଗର୍ଭର ଆକାର ତ କାହିଁ ମୁଁ ଦେଖିପାରୁନାହିଁ ।"

"ତମର ଯେଉଁ ସନ୍ଦେହ ହେଉଛି ମୋର ବି ସେହି ସନ୍ଦେହ ହେବାରୁ ମୁଁ ସେଦିନ ଚେକ୍‌ଅପ୍ ସମୟରେ ଡାକ୍ତରାଣୀଙ୍କୁ ପଚାରିଲି । ସେ କହିଲେ ପ୍ରଥମ ପ୍ରେଗ୍‌ନାନ୍‌ସି ସମୟରେ ଜଣଜଣଙ୍କର ତ ଗର୍ଭାବସ୍ଥା ଅଛି ବୋଲି ଜାଣିହୁଏନା ।"

ଧୀରେ ଧୀରେ ସମୟ ଗଡ଼ିଗଲା । ବୋଉ ବି ମାସ ଗଣି ଗାଆଁରୁ ସାନଭାଇକୁ ଧରି ଆସି ପହଞ୍ଚିଗଲା ଡେଲିଭରି ପାଇଁ, ପହଞ୍ଚୁ ପହଞ୍ଚୁ ଖୁବ୍ ବିସ୍ମୟରେ ସ୍ମିତା ଆଡ଼େ ଚାହିଁ ପଚାରିଲା – "ତୋ'ର ସବୁ ଠିକ୍‌ଠାକ୍ ତ ?"

"ହଁ – ସବୁ ଠିକ୍ ଅଛି । ରେଗୁଲାର ଚେକ୍‌ଅପ୍ ମଧ୍ୟ ହେଉଛି ।"

"ଡାକ୍ତର କେବେକୁ ଡେଟ୍ ଦେଇଛି ?"

"ଡାକ୍ତରଙ୍କ ଡେଟ୍ ଅନୁସାରେ ତ ଆହୁରି ପାଖାପାଖି ମାସେ ଅଛି । ମାତ୍ର ତା' ପୂର୍ବରୁ ହୋଇଯାଇପାରେ ବୋଲି ମଧ୍ୟ ତାଙ୍କର ଆଶଙ୍କା ଅଛି ।"

"ହୁଁଃ - ଆଗରୁ ହୋଇଯିବ । ତୋତେ ଦେଖିଲେ ତ କେହି କହିବ ନାହିଁ ଯେ ତୋ'ର ଆଠ ମାସ ଗର୍ଭ ଅଛି ବୋଲି ! ଏମିତି ଗର୍ଭର ଆକାର କମାଇବାକୁ କ'ଣ କିଛି ଔଷଧପତ୍ର ଖିଆଖିଇ କରିଛୁ କି ?"

"ନାଇଁ ବୋଉ ! ମୁଁ ବି ଡାକ୍ତରଙ୍କୁ ଏକଥା ପଚାରିଥିଲି । ସେ କହିଲେ ପ୍ରଥମ ଗର୍ଭରେ ଏମିତି କେତେ ଜଣଙ୍କର ହୁଏ ।"

"ପ୍ରଥମ ଗର୍ଭରେ ଏମିତି ହୁଏ - ଆମେ ସବୁ କ'ଣ ଛୁଆ ଜନ୍ମ କରି ନାହୁଁ ।"

"ସବୁ ଠିକ୍ ଠାକ୍ ବୋଲି ତ ଚେକ୍‌ଅପ୍‌ରୁ ଜଣାପଡୁଛି ।"

"ହଉ - ମୁଁ ବି ଠାକୁରଙ୍କୁ ଡାକୁଛି ସବୁ ଭଲରେ ଭଲରେ ହୋଇଯାଉ ।"

ସମ୍ଭାବ୍ୟ ପ୍ରସବ ତାରିଖ ଆହୁରି ପନ୍ଦରଦିନ ଥିଲା । ଦିନେ ରାତିରେ ହଠାତ୍ ଆରମ୍ଭ ହୋଇଗଲା ସ୍ମିତାଙ୍କର ପ୍ରସବ ବେଦନା । ଆମେ ତୁରନ୍ତ ହସ୍‌ପିଟାଲ ନେଇଗଲୁ । ରାତି ସାରା ଲାଗି ରହିଲା ଯନ୍ତ୍ରଣା, ରାତି ପାହିବାକୁ ଅଳ୍ପ ସମୟ ଥାଏ ହୋଇଗଲା ଡେଲିଭରି । ପ୍ରଥମ ପିତୃତ୍ୱର ଆନନ୍ଦରେ ଅଧୀର ହୋଇ ଲେବର୍ ରୁମ୍‌ରୁ ବାହାରି ଆସୁଥିବା ନର୍ସଜଣଙ୍କୁ ପଚାରିଲି କ'ଣ ହୋଇଛି ? ସେ ବିଶେଷ ଖୁସି ପ୍ରକଟ ନ କରି କହିଲେ, ପୁଅଟିଏ ହୋଇଛି ଯେ ହେଲେ ପର୍ବତର ମୂଷିକ ପ୍ରସବ ପରି । ଡାକ୍ତର ଟେଷ୍ଟ କରୁଛନ୍ତି ଯଦି ପ୍ରିମାଚ୍ୟୁୟର ଡେଲିଭରି ପାଇଁ ଏମିତି ଛୋଟ ଶିଶୁ ଜନ୍ମ ହୋଇଥାଏ ତେବେ ତାକୁ ଇନ୍‌କ୍ୟୁବେଟର୍‌ରେ ରଖିବେ ।

ମୋର ଆଗ୍ରହରେ ଭଟ୍ଟା ପଡ଼ିଗଲା । ହଠାତ୍ ମୁଁ ଧୀରେ ଧୀରେ ଲେବର୍ ରୁମ୍ ପାଖକୁ ଗଲି । ମୋତେ ଦେଖି ଡାକ୍ତର ହାତଠାରି ନିର୍ଦ୍ଦେଶ ଦେଲେ ଭିତରକୁ ଯିବା ପାଇଁ, ମୁଁ ଭିତରକୁ ଯିବା ପରେ ସେ କହିଲେ - ମୁଁ ସନ୍ଦେହ କରୁଥିଲି ପ୍ରିମାଚ୍ୟୁୟର ବାର୍ଥ ପାଇଁ ଏମିତି ହୋଇଥାଇପାରେ ବୋଲି । ତେଣୁ ଚେକ୍‌ଅପ୍ କରୁଥିଲି । କିନ୍ତୁ ଏଇଟା ପ୍ରିମାଚ୍ୟୁୟର କେସ୍ ନୁହଁ, ପିଲାଟି ବାମନ ହୋଇ ଜନ୍ମ ଗ୍ରହଣ କରିଛି ।

ମୋ ପାଖରେ ଛିଡ଼ା ହୋଇଥିଲା ବୋଉ । ମୋତେ ହଲାଇ ଦେଇ ପଚାରିଲା - "କ'ଣ ହୋଇଛି, କ'ଣ ହୋଇଛି ?"

ମୁଁ କେବଳ ତିନୋଟି ଅକ୍ଷର ଉଚ୍ଚାରଣ କଲି - 'ବା - ମ - ନ' ।



# ମାଟିଦ୍ରୋଣ

ବାଙ୍କବାବୁଙ୍କ ପ୍ରମୋଶନ ପାର୍ଟିରେ ଦେବବ୍ରତ ଯୋଗ ଦେଇଥିଲେ ସତ, ହେଲେ ସେ ସାମିଲ ହୋଇପାରୁ ନ ଥିଲେ ସେଇ କୋଳାହଳ କିମ୍ବା ମଉଜ ମଜଲିସରେ । ଅଫିସର ସହକର୍ମୀ ବାଙ୍କବାବୁ । କେବଳ ସହକର୍ମୀ ନୁହେଁ ସହପାଠୀ ଓ ଅନ୍ତରଙ୍ଗ ବନ୍ଧୁ ମଧ୍ୟ । ସାହି ଚାହାଳିରୁ ଗାଆଁ ସ୍କୁଲ, ଗାଆଁ ସ୍କୁଲରୁ ପାଖ ଗାଆଁ ହାଇସ୍କୁଲ ଓ ପରେ ପରେ କଲେଜରେ ଉଭୟ ଏକାଠି ଓ ଏକା ବିଷୟରେ ପାଠ ପଢ଼ିଥିଲେ । ସଂଯୋଗ ଦେଖ – ଖବରକାଗଜରୁ ବିଜ୍ଞାପନ ଦେଖି ଉଭୟ ଏକାଦିନ ଆପ୍ଲାଏ କରିଥିଲେ ଚାକିରି ପାଇଁ । ପଢ଼ା ସରୁ ସରୁ ଚାକିରି ମିଳିଗଲା ଉଭୟଙ୍କୁ ଏକା ଦିନରେ । ମିଳିଲା ବି ପ୍ଲାଣ୍ଟର କ୍ୱାର୍ଟର, ପାଖାପାଖି । ଏହାକୁ ସଂଯୋଗ କହିବନି ତ କ'ଣ କହିବ ?

ଏହା ଭିତରେ ବିତିଗଲାଣି କୋଡ଼ିଏ ବର୍ଷ । ଉଭୟ ତୃତୀୟ ଶ୍ରେଣୀ କର୍ମଚାରୀରୁ ଜିରୋ ଗ୍ରେଡ୍ ଏକ୍‌ଜିକ୍ୟୁଟିଭ୍‌କୁ ପ୍ରମୋଶନ ପାଇଲେ ଏକା ସମୟରେ । ସେତେବେଳେ ପାହ୍ୟା ପରିବର୍ତ୍ତନ ହେତୁ ଉଭୟଙ୍କୁ ମିଳୁଥିଲା ଅନ୍ୟ କ୍ୱାର୍ଟର । ମାତ୍ର ଉଭୟଙ୍କର ସେକ୍ଟର ଅଲଗା ଅଲଗା ହୋଇଯାଇଥିବା ହେତୁ ନୂଆ କ୍ୱାର୍ଟରକୁ ନ ଯାଇ ନିଜର ପୁରୁଣା କ୍ୱାର୍ଟରରେ ରହିବାକୁ ଉଭୟେ ସିଦ୍ଧାନ୍ତ କରିଥିଲେ ।

ଜିରୋ ଗ୍ରେଡ୍ ଏକ୍‌ଜିକ୍ୟୁଟିଭ୍‌ରୁ ଗ୍ରେଡ୍ ୱାନ୍ ଏକ୍‌ଜିକ୍ୟୁଟିଭ୍ ପ୍ରମୋଶନ ପାଇଁ ଉଭୟ ଦେଇଥିଲେ ଇଣ୍ଟରଭ୍ୟୁ । ମାତ୍ର ଦେବବ୍ରତ ଡେଇଁ ପାରିଲେନି ବାଡ଼ । ବାଙ୍କବାବୁ ପାଇଗଲେ ପ୍ରମୋଶନ । ଅବଶ୍ୟ ପ୍ରମୋଶନ ପାଇଲେ ଯେତିକି ଖୁସି ସ୍ୱାଭାବିକ ହେବା କଥା, ସେତିକି ହୋଇପାରିନଥିଲେ ବାଙ୍କବାବୁ ନିଜ ପ୍ରିୟ ବନ୍ଧୁଙ୍କ ଅସଫଳତା ପାଇଁ । ସେ ଆଶ୍ଚର୍ଯ୍ୟ ହୋଇଥିଲେ ପ୍ରମୋଶନ ତାଲିକାରେ ଦେବବ୍ରତର ନାମକୁ ନ ଦେଖି । ଉଭୟଙ୍କର ଜବ୍ ଏଫିସିଏନ୍ସି ସମାନ ଥିଲା – ଉଣେଇଶ – ବିଶ୍ ମଧ୍ୟ ନୁହେଁ, ଅଥଚ ଦେବବ୍ରତ ପାଇଲେନି ପ୍ରମୋଶନ । ସେ ନିଜର ସଫଳତାକୁ ଯେତିକି ତର୍ଜମା କରି ନଥିଲେ ତା'ଠାରୁ ଅଧିକ ବିଶ୍ଳେଷଣ କରିଥିଲେ ଦେବବ୍ରତର ବିଫଳତାର

କାରଣକୁ । ଶେଷରେ ତାଙ୍କର ଉପଲବ୍ଧି ହୋଇଥିଲା ଯେ, ପ୍ରମୋଶନ ପାଇଁ ଜବ୍ ଏଫିସିଏନ୍ସିର ଆବଶ୍ରକତାଠାରୁ ଅନ୍ୟାନ୍ୟ ଦିଗ ଯଥା - ବସ୍ ମ୍ୟାନେଜମେଣ୍ଟ, ରିଲାଏବିଲିଟି ଓ ଡିପେଣ୍ଡେବିଲିଟି ଇତ୍ୟାଦିର ବିଶେଷ ଆବଶ୍ୟକତା ରହିଛି । ଦେବବ୍ରତଙ୍କ କାର୍ଯ୍ୟଶୈଳୀ ଭଲ ଥିଲେ ମଧ୍ୟ ତାଙ୍କର ବସ୍ ମ୍ୟାନେଜମେଣ୍ଟ ଦୁର୍ବଳ ଥିଲା । ବାଙ୍କବାବୁ ଉପରିସ୍ଥ ଅଫିସରମାନଙ୍କର ବ୍ୟକ୍ତିଗତ କାର୍ଯ୍ୟ, ଏଇ ଯେମିତି କାହା ପିଲା କେଉଁ ସ୍କୁଲରେ ପଢ଼ିବ ତା'ର ବ୍ୟବସ୍ଥା, ଭଲ ଟିଉଟରଙ୍କୁ ଖୋଜି ଆଣି ଖଞ୍ଜିଦେବା, କାହାର ବୁଢ଼ା ବାପମା'ଙ୍କର ଡାକ୍ତର ଦେଖା, ତୀର୍ଥ ଭ୍ରମଣର ବ୍ୟବସ୍ଥା ଇତ୍ୟାଦି ପାଇଁ ଆଗଭର ହୋଇ ବାହାରି ପଡୁଥିଲେ, ଯେଉଁଟା କି ଦେବବ୍ରତଙ୍କ କ୍ଷେତ୍ରରେ ଆଦୌ ନଥିଲା କହିଲେ ଚଳେ । ଏତଦ୍‌ବ୍ୟତୀତ ସେ ପ୍ରତି ବର୍ଷ କୌଣସି ନା କୌଣସି ବାହାନାରେ ନିଜ ଘରେ ଦୁଇ ତିନୋଟି ପାର୍ଟିର ଆୟୋଜନ କରି ନିଜର ସମସ୍ତ ଉପରିସ୍ଥ ଅଫିସରଙ୍କୁ ଆପ୍ୟାୟିତ କରୁଥିଲେ । ସେ ମନେ ମନେ ନିଶ୍ଚିତ ହେଉଥିଲେ ଯେ ତାଙ୍କର ଏହି ସବୁ କାର୍ଯ୍ୟ ତାଙ୍କୁ ଆଗକୁ ଉଠିବାରେ ସାହାଯ୍ୟ କରିଥିବାବେଳେ ଦେବବ୍ରତଙ୍କୁ ପଛରେ ପକାଇ ଦେଇଛି ।

ଏକ୍‌ଜିକ୍ୟୁଟିଭ୍‌କୁ ପ୍ରମୋଶନ ପାଇବା ପରେ ବାଙ୍କବାବୁ ବାଧ୍ୟ ହୋଇଥିଲେ, ପ୍ରକାରାନ୍ତରେ ତାଙ୍କୁ ବାଧ୍ୟ କରାଯାଇଥିଲା, ଏମ୍ପ୍ଲଇଜ୍ କ୍ୱାର୍ଟର ଛାଡ଼ି ଅଫିସର୍ସ କ୍ୱାର୍ଟରକୁ ଯିବା ପାଇଁ । କାରଣ ତାଙ୍କର ସମଗ୍ରେଡ୍ ଓ ଉପରିସ୍ଥ ଅଫିସରମାନେ କେହି ଚାହୁଁ ନ ଥିଲେ ଏମ୍ପ୍ଲଇଜ୍ ଓ ଅଫିସରମାନଙ୍କ ମଧ୍ୟରେ ସୋସିଆଲ ଓ ଅଫିସିଆଲ ଷ୍ଟାଟସ୍ ମଧ୍ୟରେ ଯେଉଁ ପ୍ରାଚୀରଟି ଅଛି, ତାହା ଭାଙ୍ଗିଯାଉ ଜଣେ ବ୍ୟକ୍ତିବିଶେଷର ଭାବପ୍ରବଣଗତ ସମ୍ପର୍କକୁ ନେଇ । ଉପରିସ୍ଥ ଅଫିସରମାନଙ୍କର ଚାପ ଓ ଯୁକ୍ତି ପାଖରେ ନାଚାର ହୋଇ ବାଙ୍କବାବୁ ଶେଷରେ ବାଧ୍ୟ ହେଲେ ନିଜର କ୍ୱାର୍ଟର ବଦଳାଇବା ପାଇଁ ।

ଯେଉଁ ଦିନ ନିଜର କ୍ୱାର୍ଟର ବଦଳାଇବା ନିଷ୍ପତ୍ତି ସମ୍ପର୍କରେ ସେ ଦେବବ୍ରତଙ୍କୁ ଜଣାଇଲେ, ସେଦିନ ଦେବବ୍ରତ ଦ୍ୱିତୀୟ ଥର ପାଇଁ ଗୋଟେ ଝଟ୍‌କା ଅନୁଭବ କଲେ ନିଜର ପ୍ରମୋଶନଜନିତ ବିଫଳତା ପାଇଁ । କିଛି ସମୟ ଖୁବ୍ ନିରବ ଓ ସ୍ଥିର ରହି ନିଜ ଭିତରର ଉଦ୍‌ବେଳନକୁ ଶାନ୍ତ କରି ଦେବବ୍ରତ କହିଲେ - ଏଇଟା ତ ଅଫିସ୍‌ର ନିୟମ, ତୁ ଏଥିରେ ବ୍ୟତିକ୍ରମ କରିବାକୁ କାହିଁକି ଚିନ୍ତା କରୁଥିଲୁ ? ଆମେ ଦୁଇ ବନ୍ଧୁ ସାଙ୍ଗ ହୋଇ ପାଠ ପଢ଼ିଲେ, ସାଙ୍ଗ ହୋଇ ଚାକିରି କଲେ, ସାଙ୍ଗ ହୋଇ ଏତେ ବର୍ଷ ପାଖାପାଖି

କ୍ୱାର୍ଟରରେ ରହିଲେ; ଏହା କ'ଣ କମ୍ କଥା ! ସବୁ ସମାନ ଅବସ୍ଥାରେ ଆରମ୍ଭ କଲେ ମଧ୍ୟ ଭାଗ୍ୟ କ'ଣ ସମସ୍ତଙ୍କର ସମାନ ? ଯଦି ସେ କଥା ହୋଇଥାଆନ୍ତା, ତେବେ ମୋର ଦୁଇଟି ଝିଅ ଓ ତୋ'ର ଦୁଇଟି ପୁଅ କାହିଁକି ହୋଇଥାଆନ୍ତା ? ଆରେ ! ଜୀବନରେ ଏମିତି କିଛି ଘଟଣା ଘଟେ କିମ୍ବା ଆସେ, ଯାହାକୁ ଆମେ ନ ଚାହିଁଲେ ମଧ୍ୟ ଗ୍ରହଣ କରିବାକୁ ବାଧ୍ୟ । ମୁଁ ବୁଝୁଛି, ତୁ ଚାହୁଁନୁ ଅଲଗା ହୋଇ ରହିବାକୁ ତ ? ହେଲେ ଅଫିସ୍‌ର ନିୟମ ତ ମାନି ଚଳିବାକୁ ପଡ଼ିବନା । ତା' ପରେ ତୁ କେଉଁ ବାହାର ସହରକୁ ଚାଲିଯାଉଛୁ ଯେ ! ଏ ସେକ୍ଟରରୁ କେବଳ ଅନ୍ୟ ଏକ ସେକ୍ଟରକୁ ଯିବୁ ତ; ସେଥିପାଇଁ ଏତେ ଚିନ୍ତା କାହିଁକି ?

କ୍ୱାର୍ଟର ବଦଳାଇଲେ ବାଙ୍କବାବୁ । ନୂଆ କ୍ୱାର୍ଟରରେ ପ୍ରବେଶ ପାଇଁ ସକାଳେ ଆୟୋଜନ କରିଥିଲେ ଗୋଟିଏ ପୂଜାର୍ଚ୍ଚନା ଓ ସନ୍ଧ୍ୟାରେ ଅଫିସରମାନଙ୍କ ପାଇଁ ପାର୍ଟି । ଦେବବ୍ରତ ଓ ତାଙ୍କ ସ୍ତ୍ରୀ ସକାଳର ପୂଜା ଅର୍ଚ୍ଚନାରେ ସକ୍ରିୟ ସହଯୋଗ କରିଥିଲେ । ପୂଜା ପରେ ଅପରାହ୍ନରେ ସେମାନେ ଯେତେବେଳେ ବାହାରିଲେ ତାଙ୍କ କ୍ୱାର୍ଟରକୁ ଫେରିବା ପାଇଁ, ବାଙ୍କବାବୁ ଦେବବ୍ରତଙ୍କୁ କହିଲେ – ତୁ ଚାଲିଯିବାକୁ ବାହାରିଲୁଣି କ'ଣ, ରାତିକୁ ପରା ପାର୍ଟି ଅଛି ?

ହଁ ଯେ, ହେଲେ ରାତିର ପାର୍ଟିରେ ମୋର ଭୂମିକା କ'ଣ ? ସେଥିରେ ତ କେବଳ ଏକଜିକ୍ୟୁଟିଭ ର୍ୟାଙ୍କର ଅଫିରସମାନେ ଯୋଗଦେବେ; ମୋତେ ସେଥିରେ ପୂରେଇ 'ହଂସ ମଧ୍ୟେ ବକ ଯଥା' କାହିଁକି କରିବୁ ?

ଶେଷରେ ତୁ ଏକଥା କହିଲୁ ନା ?

ଆରେ ମୁଁ ତୋ କଥା କହୁନି, ଯେଉଁ ଅନ୍ୟ ଅଫିରସମାନେ ଆସିବେ, ସେମାନେ ମୋ ଉପସ୍ଥିତିକୁ ହୁଏତ ସହଜରେ ଗ୍ରହଣ କରି ନ ପାରନ୍ତି ।

ମାର୍ ଗୁଲି ତୁ ଅନ୍ୟମାନଙ୍କ କଥାକୁ । ତୁ ମୋର ବନ୍ଧୁ ଥିଲୁ ଓ ରହିବୁ । ଗୋଟିଏ ସୋପାନର ଉନ୍ନତି ଗୋଟିଏ ହିମାଳୟ ନୁହେଁ ଯେ, ଆମେ ସୀମାର ଏପଟ ସେପଟ ହୋଇଯିବା । ତୁ ସେସବୁ ବାଜେ କଥା ଚିନ୍ତା ନ କରି ସନ୍ଧ୍ୟାବେଳକୁ ଆ । ହଁ ମନେରଖ, ସମସ୍ତେ ଯେମିତି ଆସ ।

ଦେବବ୍ରତ ପିଲାଛୁଆଙ୍କୁ ଧରି ଘରକୁ ଫେରିଲେ । ବାଟସାରା ସମସ୍ତେ ଥିଲେ ଚୁପଚାପ୍ । ସେ ଅନୁଭବ କରୁଥିଲେ, ଏଥର ପ୍ରମୋଶନ୍‌ର ବିଫଳତାର ଦଂଶନ ଜ୍ୱାଳାରେ କେବଳ ସେ ନୁହନ୍ତି, ପରିବାରର ସମସ୍ତେ ଅସ୍ଥିର । ଏହି ପ୍ରମୋଶନ

ଫଳରେ ଯେ ବାଙ୍କବାବୁ ଆର୍ଥିକ ଦୃଷ୍ଟିକୋଣୁ ବହୁ ଉର୍ଦ୍ଧ୍ୱକୁ ଚାଲିଯାଇଛନ୍ତି ସେ କଥା ନୁହେଁ, ମାତ୍ର ସାମାଜିକ ସ୍ତରରେ ସୃଷ୍ଟି ହୋଇଯାଇଛି ଏକ ବିରାଟ ବ୍ୟବଧାନ । ଯେଉଁ ବ୍ୟବଧାନକୁ ପରିବାରର କେହି ଗ୍ରହଣ କରିବାକୁ ମାନସିକ ସ୍ତରରେ ପ୍ରସ୍ତୁତ ହୋଇପାରୁନାହାନ୍ତି । ତେଣୁ ସମସ୍ତେ ନିଜ ନିଜ ଭିତରେ ଚୁପ୍ ରହି ଏହାକୁ କିପରି ସାମ୍ନା କରାଯିବ, ସେଥିପାଇଁ ଗୋଟେ ମାନସିକତା ସୃଷ୍ଟି କରୁଅଛନ୍ତି ।

ଘର ଭିତରକୁ ପଶୁ ପଶୁ ପତ୍ନୀ କହିଲେ - ତମେ ତମର ବନ୍ଧୁ ହିସାବରେ ସନ୍ଧ୍ୟାର ପାର୍ଟିରେ ଯଦି ଯୋଗ ଦେବାକୁ ଚାହୁଁଛ, ତେବେ ଯାଅ; ହେଲେ ଆମେ କେହି ଯାଇପାରିବୁ ନାହିଁ ।

- ନ ଗଲେ ବାଙ୍କ ଖରାପ ଭାବିବ । ଏମିତି ବି ହୋଇପାରେ, ସେ ଭାବିବ ମୁଁ ପ୍ରମୋଶନ ପାଇ ନ ଥିବାରୁ ଈର୍ଷାରେ ତମେମାନେ ଗଲ ନାହିଁ ବୋଲି ।

- କିଏ କ'ଣ ଭାବିବ, ସେ କଥା ମୁଁ ଚିନ୍ତା କରୁନାହିଁ; ମୁଁ କେବଳ ଚିନ୍ତା କରୁଛି ମୋତେ ଓ ମୋ ପିଲାମାନଙ୍କୁ ସେ ପରିବେଶରେ କେମିତି ଲାଗିବ ବୋଲି ।

- ମୁଁ ଜାଣେ, ମୋ ଅପେକ୍ଷା ତମମାନଙ୍କୁ ଅଧିକ ଖରାପ ଲାଗୁଥିବ; ମାତ୍ର ବାସ୍ତବତାକୁ ତ ଆମମାନଙ୍କୁ ଗ୍ରହଣ କରିବାକୁ ପଡ଼ିବ ।

- ତମେ ପ୍ରମୋଶନ ପାଇନ ଓ ସେ ପାଇଛନ୍ତି, ଏଇଟା ତ ବାସ୍ତବତା; ଯାକୁ ତ ଆମେ ଗ୍ରହଣ କରିନେଇଛୁ । ସେଥିପାଇଁ ତମକୁ ତ କେବେ ଦୋଷ ଦେଇନୁ । ହେଲେ ତମ ବନ୍ଧୁତାର ଖାତିରରେ ଆମେ ସେଠାକୁ ଯାଇ ଅପମାନିତ ହେବାଟାକୁ ଗ୍ରହଣ କରିପାରୁନାହୁ । - ତମକୁ ସେଠି କିଏ କ'ଣ କହିଲା କି ?

- କେବଳ କିଏ କ'ଣ ମୁହଁରେ କହିଲେ ହୁଏ ? ପରିବର୍ତ୍ତିତ ହାବଭାବ ଓ ବ୍ୟବହାରରୁ କ'ଣ କିଛି ଜାଣିହୁଏନି ?

- ହେଲେ ତମେ ଯେଉଁଟାକୁ ସେମାନଙ୍କର ବ୍ୟବହାରର ପରିବର୍ତ୍ତନ ବୋଲି ଭାବୁଛ, ହୁଏତ ତାହା ଆମମାନଙ୍କର ନ୍ୟୁନମାନସିକତାର ପ୍ରତିଫଳନ ହୋଇଥାଇପାରେ ।

- ମୁଁ ଏ ବିଷୟରେ ଅଧିକ ଯୁକ୍ତି କରିବାକୁ ଚାହୁଁନି । କହିଦେଲି, ଆମେ ଯିବୁନି ବୋଲି; ବାସ୍ ଯିବୁନି । ସେ ଯାହା ଭାବିଲେ ପଛେ ଭାବନ୍ତୁ । ଯଦି ବାଙ୍କବାବୁ ତମକୁ ପଚାରନ୍ତି ଆମେ କାହିଁକି ଗଲୁନି ବୋଲି, ତମେ କହିଦେବଦେହ ଭଲ ଲାଗୁ ନ ଥିଲା; ଆସିଲେନି । ବାସ୍ ।

ସେ ବାସ୍ନର ପ୍ରଖରତା ଏତେ ତୀବ୍ର ଥିଲା ଯେ ଦେବବ୍ରତବାବୁ ଆଉ ଚାହିଁଲେ ନାହିଁ ସେମାନଙ୍କ ଯିବା ଓ ନ ଯିବା ନେଇ ପତ୍ନୀଙ୍କ ସହ କୌଣସି ଯୁକ୍ତି କରିବା ପାଇଁ ।

ସନ୍ଧ୍ୟାବେଳର ପାର୍ଟିକୁ ସେ ଜାଣି ଜାଣି ଟିକିଏ ବିଳମ୍ବରେ ଗଲେ । ସେତେବେଳକୁ ସରି ଯାଇଥିଲା ସମସ୍ତ ପ୍ରକାରର ପ୍ରସ୍ତୁତି । ସୁଟ୍ ଟାଏ ପରିହିତ ହୋଇ ବାଙ୍କବାବୁ ଖୁବ୍ ବ୍ୟସ୍ତ ଥିଲେ ତାଙ୍କ ଉପରିସ୍ଥ ଅଫିସରଙ୍କ ପରିଚର୍ଯ୍ୟାରେ । ପାର୍ଟିରେ ଯେମିତି କିଛି ତ୍ରୁଟି ନ ରହେ, ଏଥିପାଇଁ ସେ ଥିଲେ ଖୁବ୍ ସତର୍କ ଓ ଯତ୍ନଶୀଳ । ତାଙ୍କର ସେହି ବ୍ୟସ୍ତତା ମଧ୍ୟରେ ସେ ଥରେ ଦୁଇଥର ସାମ୍ନାସାମ୍ନି ହୋଇଯାଇଛନ୍ତି ଦେବବ୍ରତଙ୍କ ସହ । ଭେଟ ହେବା କ୍ଷଣି ଗୋଟିଏ ପରମ ବ୍ୟସ୍ତତା ଦେଖାଇ କହନ୍ତି – ଏଞ୍ଜୟ, ଏଞ୍ଜୟ ଇୟୋରସେଲ୍ଫ । ଲେଟ ମି ଟେକ୍ କେୟାର ଅଫ୍ ଦି ଗେଷ୍ଟସ୍ । ସେ ଜାଣି ଜାଣି ସେଦିନ ଇଂରାଜୀରେ କଥା ହେଉଥିଲେ ଦେବବ୍ରତଙ୍କ ସହ । ତାଙ୍କର ଉଦ୍ଦେଶ୍ୟ ନଥିଲା ତାଙ୍କର ଉପରିସ୍ଥ ଅଫିସରମାନଙ୍କୁ ତାଙ୍କର ଇଂରାଜୀ ଜ୍ଞାନ ଜଣାଇବା, ବରଂ ଭୟ ଥିଲା କାଳେ ଦେବବ୍ରତ ସହ ଓଡ଼ିଆରେ କଥା ହେଲେ, ସେ ଯଦି ପୁରୁଣା ସମ୍ପର୍କକୁ ନେଇ 'ତୁ' 'ତା' ସମ୍ବୋଧନ କରିଦିଏ, କଥା ସରିଲା । ଏଠାରେ ଉପସ୍ଥିତ ଥିବା କୌଣସି ଅଫିସର ତାକୁ ଠିକ୍ ଭାବରେ ଗ୍ରହଣ କରିବେ ନାହିଁ । କାରଣ ନନ୍ଏକ୍ଜିକ୍ୟୁଟିଭ୍ ଓ ଏକ୍ଜିକ୍ୟୁଟିଭ୍ ଅଫିସରମାନଙ୍କ ମଧ୍ୟରେ ବ୍ୟବଧାନ ୱାଘା ବୋର୍ଡର ପରି । ଯଦି ଦେବବ୍ରତ ତାଙ୍କ ସାଙ୍ଗରେ କଥା ହୋଇ 'ୟୁ' କୁହେ, ତେବେ ତାହା ସବୁଆଡ଼କୁ ମାପ ପାଇଯିବ ।

ଦେବବ୍ରତ ବୁଝିପାରିଥିଲେ ବାଙ୍କବାବୁଙ୍କ ମନର କଥା । ତେଣୁ ପାର୍ଟି ସମୟତକ ସେ ବାଆଁରେଇ ରହିଲେ ତାଙ୍କଠାରୁ । ପାର୍ଟି ସରିବା ପରେ ପରେ ଆସିଥିବା ଅଫିସରମାନେ ଜଣକ ପରେ ଜଣେ ଯିବା ଆରମ୍ଭ କରିଦେଲେ । ସମସ୍ତଙ୍କୁ ବ୍ୟକ୍ତିଗତ ଭାବେ ବିଦାୟ ଜଣାଉଥିଲେ ବାଙ୍କ ବାବୁ । ପାର୍ଟି ପୂରା ଫାଙ୍କା ହୋଇଯିବା ପରେ ଦେବବ୍ରତ ବାବୁ ବାଙ୍କବାବୁଙ୍କ ପାଖକୁ ଯାଇ ପଚାରିଲେ – ମେଁ ଆଇ ଗୋ ନାଓଁ ?

ବାଙ୍କବାବୁ ଏବେ ଫେରି ଆସିଲେ ସ୍ୱାଭାବିକତାକୁ । ପଚାରିଲେ, ତୁ ଖାଇଛୁ ତ ?

– ହଁ, ହଁ, ମୁଁ ବହୁ ଆଗରୁ ଖାଇନେଇଛି । ୟୁ ନୋ, ମୋର ତ ଡ୍ରିଙ୍କସ ଚଳେ ନାହିଁ । ତେଣୁ ମୁଁ ମୋର ଅଲଗା ବ୍ୟବସ୍ଥା କରାଇ ନେଇଥିଲି ।

– ବେଶ୍ ଭଲ କରିଛୁ । ଆଜି ପାର୍ଟି କେମିତି ହେଲା କହିଲୁ ନାହିଁ ଯେ ?

- ପାର୍ଟି ଖୁବ୍ ଭଲ ହେଲା । କେଉଁଥିରେ ତ୍ରୁଟି କିଛି ନ ଥିଲା ।

- ହଁ, ସେଇଥିପାଇଁ ମୁଁ ଖୁବ୍ ସିଲେକ୍ଟିଭଲି ଇନ୍‌ଭାଇଟ୍ କରିଥିଲି ମୋ ଉପରିସ୍ଥ ଅଫିସରମାନଙ୍କୁ । ଧ୍ୟାନ ଦେଇଥିଲି, ନେକ୍‌ସ୍‌ଟ ପ୍ରମୋଶନ ପାଇଁ କାହା କାହା ସୁପାରିସ୍ ଦରକାର ଏବଂ ସେମାନେ ଯେମିତି ପାର୍ଟିକୁ ଆସନ୍ତି ସେଥିପାଇଁ ରୀତିମତ୍ ବ୍ୟବସ୍ଥା କରିଥିଲି ।

- ଓ ! ୟୁ ହାଭ ଅଲରେଡି ଷ୍ଟାର୍ଟେଡ ପ୍ରିପାରେଶନ ଫର ଦ ନେକ୍‌ସଟ୍ ।

- ତୁ ଜାଣିନୁ, ଉପରକୁ ପଡ଼ିଥିବା ଶିଡ଼ିର ପାବଚ୍ଛ କେତେ ଖସଡ଼ା । ତାକୁ ଜଗିରଖି ଚଳିବାକୁ ପଡ଼ିବ । ତୁ ଆଜି ଯେଉଁ ପଛରେ ପଡ଼ିଗଲୁ, ତାହା ତୋ'ର ଏଫିସିଏନ୍ସିର ଅଭାବ ପାଇଁ ନୁହେଁ; ଅଭାବ ହେଉଛି ଆକ୍‌ସେପ୍‌ଟାନ୍ସ ବାଯ ଦ ସିନିୟର୍ସ । ବନ୍ଧୁ ହିସାବରେ ମୁଁ ତୋତେ ଗୋଟେ ଉପଦେଶ ଦେବି ମାନିବୁ ?

- କ'ଣ କହ ।

- ତୁ ଗୋଟେ ପାର୍ଟିର ଆୟୋଜନ କର । ଆସନ୍ତା ଇଣ୍ଟର୍ଭ୍ୟୁ ବୋର୍ଡ଼ରେ ଯେଉଁ ଅଫିସରମାନେ ରହିବେ ତଥା ସି.ସି.ଆର. ଦେଉଥିବା ଅଫିସରମାନଙ୍କୁ ଡାକ ସେଠାକୁ । ଦେଖିବୁ କ'ଣ ହେଉଛି ।

- ପାର୍ଟି କ'ଣ ହୋଟେଲରେ ?

- ନା, ହୋଟେଲରେ ନୁହଁ, ଘରେ ।

- ତୁ ସବୁ କଥା ଜାଣି ମୋତେ ଏ ପରାମର୍ଶ ଦେଇପାରିଲୁ ?

- ମଉସାଙ୍କ କଥା ତ ? ଘରେ ମଦ୍ୟପାନର ସେ ଘୋର ବିରୋଧୀ ତ ? ହେଲେ ମୁଁ ଯାହା କହିଲି, ଖୁବ୍ ଗଭୀର ଭାବରେ ଚିନ୍ତା କର । କିଛି ଗୋଟାଏ ବିକଳ୍ପ ବ୍ୟବସ୍ଥା କର ।

ଘରକୁ ଫେରିବା ବାଟରେ ଦେବବ୍ରତ ଭାବୁଥିଲେ – ବାଙ୍କ ଆଜି ପ୍ରମୋଶନ ପାଇବାର ମାର୍ଗ ବିଷୟରେ ମୋତେ ଉପଦେଶ ଦେଇପାରିଲା; କାହିଁ ଥରଟିଏ ତ ପଚାରିଲା ନାହିଁ ତୋ' ପିଲାମାନେ କାହିଁକି ଆସିଲେ ନାହିଁ କିମ୍ବା ତୁ କେତେବେଳେ ଖାଇଲୁ ମୁଁ କେମିତି ଜାଣିପାରିଲି ନାହିଁ ? ସେ କ'ଣ ଆନ୍ତରିକ ଭାବେ ଚାହୁଁ ନ ଥିଲା କି ମୁଁ କିମ୍ବା ମୋ ପିଲାମାନେ କେହି ତା' ପାର୍ଟିରେ ସାମିଲ ହେଉ ବୋଲି ? ଯଦି ସେକଥା ନୁହଁ, ତେବେ ମୋତେ ଏକା ଦେଖିବା କ୍ଷଣି ତ ପଚାରି ପାରିଥାଆନ୍ତା, ପିଲାମାନେ କାହିଁକି ଆସି ନାହାନ୍ତି ବୋଲି ? ଯଦିବା ସେ ତା' ଉପରିସ୍ଥ ଅଫିସରମାନଙ୍କର

ଖାତିରଦାରିରେ ବ୍ୟସ୍ତ ରହି ଭୁଲିଗଲା, ତା' ସ୍ତ୍ରୀ ଏତେ ଥର ଦେଖିବା ପରେ ମଧ୍ୟ ପଦୁଟିଏ ତ ଏ ବିଷୟରେ ପଚାରି ନାହାନ୍ତି ମୋତେ ।

ଘରକୁ ଫେରିବା ବେଳକୁ ଢେର୍ ରାତି ହୋଇ ସାରିଥିଲା । ପିଲାମାନେ ସମସ୍ତେ ଶୋଇ ଯାଇଥିଲେ । ସେ ବେଲ୍ ମାରୁ ମାରୁ ପତ୍ନୀ ନିଦ ମଳମଳ ଆଖିରେ କବାଟ ଖୋଲି ଦେଇ ପୁଣି ଚାଲିଗଲେ ଶୋଇବା ପାଇଁ । ବାପା ଖୁଁ-ଖୁଁ ହେଉଥିଲେ ତାଙ୍କର ଶୋଇବା ଘରେ । ଦେବବ୍ରତଙ୍କ ଉପସ୍ଥିତିକୁ ଜାଣିପାରି ସେ ପଚାରିଲେ- ବାବୁ, ଖାଇକରି ଆସିଛୁ ତ ?

ସେ ବାପାଙ୍କ ରୁମ୍ ପାଖକୁ ଯାଇ ପଚାରିଲେ- ତମେ ଏଯାଏ ଶୋଇନା ଯେ ବାପା ?

– ନିଦ ଆସୁନି । ଟିକେ ନିଦ ଲାଗିଲା ବେଳକୁ ଏ କାଶଟା ଦମା ପେଲୁଛି । ତା'ପରେ ମୋ ମନ କାହିଁକି କହୁଥିଲା ଯେ ତୁ ସେଠାରେ ଖାଇପାରି ନଥିବୁ ବୋଲି; ସେଥିପାଇଁ ଶୋଇପାରୁନଥିଲି ।

ତମେ କାହିଁକି ଭାବିଲ ଯେ ମୁଁ ଖାଇପାରି ନଥିବି ବୋଲି ?

ତୁ' ଏଡ଼ିକି ଟିକିଏ ହୋଇଥିଲୁ, ତୋ' ମାଆ ମରିଗଲା । ତୋତେ ମୁଁ ଉଭୟ ମାଆ ଓ ବାପାର ସ୍ନେହ ଦେଇ ଗଢ଼ିଥିଲି । ବୁଝିପାରିବିନି ତୋ' ମନକଥା ? ଗୋଟିଏ ପ୍ରମୋଶନର ବିଫଳତା ତୋତେ ଅସ୍ଥିର କରିଚାଲିଛି କିଛି ଦିନ ହେଲା, ଏକଥା ତୁ ମୋତେ ନକହିଲେ ମଧ୍ୟ ମୁଁ ବୁଝିପାରୁଛି ।

– ବୁଝିଲେ ବି ତମେ କ'ଣ କରିପାରିବ ବାପା ? ଦୁନିଆ କେତେ ଆଗେଇ ଗଲାଣି । ତମେ ତ ତମର ସେହି ପୁରୁଣା ମାନସିକତାରୁ ଉର୍ଦ୍ଧ୍ୱକୁ ଉଠିପାରିଲ ନାହିଁ ।

– ହଁ, ସତ କଥା କହିଲୁ । ସଂସ୍କାରଟା ମୋ ଭିତରେ ଏମିତି ଗୋଟେ ଜଡ଼ ହୋଇ ଚେର ମେଲି ଦେଇଛି ଯେ ପରିବର୍ତ୍ତନର ଚକ୍ରବାତରେ ମଧ୍ୟ ଉପୁଡ଼ିପାରୁ ନାହିଁ । ହଉ ତୁ ଖାଇନୁ – କ'ଣ ଟିକେ ଖାଇନେ; ପରେ ଏ ବିଷୟରେ କଥା ହେବା ।

– ନା – ନା, ମୁଁ ଖାଇବି ନାହିଁ; କେବଳ ପାଣି ଟିକେ ପିଇବି ।

– ତୁ ଏଥିରେ କେତେ ଦୁଃଖୀ ସେକଥା ପଛ କଥା; ହେଲେ ପିଲାମାନେ ଓ ବୋହୂ ମୋର ପୂରା ଭାଙ୍ଗି ପଡ଼ିଛନ୍ତି । ନାତୁଣୀ ଦୁଇଜଣ ତ ଆଜି ମୁହେଁ ମୁହେଁ କହିଦେଲେ – "ଜେଜେ, ବାପାଙ୍କର ଏ ବିଫଳତା ପାଇଁ ତମେ ମୁଖ୍ୟତଃ ଦାୟୀ ।"

– ତମେ ଦାୟୀ ବୋଲି ସେମାନଙ୍କର କାହିଁକି ଧାରଣା ହେଲା ?

- ଉର୍ଦ୍ଧ୍ୱ ଉଡ଼ାଣ ପାଇଁ ଯାହା ସବୁ ଏ ସମାଜରେ ଚାଲିଛି, ମୋ ଉପସ୍ଥିତି ଯୋଗୁଁ ଏ ଘରେ ତାହା ସମ୍ଭବ ହୋଇପାରୁନି ବୋଲି ।

ସେମାନଙ୍କ କଥା ଶୁଣିବା ପରେ ମୁଁ ମନସ୍ଥ କରିଛି ତୋତେ ମୁକ୍ତ କରିଦେବା ପାଇଁ ମୋର ନୈତିକତା ଓ ଆଦର୍ଶରୁ । ତୁ ଏବେ ସବୁ ପନ୍ଥା ଆଦରି ନେଇପାରୁ ଯାହା ବାଞ୍ଛନୀୟ ତୋ ଉର୍ଦ୍ଧ୍ୱ ଉଡ଼ାଣ ପାଇଁ ।

କିଛି ସମୟ ଗୁମ୍ ହୋଇ ରହିବା ପରେ ଦେବବ୍ରତ ବାପାଙ୍କୁ କହିଲେ - ହଉ, ତମେ ଶୋଇପଡ଼ ବାପା; କାଲି ସକାଳୁ ମୁଁ ସେମାନଙ୍କ କଥା ବୁଝିବି ।

ରାତି ପାହି ସକାଳ ହେଲା । ସବୁଦିନ ପରି ସକାଳ । ଫରକ ଏତିକି ଥିଲା ଯେ, ପତ୍ନୀଙ୍କ ମୁହଁରୁ ଯାଇ ନ ଥିଲା ଗତକାଲିର ହ୍ୟାଙ୍ଗ ଓଭର । ସକାଳୁ ଚା' ଦେବା ପାଇଁ ଦେବବ୍ରତଙ୍କୁ ଯେଉଁ ସମୟରେ ଉଠାନ୍ତି - ଠିକ୍ ସେହି ସମୟରେ ଉଠାଇଲେ । ମାତ୍ର ହାତରେ ନ ଥିଲା ଚା' କପ୍; ବରଂ ଥିଲା ପ୍ରଶ୍ନଟିଏ - ଚା' ଦେବି ନା ଲେମ୍ବୁ ସରବତ ?

- ଲେମ୍ବୁ ସରବତ ! କ'ଣ ପାଇଁ ?

- ନାଇଁ ଯେ, ମୁଁ ଭାବିଲି ଗତକାଲି ପାର୍ଟିରେ ତମେ ଜୋର୍ ଖାଇ ଦେଇଥିବ ତ ! ହଜମ ପାଇଁ ଲେମ୍ବୁ ସର୍‌ବତ ଠିକ୍ ହେବ ବୋଲି ଭାବୁଥିଲି ।

- କ'ଣ ଥଟ୍ଟା କରୁଛ ?

- ଥଟ୍ଟା କାହିଁକି କରିବି ମ ! ତମେ ତ ଯେବେ ପାର୍ଟି ଫାର୍ଟି, ଭୋଜିଭାତ ଖାଇବାକୁ ଯାଅ, ପରଦିନ ସକାଳୁ ତମର ଏମିତି ଅବସ୍ଥା ହୁଏ ।

- ହଉ, ଥାଉ ସେକଥା । ଚା' ଆଣ ।

ପତ୍ନୀ ଚା' ଆଣି ପହଞ୍ଚିବା ପରେ ଦେବବ୍ରତ ପଚାରିଲେ - ତମେମାନେ ବାପାଙ୍କୁ କାଲି କ'ଣ କହିଲ କି ?

- ମୁଁ କାହିଁକି କ'ଣ କହିବି; ଏଇ ପିଲାମାନେ ତାଙ୍କ ସହ କ'ଣ ଥଟ୍ଟା ହେଉଥିଲେ ।

କ'ଣ ଆଉ ଥଟ୍ଟା ହେବେ - କହୁଥିଲେ, ଜେଜେ ! ଯୁଗ ବହୁତ ଆଗେଇଗଲାଣି । ତମର ସେ ପୁରୁଣାକାଳିଆ ମାଷ୍ଟ୍ରିଆ ନୀତି ଓ ଆଦର୍ଶକୁ ଧରି ବସିଲେ ଏ ଯୁଗରେ ଚଳି ହେବନି । ତମରି ଆଦର୍ଶ ପାଇଁ ବାପା ଆଜି ପଛରେ ପଡ଼ିଗଲେ । ବାଙ୍କ ମଉସା ପ୍ରମୋଶନ ପାଇ ଉପରକୁ ଉଠିଗଲେ ।

– କ'ଣ ଦରକାର ଥିଲା ପିଲାମାନଙ୍କର ବାପାଙ୍କୁ ଏମିତି କଥା କହିବା ?

– କିଛି ତ ମିଛ କହି ନାହାନ୍ତି ସେମାନେ ।

– ତା' ହେଲେ ପିଲାମାନଙ୍କର କଥା ପଛରେ ତମର ବି ପ୍ରଚ୍ଛନ୍ନ ସମର୍ଥନ ଥିଲା ?

– ପିଲାଙ୍କ କଥାକୁ ମୁଁ ସମର୍ଥନ କରୁଛି ବୋଲି କେତେବେଳେ କହିଲି ? ମାତ୍ର ସେମାନେ ଯାହା କହିଥିଲେ ତାହା ନିରାଟ ସତ ।

– ହଉ ବାପା ଅଭିମାନରେ ହେଉ ଅବା ଯୁଗନୀତିକୁ ସମ୍ମାନ ଜଣାଇବା ପାଇଁ ହେଉ, ଆମକୁ ମୁକ୍ତ କରିଦେଇଛନ୍ତି ତାଙ୍କର ସଂସ୍କାରର ବନ୍ଧନରୁ । ମୋର ଊର୍ଦ୍ଧ୍ୱ ଉଡ଼ାଣ ପାଇଁ ମୁଁ ଏବେ କ'ଣ କରିପାରୁଛି ଦେଖାଯାଉ ।

– ତମେ ବାଙ୍କବାବୁଙ୍କର ସଫଳତାର ରହସ୍ୟ କ'ଣ ଜାଣିଛ ?

– କ'ଣ ?

– ସେ ଏମିତି ପାର୍ଟି ଫାର୍ଟି କରି ତମ ଉପର ଅଫିସରମାନଙ୍କୁ ଖୁସ୍ କରି ଏ ପ୍ରମୋଶନ ପାଇଲେ ।

– ମୁଁ ତ ଏବେ ସେଇଆ କରିବି ବୋଲି ଭାବିଛି । ଶୁଭସ୍ୟ ଶୀଘ୍ରମ୍ ନୀତିରେ ଆସନ୍ତା ରବିବାର ଦିନ ଗୋଟେ ପାର୍ଟିର ଆୟୋଜନ କରିବି ।

– ଏତେ ଜଲ୍‌ଦି ! ବାପା ସିନା ପିଲାଙ୍କ କଥାରେ ଅଭିମାନ କରି ତମକୁ ମୁକ୍ତ କରିଦେଲେ ବୋଲି କହିଦେଲେ, ହେଲେ ସେ କ'ଣ ଏତେ ଶୀଘ୍ର ,ସବୁ କଥାକୁ ଗ୍ରହଣ କରିପାରିବେ ?

– ସେଥିପାଇଁ ମୁଁ ଏକ ବିକଳ୍ପ ଚିନ୍ତା କରିଛି । ପାର୍ଟି ଦିନ ବାପାଙ୍କୁ ଆଉଟ୍ ହାଉସ୍‌ରେ ରଖିବାର ବ୍ୟବସ୍ଥା କରିବି, ଯେମିତି ଏ ସବୁ ତାଙ୍କ ଦୃଷ୍ଟିରେ ନ ପଡ଼େ ।

ଯାହା କରିବ ବୁଝିବିଚାରି କର; ଯେମିତି ଏ ବୟସରେ ତାଙ୍କ ମନରେ ଆଘାତ ନ ଲାଗେ !

ନିର୍ଦ୍ଧାରିତ ଦିନ ଦେବବ୍ରତ ଆୟୋଜନ କଲେ ପାର୍ଟି । ବାଛି ବାଛି ଉପରିସ୍ଥ ଅଫିସରମାନଙ୍କୁ ନିମନ୍ତ୍ରଣ କଲେ, ଯେଉଁମାନଙ୍କ ବିନା ଚଢ଼ି ହେବ ନାହିଁ ଶିଡ଼ିର ସୋପାନ । ସ୍ୱତନ୍ତ୍ର ଭାବେ ନିମନ୍ତ୍ରଣ କରିଥିଲେ ପ୍ଲାଣ୍ଟର ଜି.ଏମ୍.ଙ୍କୁ ଜଣେ ଓଡ଼ିଆ ଲୋକର ସମ୍ପର୍କ ନେଇ ।

ପାର୍ଟିର ଆୟୋଜନ ଖୁବ୍ ଧୁମ୍‌ଧାମ୍‌ରେ ହେଲା । ସମସ୍ତ ନିମନ୍ତ୍ରିତ ଅତିଥି ଆସି ଯଥା ସମୟରେ ପହଞ୍ଚିଗଲେ । ଯେହେତୁ ଜି.ଏମ୍. ଆସିବାକୁ ସମ୍ମତି ପ୍ରଦାନ ସହ

ନିର୍ଭର ପ୍ରତିଶ୍ରୁତି ଦେଇଥିଲେ, କେବଳ ଅପେକ୍ଷା କରାଯାଇଥିଲା ତାଙ୍କର ଆଗମନକୁ । ଯଦିଓ ସାମାନ୍ୟ ବିଳମ୍ବରେ ସେ ଆସି ପହଞ୍ଚିଲେ, ତାଙ୍କ ବିଳମ୍ବକୁ କେହି ଘେନା କରି ନ ଥିଲେ ।

ସେ ପହଞ୍ଚୁ ପହଞ୍ଚୁ ତାଙ୍କୁ ପାଛୋଟି ନିଆଗଲା ଡ୍ରଇଂରୁମ୍‌କୁ । ଡ୍ରଇଂରୁମ୍‌ଟିକୁ ସ୍ୱତନ୍ତ୍ର ଭାବରେ ସଜାଯାଇଥିଲା ତାଙ୍କର ରୁଚି ଓ ପସନ୍ଦକୁ ଧ୍ୟାନରେ ରଖି । ସେ ସୋଫା ଉପରେ ବସୁ ବସୁ ଘରର ସାଜସଜ୍ଜା ଉପରେ ଥରେ ଆଖି ବୁଲାଇ ଆଣିଲେ । ତାଙ୍କର ମୁହଁର ପ୍ରସନ୍ନତା କହୁଥିଲା ଯେ ସେ ପାର୍ଟିର ଆୟୋଜନ ଓ ତାଙ୍କର ସ୍ୱାଗତକୁ ନେଇ ବେଶ୍ ଖୁସି । ଘରର ସାଜସଜ୍ଜା ଉପରେ ଆଖି ବୁଲାଉ ବୁଲାଉ ହଠାତ୍ ଚମକି ପଡ଼ିବା ଭଳି ଉଠି ପଡ଼ି ଚାଲିଗଲେ କାନ୍ଥ ପାଖକୁ । ଫଟୋଟିକୁ ନିରୀକ୍ଷଣ କରି ପଚାରିଲେ – ଏ ଫଟୋ !

ଦେବବ୍ରତ ପ୍ରମାଦ ଗଣିଲେ । ଭାବିଲେ ପତ୍ନୀଙ୍କ କଥା ମାନିଥିଲେ ଠିକ୍ ହୋଇଥାନ୍ତା । ସକାଳେ ଘର ସଜାଇବା ବେଳେ ସେ କହୁଥିଲେ ବାପାଙ୍କର ପୁରୁଣା ଫଟୋଟିକୁ କାଢ଼ି ନେଇ ସେଠି ଗୋଟେ ପେଣ୍ଟିଂ ଝୁଲାଇଦେବା ପାଇଁ; ଅଥଚ ସେ ତାଙ୍କୁ ବାରଣ କରିଥିଲେ । ସେ ଭୟ କରିଥିଲେ ଯେ, ପାର୍ଟି ସରିବା ପରେ ଯଦି ବାପା ଜାଣନ୍ତି ଯେ ତାଙ୍କର ଫଟୋଟିକୁ ବି ଅପାଂକ୍ତେୟ ମନେକରି କାଢ଼ି ଦିଆଯାଇଛି, ହୁଏତ ଏହା ତାଙ୍କ ପାଇଁ କଫିନ୍‌ର ଶେଷ କଣ୍ଟା ହୋଇଯିବ । ଅଥଚ ଦେଖ, ବାଘ ଭୟ ଯେଉଁଠି ସନ୍ଧ୍ୟା କେମିତି ସେଇଠି ହେଉଛି !

ଏ ଫଟୋ ! ଏ ଫଟୋ ବିଶ୍ୱସାର୍‌ଙ୍କର ତ ? ଆପଣ ବି କ'ଣ ତାଙ୍କର ଛାତ୍ର ଥିଲେ କି ? ପଚାରିଲେ ଜି.ଏମ୍ ।

ତଥାପି ଫଟୋଟି ତାଙ୍କର ବାପାଙ୍କର ବୋଲି କହିବାକୁ ଦେବବ୍ରତ ଭରସି ପାରୁ ନ ଥିଲେ ।

ଫଟୋଟିକୁ ହାତ ଯୋଡ଼ି ପ୍ରଣାମ କଲେ ଜି.ଏମ୍. । ସମବେତ ଅଫିସରମାନଙ୍କୁ ଚାହିଁ କହିଲେ, ଆପଣମାନେ ଜାଣିନାହାନ୍ତି ଏ ଫଟୋ ସହ ମୋର ସମ୍ପର୍କ କ'ଣ ? ସେ ମୋ ପାଇଁ ଗୁରୁ ନ ଥିଲେ – ମୋ ପିତା ଥିଲେ । ଆଜି ମୁଁ ଯେଉଁଠି ପହଞ୍ଚିଛି, ସବୁ ତାଙ୍କରି ଅବଦାନ ଯୋଗୁ । ତାଙ୍କ ଭଳି ଗୁରୁ ବିରଳ । ମାତ୍ର ମୁଁ ହେଉଛି ତାଙ୍କର ଅଭାଗା ଛାତ୍ର, ଯିଏ ଗୁରୁ ଚାହିଁଥିବା ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପରେ ଥରଟିଏ ସୌଭାଗ୍ୟ ପାଇଲା ନାହିଁ ତାଙ୍କୁ ସାକ୍ଷାତ କରିବା ପାଇଁ । ଆପଣମାନେ ଜାଣନ୍ତି ନାହିଁ ମୋ ବଂଶର

ଐତିହ୍ୟ । ମୁଁ ମାଧପୁରର ସନା ସେଠୀ ପୁଅ ବାଇଆ ସେଠୀ ଥିଲି । ସାର୍ ଥିଲେ ଆମ ଗାଆଁର ଶିକ୍ଷକ । ସେ ସବୁବେଳେ ପିନ୍ଧୁଥିଲେ ଧଳା ଫିନ୍ ଫିନ୍ ଧୋତି ଓ ପଞ୍ଜାବି । ମୋ ନଜରରେ ତାଙ୍କ ଧୋତି ଓ ପଞ୍ଜାବିରେ କେବେ ମଳିଆ ଦାଗ ପଡ଼ି ନ ଥିଲା । ତାଙ୍କର ପୋଷାକ ପରି ଥିଲା ତାଙ୍କର ଚରିତ୍ର ଓ ଶିକ୍ଷାଦାନ । ତାଙ୍କର ସବୁଦିନ ସଫା ପିନ୍ଧିବାର ଅଭ୍ୟାସ ପାଇଁ ମୋ ବାପା ଥିଲେ ତାଙ୍କର ନାଗୁଆ ଧୋବା । ଛୋଟ ବେଳେ ବାପାଙ୍କ ସାଥିରେ ବହୁବାର ଯାଉଥିଲି ସ୍କୁଲ ହତା ଭିତରେ ଥିବା ତାଙ୍କ କ୍ୱାର୍ଟରଟିକୁ, ସଫା କରା ଧୋତି ଓ ପଞ୍ଜାବି ଦେଇ ତାଙ୍କର ମଳିଆ ଧୋତି ଓ ପଞ୍ଜାବି ଆଣିବାକୁ । ବାପା ମୋତେ ସାଙ୍ଗରେ ଏଥିପାଇଁ ନେଉଥିଲେ ଯେ, ମୁଁ ଛୋଟ ବେଳୁ ତାଙ୍କ ବୃତ୍ତି ସହ ପରିଚିତ ହେଇଯାଏ: ମାତ୍ର ମୋର ଉଦ୍ଦେଶ୍ୟ ରହୁଥିଲା ମୁଁ ସ୍କୁଲ ହତା ଭିତରେ ବୁଲିବି, ଦେଖିବି ସେଠାରେ ଥିବା ନାନା ଜାତିର ଫୁଲଗଛ ଓ ଦେଖିବି କିପରି ପଢୁଛନ୍ତି ପିଲାମାନେ ।

ମୋର ଏପରି ବାରମ୍ବାର ଯିବା ଭିତରେ ସାର୍‌ଙ୍କ ସହ ମୋର ମୁହଁ ଚିହ୍ନା ହୋଇଯାଇଥାଏ । ବାପା ତାଙ୍କର ସଫା ଲୁଗା ଦେଇ ମଳିଆ ଲୁଗା ଆଣୁଥିବାବେଳେ ମୁଁ ଚୁପ୍ କରି ଖସିଯାଏ ପିଲାମାନେ ପଢୁଥିବା କୋଠରି ପାଖକୁ । ଦୁଆର ପାଖରେ କବାଟ ଉହାଡ଼ରେ ଠିଆ ହୋଇ ଦେଖେ ପିଲାମାନଙ୍କର ପାଠପଢ଼ା । ଭାରି ଇଚ୍ଛା ହୁଏ, ମୁଁ ବି ଏମିତି ପଢ଼ନ୍ତି କି ! ବାପା ଲୁଗା ଗଣ୍ଠିଲି ବାନ୍ଧି ସାରି ଡାକ ଛାଡ଼ନ୍ତି – ବାଇଆ, ଆରେ ବାଇଆ, କୁଆଡ଼େ ଗଲୁ କି, ଆ – ଆ, ବେଳ ଉଛୁର ହେଉଛି । ପିଲାମାନଙ୍କର ପାଠପଢ଼ା ଦେଖିବାର ତନ୍ମୟ ଭାବରେ ବାପାଙ୍କର ଡାକ ମୋ କାନରେ ପଡ଼େନା । ମୁଁ ଥରେ ଏମିତି ତନ୍ମୟ ହୋଇ ପିଲାମାନଙ୍କର ପାଠପଢ଼ା ଦେଖୁଥିବା ବେଳେ ସାର୍ କେତେବେଳେ ଆସି ମୋ ପଛରେ ଠିଆ ହୋଇ ମୋତେ ଲକ୍ଷ୍ୟ କରୁଥିଲେ ମୁଁ ଜାଣି ନଥିଲି । ମୋ ବାପା ଯେତେବେଳେ ଡାକି ଡାକି ଆସି ମୋ ବାହୁକୁ ଧରି ପକାଇଲେ ଭିଡ଼ି ନେବା ପାଇଁ, ସେତେବେଳେ ଯାଇଁ କଟିଲା ମୋର ତନ୍ମୟଭାବ । ଏକାବେଳକେ ବାପା ଓ ସାର୍‌ଙ୍କୁ ମୋ ସାମ୍ନାରେ ଦେଖି ମୁଁ ଭାବିଲି, ମାରିବି ତିଆଁଟେ । ବାପା ମୋ ହାତ ଧରି ଭିଡ଼ିବା ବେଳେ ସାର୍ ତାଙ୍କୁ ବାରଣ କରି ମୋତେ ପଚାରିଲେ – ତୁ ପାଠ ପଢ଼ିବୁ କି ?

ମୁଁ କିଛି ନ କହି ଚୁପ୍ ରହିଲି । ସାର୍ ମୋ ପାଖରୁ ପ୍ରଶ୍ନଟି ଉଠାଇ ନେଇ ବାପାଙ୍କୁ ପଚାରିଲେ – ସନାତନ, ଏହାକୁ ପଢ଼ାଉ ନାହୁଁ କାହିଁକି ?

ବାପା ତାଙ୍କର ଦୟନୀୟ ଭାବ ପ୍ରକାଶ କରି କହିଲେ – ପାଠ ପଢ଼ାର ଯେତେ ଖର୍ଚ୍ଚ ମୁଁ ଉଠାଇପାରିବି କେଉଁଠୁ ? ପାଠ ପଢ଼ି ବି କରିବ କ'ଣ ? କେଉଁ ହାକିମ କି ମାଷ୍ଟର ଫାଷ୍ଟର ହୋଇପାରିବ ? ପିଲାବେଳୁ ବେଉସାକୁ ଆଦରି ଥିଲେ ସିନା ପେଟ ପୋଷିପାରିବ ।

ନାରେ ସନା – ତୋ'ର ଏ ପୁଅର ଲକ୍ଷଣ କହୁଛି, ତା'ର ପାଠ ଅଛି ସେ ପାଠ ପଢ଼ିଲେ ବହୁତ ଉପରକୁ ଉଠିବ । ହଉ – ତୁ ତା' ଖର୍ଚ୍ଚ ଉଠାଇ ପାରିବୁନି ବୋଲି ଡରୁଛୁ ତ ? ସେ ଦାୟିତ୍ୱ ମୋର । ତା' ପରେ ମୋ ଆଡ଼େ ଚାହିଁ ସାର୍ କହିଲେ – କାଲିଠୁ ତୋ'ର ପାଠପଢ଼ା ଆରମ୍ଭ ହେବ । ବିଦ୍ୟାରମ୍ଭେ ଗୁରୁ ଶ୍ରେଷ୍ଠ । କାଲି ଗୁରୁବାରରେ ସ୍କୁଲରେ ତୋ ନାଆଁ ଲେଖାହେବ । କାଲିଠୁ ତୁ ସ୍କୁଲ ହଷ୍ଟେଲରେ ରହି ମୋ ପାଖରେ ପଢ଼ିବୁ । କ'ଣ ରାଜି ତ ?

ମୁଁ ବିଶ୍ୱାସ କରିପାରୁନଥିଲି ସେ କଥାକୁ । ହେଲେ ସତକୁ ସତ ତା' ପରଦିନ ମୋ ନାଆଁ ଲେଖା ହେଲା ସ୍କୁଲରେ । ସାର୍ ସ୍କୁଲ ରେଜିଷ୍ଟରରେ ମୋ ନାମ ଲେଖାଇବାକୁ ଯେତେବେଳେ ମୋ ଭଲ ନାଆଁ କ'ଣ ବୋଲି ବାପାଙ୍କୁ ପଚାରିଲେ, ମୋ ବାପା କହିଲେ ଆମର ଗୋଟେ ଡାକ ନାଆଁ ଓ ଭଲ ନାଆଁ କ'ଣ ? ତାକୁ ତ ଆମେ ବାଇଆ ବାଇଆ ଡାକୁଛୁ । ଲେଖି ଦିଅନ୍ତୁ, ବାଇଆ ସେଠୀ କିମ୍ବା ବାଇଧର ସେଠୀ ।

ସାର୍ କହିଲେ – ନା, ସେ ବାଇଆ କମ୍ବା ବାଇଧର ସେଠୀ ନୁହଁ, ସେ ଆଜିଠୁ ଏକଲବ୍ୟ ସେଠୀ । ବାସ୍, ସେବେଠୁ ମୁଁ ହୋଇଗଲି ଏକଲବ୍ୟ ଓ ସେ ମୋର ଗୁରୁ ଦ୍ରୋଣ । ସାର୍ ପଢ଼ାଉଥିବା ସ୍କୁଲରେ ସପ୍ତମ ଶ୍ରେଣୀ ଯାଏ ଥିଲା । ହାଇସ୍କୁଲ ଯାଇ ଥିଲା ଆମ ଗାଆଁଠାରୁ ପାଞ୍ଚ କିଲୋମିଟର ଦୂରରେ । ସାର୍‌ଙ୍କର ଭାରି ଭୟ ଥିଲା କାଳେ ହୁଏତ ସପ୍ତମ ଶ୍ରେଣୀ ପରେ ମୋ ପାଠପଢ଼ା ବନ୍ଦ ହୋଇଯିବ ଆମର ଅର୍ଥାଭାବ ଓ ତାଙ୍କର ଅସାମର୍ଥ୍ୟ ପାଇଁ । ତେଣୁ ସେ ଚାହୁଁଥିଲେ ମୁଁ ଯେପରି ସପ୍ତମ ଶ୍ରେଣୀରେ ବୃତ୍ତି ପାଏ ଏବଂ ଯେଉଁ ସରକାରୀ ସ୍କୁଲରେ ଛାତ୍ରର ସମସ୍ତ ଖର୍ଚ୍ଚ ବହନ କରି ପାଠ ପଢ଼ାଯାଉଛି, ସେଠାରେ ପଢ଼େ । ତେଣୁ ସେ ବାଜି ଲଗାଇ ଦେଇଥିଲେ ତାଙ୍କର ଶିକ୍ଷକତାର ସମସ୍ତ ଦକ୍ଷତାକୁ ମୋ ଉପରେ । ମୁଁ ମଧ୍ୟ ସାର୍‌ଙ୍କର ଆଶାକୁ ନିରାଶ କରିନଥିଲି । କେବଳ ସପ୍ତମ ଶ୍ରେଣୀରେ ବୃତ୍ତି ପାଇଲି ନୁହଁ, ଜାତୀୟ ମେଧା ବୃତ୍ତିରେ ସାରା ରାଜ୍ୟରେ ପ୍ରଥମ ହୋଇ ଆସିଥିଲି କଟକ ପଢ଼ିବା ପାଇଁ । ବାସ୍, ତା' ପରେ ମୁଁ ଆଉ ପଛକୁ ଚାହିଁନି ।

ମାଟ୍ରିକ ପରେ ବୃତ୍ତି ପାଇ କଲେଜ ଏବଂ ସେଠାରୁ ଆସି ଇଂଜିନିୟରିଂ ସରିବା ଯାଏ ସବୁଠି ବୃତ୍ତି ପାଇ ପଢ଼ି ପଢ଼ି ଆସି ଏ ଚାକିରିରେ ପହଞ୍ଚିଛି ।

- ଆପଣ ତା' ହେଲେ ସାର୍‌ଙ୍କର ଛାତ୍ର ଥିଲେ ?

- ଥିଲି କ'ଣ ? ଏବେ କ'ଣ ନାହିଁ କି ? ତାଙ୍କର ଆଦର୍ଶ ଓ ନୀତିକୁ ତ ମୁଁ ଆଜିଯାଏ ସମ୍ମାନ ଦେଇ ଆସିଛି । ସେ ତ ମୋ ପାଇଁ କେବଳ ଶିକ୍ଷକ ନଥିଲେ, ଥିଲେ ମୋର ନବଜନ୍ମର ଜନକ । ସେ ନଥିଲେ ମୁଁ ଆଜି ପଠିରେ ଲୁଗା ଗଣ୍ଠିଲି ବୋହି ତୁଠର ଗଣ୍ଡି ଉପରେ ଝାଳ ନିଗାଡୁଥାନ୍ତି ।

- ଆପଣଙ୍କର ସେହି ଶିକ୍ଷକ ମୋର ବାପା ସାର୍ ।

- ସେ ଆପଣଙ୍କର ବାପା ! ସାର୍ ଏବେ କେଉଁଠି ?

- ଏଇଠି ମୋ ପାଖରେ ରହୁଛନ୍ତି ।

- ମୋତେ ଟିକିଏ ତୁରନ୍ତ ତାଙ୍କ ସହ ସାକ୍ଷାତ କରାଇଦିଅନ୍ତୁ ।

- ଦ୍ୱନ୍ଦ୍ୱରେ ପଡ଼ିଗଲେ ଦେବବ୍ରତ । ଜି.ଏମ୍.ଙ୍କୁ ବାପା ରହୁଥିବା ଆଉଟ ହାଉସ୍‌କୁ ନେବେ ନା ବାପାଙ୍କୁ ଡାକି ଆଣିବେ ଏଠାକୁ ! ମାତ୍ର ଏଠି ପାର୍ଟି ପାଇଁ ଯାହା ସବୁ ଆୟୋଜନ ହୋଇଛି, ସେଥିରେ ବାପାଙ୍କୁ ଏଠାକୁ କିପରି ଡାକିବେ !

ଜି.ଏମ୍. କହିଲେ- ଚାଲନ୍ତୁ, ଚାଲନ୍ତୁ; ମୁଁ ଥରେ ସାର୍‌ଙ୍କର ଦର୍ଶନ କରେ, ତା'ପରେ ଯାଇ ଅନ୍ୟ କଥା ।

ଜି.ଏମ୍.ଙ୍କୁ ଧରି ଆଉଟ୍ ହାଉସ୍ ଆଡ଼କୁ ଗଲେ ଦେବବ୍ରତ । ଅନତିଦୂରରୁ ଥାଇ ଶୁଣିଲେ ଭାସି ଆସୁଥିବା ମନ୍ତ୍ରଧ୍ୱନି -

ଓଁ ଈଶାନୁଶାସନମ୍ ସ୍ୱୀକାରିଷ୍ୟାମି

ଓଁ ମର୍ଯ୍ୟାଦାଂ ଆଚରିଷ୍ୟାମି

ଓଁ ବର୍ଜ୍ୟଂ ନ ଆଚରିଷ୍ୟାମି

ଦେବବ୍ରତ ବାପାଙ୍କ ପାଖକୁ ଯାଇ ଧୀର ସ୍ୱରରେ କହିଲେ - ବାପା, ଆମ ଜି.ଏମ୍. ତମକୁ ଭେଟିବାକୁ ଆସିଛନ୍ତି ।

ମନ୍ତ୍ର ଉଚ୍ଚାରଣରୁ ସାମୟିକ ବିରତି ନେଇ ସେ ଆଖିକୁ ଅର୍ଦ୍ଧ ଉନ୍ମୀଳିତ କଲେ ।

ଜି.ଏମ୍. ତାଙ୍କ ଆସନ ପାଖରେ ଆଣ୍ଠେଇ ପଡ଼ି କହିଲେ - ସାର୍ ମୁଁ ଏକଲବ୍ୟ, ଏକଲବ୍ୟ ସେଠୀ । ଆପଣଙ୍କୁ ଭେଟିବାକୁ ଆସିଛି ।

ହଠାତ୍ ଆଖିକୁ ପୂର୍ଣ୍ଣ ଉନ୍ମୀଳିତ କରି ବିଶ୍ୱବାବୁ କହିଲେ – ଏକଲବ୍ୟ ! ତୁ ହଠାତ୍ ଏଠି କେମିତି ?

– ଆଜି ଦେବବ୍ରତବାବୁଙ୍କର ନିମନ୍ତ୍ରଣ ରକ୍ଷା କରି ଏଠାକୁ ଆସିଥିଲି । ସେଇଠୁ ଜାଣିଲି, ସେ ଆପଣଙ୍କର ପୁଅ ଓ ଆପଣ ଏଠାରେ ରହୁଛନ୍ତି ବୋଲି ।

ଓଃ ! କହି ଚୁପ୍ ଓ ଗମ୍ଭୀର ହୋଇଗଲେ ବିଶ୍ୱବାବୁ । ସୁଟ୍ ଟାଇ ପରିହିତ ଏକଲବ୍ୟ ଲମ୍ବ ହୋଇ ପଡ଼ିଗଲେ ପାଦତଳେ ।

ତାଙ୍କ ମୁଣ୍ଡକୁ ସ୍ନେହରେ ଆଉଁଶି ଦଉ ଦଉ ସେ ପଚାରିଲେ – ତୋ'ର ସବୁ ଭଲ ତ ?

– ଆପଣଙ୍କ ଆଶୀର୍ବାଦରୁ ସବୁ ଭଲ । ଆପଣଙ୍କ ଶିକ୍ଷା ଓ ଆଦର୍ଶକୁ ନେଇ ତ ମୁଁ ଆଜି ଆସି ଏଠି ପହଞ୍ଚିଛି । ମୋର ଭାଗ୍ୟ ଯେ ମୁଁ ଆଜି ଆପଣଙ୍କ ଦର୍ଶନ ପାଇଲି ।

– ହଁ – ତୋର ଏ ଦର୍ଶନ ନ ହୋଇଥିଲେ ଖୁବ୍ ଭଲ ହୋଇଥାଆନ୍ତା । ଏ ଦର୍ଶନର ସନ୍ଧିକ୍ଷଣରେ ତୁ ହୁଏତ ଗୁରୁଙ୍କର ଅନ୍ୟ ଏକ ରୂପ ଦେଖିପାରୁ, ଯାହା ଫଳରେ ତୋ' ଭିତରେ ସାଇତା ଗୁରୁମୂର୍ତ୍ତି ପ୍ରତି ତୋ'ର ମୋହଭଙ୍ଗ ଘଟିପାରେ । ଯେଉଁ ଗୁରୁ ଏକଲବ୍ୟ ପରି ଶିଷ୍ୟ ସୃଷ୍ଟି କରିପାରେ, ସେହି ଗୁରୁ ବି କୁରୁସଭାରେ ବସି ଦେଖିପାରେ ତାଙ୍କର ଆଉ ଦଳେ ଶିଷ୍ୟଙ୍କ ଦ୍ୱାରା ହେଉଥିବା ଦ୍ରୌପଦୀଙ୍କ ବସ୍ତ୍ରହରଣ, ତାହା ପୁଣି ବିନା ପ୍ରତିବାଦରେ । ଏକଥା ଦେଖିବା ପରେ ଗୁରୁଙ୍କ ପ୍ରତି ତୋ' ହୃଦୟ ଭିତରେ ଯେଉଁ ସମ୍ମାନବୋଧ ରହିଛି, ତାହା କ'ଣ ରହିପାରିବ ?

– ନା ସାର୍, ଆପଣଙ୍କର ଆଦର୍ଶର ଭବିତବ୍ୟ ଏଇଆ ନୁହଁ ।

– ସମୟ ବଦଳି ଯାଇଛି ଏକଲବ୍ୟ । ସମୟର ପରିବର୍ତ୍ତନ ସହ ଗୁରୁଙ୍କର ଶିକ୍ଷା ଓ ଦୀକ୍ଷାର ପରିବର୍ତ୍ତନ ହେବା ଆବଶ୍ୟକ ବୋଲି ମୁଁ ଆଜି ଉପଲବ୍ଧି କରିବାକୁ ବାଧ୍ୟ ହେଉଛି । ନଚେତ୍ ଘରକୁ ମନ୍ଦିର ମନେକରିବାକୁ ଶିକ୍ଷା ଦେଇଥିବା ଗୁରୁଙ୍କୁ ଘରର ଅଗଣାରେ ମଦିରାର ମହୋତ୍ସବ ଦେଖିବାକୁ ଈଶ୍ୱର କାହିଁକି ଆୟୁଷ ଦେଇଥାଆନ୍ତେ ?

ଏକଲବ୍ୟ ଚାହିଁଲେ ଦେବବ୍ରତଙ୍କ ଆଡ଼େ । ତାଙ୍କ ଚାହାଣି ହିଁ ଯଥେଷ୍ଟ ଥିଲା ସେ କ'ଣ ଚାହୁଁଛନ୍ତି ବୁଝାଇଦେବାକୁ ।

ହଠାତ୍ ବନ୍ଦ ହୋଇଗଲା ଷ୍ଟେରିଓର ମୃଦୁ ସଙ୍ଗୀତ ଓ ଆସର ଜମିବାର ଚଳଚଞ୍ଚଳତା । ନିଷ୍ପ୍ରଭ ହୋଇଗଲା ଆଲୋକର ହିଲ୍ଲୋଳ । କେହି କାହାରିକୁ କିଛି ନ

କହିଲେ ମଧ୍ୟ ଶୃଙ୍ଖଳିତ ହୋଇଗଲା ପରିବେଶ । ଉଭେଇ ଯାଇଥିଲା ମୁହଁ ଖୋଲା ଯିବାକୁ ଉଦ୍ୟତ ହୋଇ ରହିଥିବା ବିଦେଶୀ ପାନୀୟ ବୋତଲ ଓ ପିଆଲା । ଚାରିଆଡ଼େ ବ୍ୟାପିଗଲା ଗୋଟେ ଥମ୍ ଥମ୍ ନିରବତା ଓ ମନ୍ଦିରର ପବିତ୍ରତା ।

– ସାର୍, ମୁଁ ଆପଣଙ୍କ ପାଖରେ ପହଞ୍ଚିବା ପୂର୍ବରୁ ଆପଣ ମନ୍ତ୍ର ଜପ କରୁଥିଲେ । ଆପଣ ତ ଆମକୁ ଶିକ୍ଷା ଦେଇଥିଲେ, ଶବ୍ଦ ହେଉଛି ବ୍ରହ୍ମ ଓ ଏହାର ଶକ୍ତି ଅସୀମ । ଆପଣ ଜପ କରୁଥିବା ମନ୍ତ୍ରର ପ୍ରଭାବ ଉପରେ ତ ଆପଣ ଆସ୍ଥାବାନ୍ ହେବା କଥା ! ଜଣେ ସଦ୍‌ଗୁରୁଙ୍କର ସଦିଚ୍ଛାର ଜପ କ'ଣ କେବେ ନିଷ୍ଫଳ ହୋଇପାରେ ? ଆପଣ ଆସନ୍ତୁ ମୋ ସହିତ ଦେଖିବେ, କିଛି ବି ଅଘଟଣ ଘଟିନି ଆପଣଙ୍କ ଦେବାଳୟରେ ।

ସାର୍ ଆଉଟ୍ ହାଉସ୍‌ରୁ ବାହାରକୁ ଆସିଲେ । ବାହାରେ କ୍ୟାସେଟ୍‌ରେ ଖୁବ୍ ମୃଦୁ ସ୍ୱରରେ ବାଜୁଥିଲା –

ଓଁ ଭୂର୍ଭୁବଃ ସ୍ୱଃ ତତ୍ସବିତୁର୍ବରେଣ୍ୟଂ
ଭର୍ଗୋଦେବସ୍ୟ ଧୀମହି
ଧିୟୋୟୋନଃ ପ୍ରଚୋଦୟାତ୍

ଗୋଟିଏ ପବିତ୍ର ପୁଲକରେ ଉଲ୍ଲସିତ ହୋଇଯାଇ ସାର୍ ପଚାରିଲେ – ଆପଣମାନେ ଏଯାଏ ଖାଇ ନାହାନ୍ତି ?

– ନା କେହି ଖାଇ ନାହାନ୍ତି; ସମସ୍ତେ ଅପେକ୍ଷା କରିଥିଲେ ଆପଣଙ୍କର ଆସିବାକୁ ।

ପାର୍ଟି ରୂପାନ୍ତରିତ ହୋଇଗଲା ଭୋଜିରେ । ସମସ୍ତେ ଖାଇପିଇ ଯାଇସାରିବା ପରେ ବାହାରିଲେ ଜି.ଏମ୍. । ଗଲାବେଳେ ସାର୍‌ଙ୍କର ପାଦ ଧରି କହିଲେ – ମୋର ସୌଭାଗ୍ୟ ଥିଲା, ଆପଣଙ୍କ ଦର୍ଶନ ମିଳିଲା । ଯଦି କେବେ ସୁଯୋଗ ଦିଅନ୍ତି, ତେବେ କିଛି ସେବା କରି ଗୁରୁ ଋଣ ପରିଶୋଧ କରିପାରନ୍ତି ।

ମୁଁ ଗୁରୁ ଦ୍ରୋଣାଚାର୍ଯ୍ୟନୁହେଁ, ମାଟିର ଦ୍ରୋଣ । ଆଜି ତୋ'ର ଉପସ୍ଥିତିରେ ଯେପରି ରକ୍ଷା ହୋଇଗଲା ମୋର ଏତେ ଦିନର ସଂସ୍କାର, ତାହା କ'ଣ ଛୋଟିଆ ଗୁରୁ ଦକ୍ଷିଣା ? ଇଏ ତ ମୋତେ ଲାଗିଲା, ଦ୍ରୌପଦୀଙ୍କ ଶାଢ଼ୀର ଧଡ଼ି ଦାନ ବଦଳରେ ଶ୍ରୀକୃଷ୍ଣଙ୍କର ସହସ୍ର ବସ୍ତ୍ରଦାନ ପରି ! ଏହାଠାରୁ ଆଉ ଅଧିକ କ'ଣ ମାଗିବି ? କେବଳ ଆଶୀର୍ବାଦ କରୁଛି – ସୌଭାଗ୍ୟବାନ ଭବ ।

ଏକଲବ୍ୟ ପୁଣି ଥରେ ଗୁରୁଙ୍କ ପାଦତଳେ ଆଭୂମ ପ୍ରଣିପାତ କଲେ ।

ଜି.ଏମ୍. ଚାଲିଯିବା ପରେ ବାପାଙ୍କ ଗୋଡ଼ ପାଖରେ ବସିଯାଇ କଇଁ କଇଁ ହୋଇ କାନ୍ଦି ଉଠି ଦେବବ୍ରତ କହିଲେ - "ମୋତେ କ୍ଷମା କରିଦିଅ ବାପା, ମୋତେ କ୍ଷମା କରିଦିଅ ।"

ପୁଅ ମୁଣ୍ଡକୁ ସ୍ନେହରେ ସାଉଁଳେଇ ଦେଇ ସେ କହିଲେ - ଛି, ପାଗଳାଟା । ରାତି ଢେର ହେଲାଣି, ଯାଆ, ଶୋଇବୁ ଯାଆ ।



# ଇଚ୍ଛାପତ୍ର

ବାରମ୍ବାର ମୃତ୍ୟୁକୁ ଦଗା ଦେଇ ପୁଣି ସ୍ୱାଭାବିକ ଜୀବନ ପ୍ରକ୍ରିୟାକୁ ଫେରି ଆସିଥିବା ବାପା ଯେ ଏମିତି ଚାଲିଯିବେ, ସେ କଥାକୁ ମୁଁ ବା କାହିଁକି ଭାବି ପାରିଥାଆନ୍ତି ।

ମାତ୍ର ଦୁଇଦିନ ତଳେ ବଡ଼ ଭଉଣୀ ଟେଲିଫୋନ୍ କରିଥିଲା – କହିଲା ଗାଆଁକୁ ଯାଇଥିଲି, ବାପା ଭଲ ଅଛନ୍ତି । କେବଳ ଆସିଲା ବେଳେ କହିଲେ ତୋତେ ଟିକେ ଖବର ଦେବାକୁ ଯେ ତୁ ଗଲେ ତୋ’ ସହ କ’ଣ କିଛି କଥା ଅଛି ।

କ’ଣ ଯେ ଅଛି ? କି କଥା ହେବେ ବାପା ଆଉ ମୋ ସହ ?

ବୁଢ଼ା ଲୋକ,ମନ କ’ଣ ଚାହୁଁଥିବ କହିବାକୁ, ତୁ ତୋର ସୁବିଧା ଦେଖି ଆସିବୁ । ସେ କହି ନାହାନ୍ତି ଯେ ତୁ ଖବର ପାଇଲା କ୍ଷଣି ଧାଇଁ ଯିବାକୁ ।

ହଉ – ମୁଁ ମୋ ସୁବିଧା ଦେଖି ଯିବି, କହିସାରି ରଖିଦେଲି ଟେଲିଫୋନ୍ ।

ମୋର ଘରକୁ ଯିବା ପାଇଁ କେବେ ସୁବିଧା ହେଉନଥିଲା । କର୍ମ ଜଂଜାଳ ଭିତରେ ମୁଁ ମୁକ୍ତ ସମୟଟିକେ ପାଉନଥିଲି ଯେ ଛୁଟି ନେଇ ଯାଇ ଘରେ ବୁଲି ଆସିବାକୁ । ଏ କଥା ବି ନୁହଁ ଯେ ମୁଁ ଚାହିଁଥିଲେ ଯାଇ ପାରିନଥାନ୍ତି । ଯିବା ତ ଯିବା, ହେଇ ତ ଏବେ ଆସିଛି, ଯାଇ କରି ବା ମୁଁ କ’ଣ କରି ପକାଇବି ଯେ, କିଛି ଦିନ ଯାହା ମାନସିକ ଯନ୍ତ୍ରଣା କେବଳ ପାଇବି । ନା କିଛି ସେଠାରେ କରି ହେବ ବାପାଙ୍କ ପାଇଁ ନା ତାଙ୍କୁ ଏଠାକୁ ଆଣିହେବ ? ଆଣି ହୁଅନ୍ତା ନି କାହିଁକି,ଆଣି ହୁଅନ୍ତା, ହେଲେ ବାପା ତ ଏକବାର ନାରାଜ ଘରଛାଡ଼ି କେଉଁଠି ଆସି ରହିବା ପାଇଁ । ଗାଆଁରେ ସକଳ ଅସୁବିଧା ସତ୍ତ୍ୱେ ସେ ସେଠାରେ ରହିବାକୁ ପସନ୍ଦ କରନ୍ତି ଅଥଚ ସବୁ ସ୍ୱାଚ୍ଛନ୍ଦ ଯୋଗାଇ ଦେବାର ପ୍ରତିଶ୍ରୁତି ଓ ସମ୍ବଳ ସତ୍ତ୍ୱେ ସେ ରାଜି ହୁଅନ୍ତିନି ଆମ ପାଖରେ ଆସି ରହିବାକୁ । ସବୁବେଳେ କୁହନ୍ତି, ମୋର ଶତାୟୁ ହେବାର ଯୋଗ ଅଛି, ସିଂହ ରାଶିରେ ଏଇନେ ଟିକିଏ ଖରାପ ଯୋଗ ଅଛି । ଗ୍ରହ ଚଳନର ବେଳା ସରି ସରି ଆସିଲାଣି । ଆଉ ଅଳ୍ପ ଦିନ ପରେ ଦେହ ଭଲ ହୋଇଯିବ । ଦେହ ଭଲ ହେବା ପରେ ତୋ ପାଖକୁ ଯିବି ।

ପର ଜାଗା, ପରଦେଶରେ କ'ଣ ଯାଇ ଏମିତି ଘୋଷାରୀ ଗୋଷାରୀ ହୋଇ ରହିହେବ ?

ବାପାଙ୍କର ଶତାୟୁ ହେବାର ଆକାଂକ୍ଷା ମୃତ୍ୟୁକୁ ଭୟ କରି ନୁହେଁ ଜୀବନକୁ ଅତି ମାତ୍ରାରେ ଭଲ ପାଉଥିବାରୁ ଥିଲା । ତାଙ୍କର ଜୀବନକୁ ଏମିତି ଭଲ ପାଇବା ପଛରେ ପ୍ରଚଣ୍ଡ ସୁଖ ଓ ସ୍ୱାଚ୍ଛନ୍ଦ୍ୟ ଛାଡ଼ିଯିବାର ମୋହ ନ ଥିଲା, ଥିଲା ନିଜ ବଂଶ ବୃକ୍ଷର ସଫଳତା ଦେଖିବାର ଦୁର୍ବାର ପିପାସା । ଅତି ଭାବ ପ୍ରବଣ ହୋଇ କୁହନ୍ତି - ଜୀବନରେ ଏତେ ସଂଘର୍ଷ କରିଛି, ଦେଖିବିନା ନାତିମାନେ ମୋର କେଉଁ ସୋପାନକୁ ଯାଉଛନ୍ତି ? ସେ ସବୁ ନ ଦେଖିଲା ଯାଏ ଯମକୁ ବି ମୁଁ ମନା କରିଦେବି ମୋତେ ସ୍ପର୍ଶ କରିବାକୁ ।

ଆମେ ଜାଣୁଥିଲୁ ବାପାଙ୍କର ବଂଚି ରହିବାର ଇଚ୍ଛା ଶକ୍ତି ହୁଏତ ତାଙ୍କୁ ଆଉ କିଛି ବର୍ଷ ଟାଣି ନେଇପାରେ, ହେଲେ ଶତାୟୁ ହେବା ପର୍ଯ୍ୟନ୍ତ ନୁହେଁ । ସେ ବଂଚି ରୁହନ୍ତୁ । ହେଲେ କର୍ମ ଚଂଚଳ ହୋଇ ଏହାହିଁ କେବଳ ଥିଲା ଆମମାନଙ୍କର ଇଚ୍ଛା । ଏମିତି ଯଦି ବିଛଣାରେ ପଡ଼ି ରହିବେ ହୁଏତ ଜୀବନ ତାଙ୍କ ପାଇଁ ଦୁର୍ବିସହ ହୋଇ ନପାରେ ମାତ୍ର ତାଙ୍କର ବଂଚିରହିବାଟା ଆମ ପାଇଁ ନିଶ୍ଚିତ ଦୁର୍ବିସହ ହୋଇପଡିବ ।

ଗତଥର ବାପାଙ୍କ ଦେହ ଖରାପ ବେଳକୁ ଯାଇଥିଲି ଗାଆଁକୁ । ଜ୍ୱର ଜନିତ ଦୁର୍ବଳତା ପାଇଁ ସେ ଉଠିପାରୁନଥିଲେ ବିଛଣାରୁ । ମୁଁ ଘରେ ପହଞ୍ଚିବା ବେଳକୁ ଅବଶ୍ୟ ତାଙ୍କର ଆଉ ଜ୍ୱର ନଥିଲା, କିନ୍ତୁ ଦୁର୍ବଳତା ଥିଲା ଏବଂ ସେଥିସହ ବାରମ୍ବାର ଝାଡ଼ା ଯିବାକୁ ପଡୁଥିଲା । ଝାଡ଼ାଟା ସେ ଜ୍ୱର ସମୟରେ ଖାଇଥିବା ଆଣ୍ଟିବାୟୋଟିକ୍‌ର ପ୍ରଭାବ ବୋଲି ଆମେ ଜାଣୁଥିଲୁ । ଜ୍ୱର ହେବା କିମ୍ବା ଝାଡ଼ା ହେବା ବାର୍ଦ୍ଧକ୍ୟର ପ୍ରଭାବ ନୁହେଁ, ଏହା ଯେ କୌଣସି ଭଲ ବ୍ୟକ୍ତିକୁ ମଧ୍ୟ ହୋଇପାରେ । ମାତ୍ର ଆମକୁ ସବୁଠୁ ଆଶ୍ଚର୍ଯ୍ୟ କରୁଥିଲା ତାଙ୍କର ସ୍ମୃତି ବିଭ୍ରମ ରୋଗ । ଆମେ ସମସ୍ତେ ପିଲା ବେଳୁ ଜାଣିଥିଲୁ ତାଙ୍କର ଧୀଶକ୍ତି ସହ ସ୍ମରଣ ଶକ୍ତି ମଧ୍ୟ ପ୍ରବଳ । ବିଶ୍ୱର ସମସ୍ତ ରାଷ୍ଟ୍ରର ଇତିହାସ, ଭୂଗୋଳଏବଂ ରାଜନୀତିର ଘଟଣାବଳୀ ତାଙ୍କ ମୁହେଁ ମୁହେଁ ଥିଲା । ଆମମାନଙ୍କର କେତେବେଳେ ଯଦି କୌଣସି କଥାରେ ସଂଶୟ କିମ୍ବା ଯୁକ୍ତି ହେଉଥିଲା ତେବେ ତା'ର ସମାଧାନ ପାଇଁ ବାପାଙ୍କୁ ପଚାରି ବୁଝିବାର ନିଷ୍ପତ୍ତି ନେଉଥିଲୁ । ବାପା ଯେ କେବଳ ତାକୁ କହି ଦେଉଥିଲେ ତାହା ନୁହେଁ, ସେ ପ୍ରଶ୍ନ ସହ ଜଡିତ ଏମିତି ବହୁ ତଥ୍ୟ ଦେଉଥିଲେ ଯେ ଯାହାକୁ ଆମେ କେବେ କୌଣସି ବହିରୁ ମଧ୍ୟ ପାଇ

ପାରିନଥାନ୍ତୁ । ଏମିତି ଅସାଧାରଣ ସ୍ମୃତି ଶକ୍ତିର ଅଧିକାରୀ ବାପାଙ୍କର ଯେ ସ୍ମୃତି ବିଭ୍ରମ ହେଉଛି ତାହାହିଁ ଆମକୁ ଆଶ୍ଚର୍ଯ୍ୟ କରୁଥିଲା । ସ୍ମୃତି ବିଭ୍ରମ କହିବାଟା ବୋଧହୁଏ ସମ୍ପୂର୍ଣ୍ଣ ଠିକ୍ ନୁହଁ, କାରଣ ତାଙ୍କର ସ୍ମୃତି ବିଭ୍ରମ ସହ ବେଳେବେଳେ ପ୍ରଖର ସ୍ମରଣ ଶକ୍ତି ମଧ୍ୟ ଆସି ଯାଉଥିଲା । ସେ ସ୍ମରଣଶକ୍ତି ମୁହୂର୍ତ୍ତରେ ସେ ଗୀତା, ଉପନିଷଦ ସହ ଗୀତାଞ୍ଜଳି, ନଜରୁଲଙ୍କ କବିତା, ରାଧାନାଥ, ଦୀନକୃଷ୍ଣ, ଭଞ୍ଜ, ମେହେର ଇତ୍ୟାଦିଙ୍କ କବିତାକୁ ଏମିତି ବାଖ୍ୟା କରୁଥିଲେ ଯେ ଆମେ ଆଶ୍ଚର୍ଯ୍ୟ ହେଉଥିଲୁ ସେ ଏତେ କଥା କେମିତି ମନେ ରଖିପାରିଛନ୍ତି ବୋଲି । ଟ୍ୟୁନିଂ ଠିକ୍ ନଥିବା ରେଡିଓରେ ଯେପରି ବିଭିନ୍ନ କେନ୍ଦ୍ରର କାର୍ଯ୍ୟକ୍ରମ ଓଭରଲ୍ୟାପିଂ ହୋଇ ଲାଗିଯାଏ ଠିକ୍ ସେମିତି ଥିଲା ତାଙ୍କର ପ୍ରଳାପ । ହଠାତ୍ ସ୍ମୃତି ପ୍ରଖର ରାଜ୍ୟରୁ ସେ ଚାଲିଯିବେ ସ୍ମୃତି ବିସ୍ମୃତ ରାଜ୍ୟକୁ । ହଠାତ୍ ପ୍ରଶ୍ନଟିଏ ପଚାରିବେ – ଏବେ ମୁଁ କେଉଁଠି ଅଛି ?

ଆମ ଘରେ ଅଛନ୍ତି ।

ଆମ ଘରମାନେ କାହା ଘର ?

ଆମ ଘର ପରା – କାହା ଘର କ'ଣ ?

ଆମ ଘର କ'ଣ ଝାଡ଼ଖଣ୍ଡରେ ?

ଆମେ ତାଙ୍କୁ ବିସ୍ମୟ ହୋଇ ଚାହିଁବା ବେଳେ ସେ କହିବେ – ହଁ ମୁଁ ସେଇଆ ଭାବୁଛି, ଏଇଟା ଝାଡ଼ଖଣ୍ଡ ନିଶ୍ଚୟ, ଏଠି ବହୁତ ଖଣି ଖାଦାନ୍ ନା ? ଶୁଣୁନା – ଶୁଣ, କେମିତି ବ୍ଲାଷ୍ଟିଂ ହେବାର ଶବ୍ଦ । ଓହୋ – ଏ ଶବ୍ଦରେ ମୁଁ କାଲି ରାତି ସାରା ଶୋଇପାରିନି । ଏ ଖଣିଖାଦାନ୍ ସବୁ ତାଙ୍କ ଅର୍ଥନୀତି ସହ ଜଡ଼ିତ, କିଏ ଚାହିଁଲେ ବା ନ ଶୋଇ ପାରିଲେ କ'ଣ ସେମାନେ ବନ୍ଦ କରିପାରିବେ ? ଏଠୁ ଘର ବଦଳାଇ ଦେଲେ ହୁଅନ୍ତାନି ? ତୁ ପରା କହୁଥିଲୁ ହରିଦ୍ୱାର ତୋତେ ଖୁବ୍ ଶାନ୍ତି ଦେଇଥିଲା ବୋଲି, ସେଠାରେ ଗୋଟେ ଘର ନେଉନୁ ଚାଲିଯିବା ।

ଭାଇ ବାପାଙ୍କର ଏମିତି କଥାବାର୍ତ୍ତା ଶୁଣି କହିବେ – ବାପାଙ୍କର ଆଉ ଜଗତ ସହ କନେକ୍ସନ୍ ହୋଇଗଲା ।

ମୋ ବଡ଼ ଭଉଣୀ ଆଉ ଟିକିଏ ଦାର୍ଶନିକ ହୋଇ କହୁଥିଲା – ଦୀପ ଲିଭିବା ବେଳେ ଯେପରି ଖୁବ୍ ପ୍ରଖର ହୋଇ ଜଳେ, ବାପାଙ୍କର ସ୍ମୃତି ପ୍ରଖରତା ଏବଂ ସ୍ମୃତି ବିଭ୍ରମ ଦୀପ ଲିଭିବାର ସୂଚନାଦେଉଛି ।

ମୁଁ ସବୁ ଶୁଣି ଗମ୍ଭୀର ରହି ଭାବୁଥିଲି, – ବାପାଙ୍କର ବିହ୍ୱୋଳ ସ୍ମରଣୀୟ ମୁହୂର୍ତ୍ତରେ ତାଙ୍କଠାରୁ କିଛି ଗୋପନୀୟ ସତ୍ୟକୁ ହାସଲ କରାଯାଇପାରେ । ତେଣୁ ସେ ଯେତେବେଳେ ଏପଟ ସେପଟ ଗପିବା ଆରମ୍ଭ କରନ୍ତି ମୁଁ ପଚାରେ – ବାପା ତମ ସ୍ମୃତିରେ ବୋଉର କଥା ମନେ ପଡୁଛି ?

ସେ କିଛି ସମୟ ଗୁମ୍ ରହି କୁହନ୍ତି – ତିରିଶବର୍ଷ ଖୁବ୍ ଦୀର୍ଘ ସମୟ । ସେ ହୁଏତ କେଉଁଠି ଜନ୍ମ ନେଇ ସାରିଥିବ ବୋଲି ମୁଁ ଭାବୁଥିଲି କିନ୍ତୁ ମୋ ଭାବନାଟା ଭୁଲ ଥିଲା ।

କ'ଣ ଏଯାଏଁ ଜନ୍ମ ନେଇନି ବୋଉ ?

ନା –

ତମେ କେମିତି ଜାଣିଲ ?

କେମିତି ଜାଣିବି କ'ଣ, କାଲି ରାତିରେ ପରା ଆସିଥିଲା । ପରଲୋକ ପରି ଦୂରରୁ ଥାଇ ପଚାରିଲା – କ'ଣ ବେଶି କଷ୍ଟ ହେଉଛି ? ମୁଁ ଭାବୁଥିଲି ଏ ପ୍ରଶ୍ନରେ ରାଗିବି ବୋଲି, ହେଲେ ରାଗି ପାରିଲି ନାହିଁ ।

କାହିଁକି ରାଗି ପାରିଲ ନାହିଁ ?

ବଂଚିଥିବା ବେଳେ ମୁଁ ତାକୁ ସୁଖ ଦେଇ ପାରିନଥିଲି, ସବୁବେଳେ ଦୂରଦୂର – ମାର୍ ମାର୍ କରୁଥିଲି, ଏବେ ମଲା ପରେ, ପୁଣି ମରିବାର ତିରିଶ ବର୍ଷ ପରେ ତାକୁ କାହିଁକି କଷ୍ଟ ଦେବି ଭାବିଲି । ମୁଁ ଭାବୁଛି ତାର ବୋଧେ ସେ ଜଗତରେ ରହଣୀର ମିଆଦ ସରି ସରି ଆସିଲାଣି, ଏବେ ପୁର୍ନଜନ୍ମ ନେଇପାରେ ।

କେମିତି ଜାଣିଲ ତମେ ?

ଏଇଟା ଅତି ସାଧାରଣ କଥା – ମୁଁ ଯେତେ କ୍ରୋଧୀ ବା ବଦ୍‌ରାଗୀ ହେଲେ ବି ତା'ର ସ୍ୱାମୀ ନା ।, ସେ ମୋ ଦେହମୁଣ୍ଡରେ ହାତ ବୁଲାଇବା ଦୂରର କଥା ପାଞ୍ଚ ହାତ ଦୂରରେ ଥାଇ କଥା ହେଉଥିଲା । ଭାବୁଥିଲି ରାଗିକି ପଚାରିବି – ମୋ କଷ୍ଟ ଲାଘବ ପାଇଁ ଆସିଥିଲୁ ନା ମୁଁ କେମିତି କଷ୍ଟ ପାଉଛି ଦେଖି କରି ଖୁସି ହେବାକୁ ଆସିଥିଲୁ ? ପୁଣି ଭାବିଲି – ନା ଥାଉ, ଆଉ ଏବେ କେଉଁ ଅଧିକାରରେ ପଚାରିବି ?

ଆଚ୍ଛା ଆମ ବୋଉ କଥା ଛାଡ଼ –ତମ ବାପା କିମ୍ବା ବୋଉ କ'ଣ ଆସୁଛନ୍ତି ?

ହଁ – ଆସୁଛନ୍ତି, ଶ୍ରଦ୍ଧାରେ ନୁହଁ ଦୟାରେ । ବାପାଙ୍କରତ ମୁଁ ଥିଲି ବିଦ୍ରୋହୀ ପୁତ୍ର ଏବଂ ବୋଉର ମୋ ପ୍ରତି ଥିଲା ଭୀଷଣ ଭୟ । ତେଣୁ ସେମାନେ ଆସିଥିଲେ

ମଧ୍ୟ ପରଲୋକ ପରି ମୋତେ ଦେଖିଲେ ଓ ଚାଲିଗଲେ । ବୋଉ କେବଳ ଗଲାବେଳକୁ ମୋ ମୁଣ୍ଡକୁ ଟିକେ ସାଉଁଳେଇ ଦେଇ କହିଲା - ଧୈର୍ଯ୍ୟ ଧରି, ଏ କଷ୍ଟ ଅବଶ୍ୟ ଭୋଗିବାକୁ ପଡ଼ିବ ।

ଏମିତି ବାପା ଗପୁଥିଲେ ଓ ଆମେ ସମସ୍ତେ ଶୁଣୁଥିଲୁ । ବାପାଙ୍କର ଏମିତି ଗପିବା ଭିତରେ ସମସ୍ତେ ଯେଝା ଯେଝା କାମରେ ଚାଲିଗଲେ, ରହିଗଲି ମୁଁ ଏକା । ନିରୋଳା ମୁହୂର୍ତ୍ତରେ ବାପାଙ୍କଠାରୁ କିଛି ଗୋପନୀୟ ସତ୍ୟ ହାସଲ ପାଇଁ ମୁଁ ପଚାରିଲି - ସମସ୍ତେ କହୁଛନ୍ତି ତମେ ଢେର ଟଙ୍କା ପଇସା, ସୁନା ରୂପା ରଖିଛ ବୋଲି, ତାକୁ କେଉଁଠି ରଖିଛ ନା କାହାକୁ ଦେଇ ଦେଲଣି ?

ମୋର ଏ ପ୍ରଶ୍ନଟିରେ ବାପା ପ୍ରକୃତିସ୍ଥ ହୋଇ ପଡ଼ିଲେ । ଅନ୍ୟ ଜଗତରେ ଲାଗିଥିବା କନେକ୍‌ସନ ତାଙ୍କର କଟିଗଲା । ସେ କିଛି ସମୟ ମୋ ମୁହଁକୁ ସ୍ଥିର ହୋଇ ଚାହିଁବା ପରେ କହିଲେ ଏ ପ୍ରଶ୍ନ ତୁ କାହିଁକି ପଚାରିଲୁ ?

ତମର ଧନକୁ ଲୋଭ କରି ମୁଁ ଏ ପ୍ରଶ୍ନ ପଚାରୁନାହିଁ, କେବଳ ମୁଁ ଜାଣିଥାଆନ୍ତି । ଲୋକେ କହୁଛନ୍ତି ତମର ଏତେ ବଡ଼ ବେପାର ସାଙ୍ଗକୁ ମହାଜନୀ ଥିଲା । ବହୁତ ରଖିଛ ବୋଲି ।

ଲୋକଙ୍କର ଭାବିବାଟା ଅପ୍ରାସଙ୍ଗିକ ନୁହେଁ କିମ୍ବା ଭୁଲ ମଧ୍ୟ ନୁହେଁ । ତେବେ ତୋ'ର ଏ ପ୍ରଶ୍ନ ମୋତେ ଗୋଟିଏ ସନ୍ଦେହରେ ପକାଉଛି, ତୁ ବୋଧହୁଏ ଭାବିଲୁଣି ଯେ ମୋର ଶେଷ ସମୟ ଆସିଗଲାଣି । ତେଣୁ ସବୁ ତଥ୍ୟ ହାସଲ କରିନେବୁ । ମୋର ଶତାୟୁ ହେବାର ଅଛି । ମୁଁ ଜାଣିପାରିବି ଠିକଣା ବେଳ । ସେତେବେଳେ ମୁଁ ଖୋଲିବି ମୋ ସଂଚୟ ଗୁମର, ଏବେ ନୁହଁ । ହେଲେ ଏହା ସତ୍ୟ ଯେ ସେଥିରୁ କିଛି ବରବାଦ୍ ହୋଇଗଲା, ଅପାତ୍ରରେ ପଡ଼ିଗଲା । ମୁଁ କ'ଣ ଜାଣିଥିଲି ମଣିଷର ସ୍ୱରୂପ ଏପରି ବଦଳି ଯିବ ବୋଲି, ତାହା ପୁଣି ନିଜର ପିତା ପ୍ରତି । ଈଶ୍ୱର ତାକୁ ସଦ୍‌ବୁଦ୍ଧି ଦେବେ, ସେ ଭୁଲ୍ ବୁଝିବ ନିଶ୍ଚୟ ।

ତମର ଭୟ ହେଉଛି କି ବାପା, ମୁଁ ଏବେଠାରୁ ଜାଣିଗଲେ ତମର ସଂଚିତ ଧନର ପରିମାଣ, ଲୋଭ କରି କିଛି ମାଗିବି ବୋଲି ?

ନା, ସେ ଭୟ ମୋର ନାହିଁ ଏବଂ ସେ ଧନର ଆବଶ୍ୟକତା ମଧ୍ୟ ତୋର ନାହିଁ । ଠିକଣା ସମୟରେ ତୁ ଜାଣିବୁ । ସେ କଥା ଜାଣିବା ପାଇଁ ତୁ ଆଗ୍ରହ ପ୍ରକାଶ କଲୁ ଭଲ କଥା ମାତ୍ର ତା' ପାଇଁ ଉତ୍‌କଣ୍ଠିତ ହେବୁ ନାହିଁ ।

ମୋତେ ବି ତମେ ସେହି ଅପାତ୍ର ପର୍ଯ୍ୟାୟରେ ରଖିଛ ତେବେ ?

ଏଠି ପାତ୍ର - ଅପାତ୍ରର କଥା ଉଠୁନି । କଥା ରହିଛି ଆବଶ୍ୟକତାର । ମେଘ ବର୍ଷିବା ବେଳେ ସବୁଠି ବର୍ଷେ, ସମୁଦ୍ରରେ, ପାହାଡ଼ରେ, କ୍ଷେତରେ ନଦୀ, ନାଳ, ନର୍ଦ୍ଦମାରେ । ସମୁଦ୍ରର ବକ୍ଷ ବର୍ଷା ପାଣିରେ ସ୍ଫୀତ ହୁଏନି କି ନର୍ଦ୍ଦମା ପାଇଁ ବର୍ଷାର କୌଣସି ଆବଶ୍ୟକତା ନଥାଏ । ହେଲେ ମେଘ କ'ଣ ବର୍ଷିବାର ଧର୍ମ ଭୁଲି ସେମାନଙ୍କୁ ବାଦ ଦେଇଦିଏ ? ତେଣୁ ଏଠାରେ ପାତ୍ର - ଅପାତ୍ରର କଥା ନାହିଁ । କଥା ରହିଛି ସମୟର । ସେ ସମୟ ଆସିଲେ ତୁ ବଳେ ଜାଣିବୁ ଏବଂ ଆଶା କରୁଛି ତୋ' ପ୍ରାପ୍ୟ ବି ତୁ ପାଇବୁ ।

ହେଲେ ତମେ ଯାହା ରଖିଛ ତାହା ତ ସ୍ଥାବର ନୁହେଁ, ଅବସ୍ଥାବର ସମ୍ପତ୍ତିରେ ମୂଷା ଲାଗିବାର ଭୟ ଅଧିକ ।

ନା - ମୋ ଅସ୍ଥାବର ସମ୍ପତ୍ତିରେ ମୂଷା ଲାଗି ପାରିବେ ନାହିଁ । ତମମାନଙ୍କୁ ଯାହା ଦୃଶ୍ୟ ତାହା ମୋର ସ୍ଥାବର ସମ୍ପତ୍ତି, ଯାହା ଅଦୃଶ୍ୟ ମୋର ଅସ୍ଥାବର । ସେହି ଅଦୃଶ ହିଁ ରହସ୍ୟ, ତାହା ମୁଁ ବଂଚି ଥାଉଁଥାଉଁ ଖୋଲିବି କିପରି ? ରହସ୍ୟର ଉନ୍ମୋଚନ ହିଁ ସତ୍ୟ ଏବଂ ସତ୍ୟ ହିଁ ଚିରଦିନ ରହସ୍ୟମୟ । ତୋ'ର ସେ ସତ୍ୟ ସହ ସାମ୍ନା ହେବ କିନ୍ତୁ ଏବେ ନୁହଁ । ସେ ସମୟ ଆସିଲେ ମୁଁ ତୋତେ ବଳେ ଡାକି କହିଦେବି, ସେଥିପାଇଁ ତୋ'ର ଉଦ୍‌ବିଗ୍ନ ହେବାର କିଛି ନାହିଁ ।

ବାପା ଫେରିନଥିଲେ ସ୍ୱାଭାବିକତାକୁ କିନ୍ତୁ ସରିଗଲା ମୋର ଛୁଟିର ମିଆଦ । ମୁଁ ଫେରି ଆସିଲି ମୋ କର୍ମକ୍ଷେତ୍ରକୁ । ଅବଶ୍ୟ ବାପାଙ୍କ ଅସୁସ୍ଥତା ଅଧିକ ଦିନ ରହିଲା ନାହିଁ । ସେ ସୁସ୍ଥ ହୋଇଗଲେ ଏବଂ ଆମ ସମସ୍ତଙ୍କ ପୂର୍ବାନୁମାନକୁ ଭୁଲ ପ୍ରମାଣିତ କରି ସେ ସ୍ୱାଭାବିକ ଜୀବନଚର୍ଯ୍ୟାକୁ ଫେରିଲେ ।

ଏଇତ ମାତ୍ର ଦୁଇଦିନ ତଳର କଥା, ବଡ଼ ଭଉଣୀ ଟେଲିଫୋନ୍ କରିଥିଲା ବାପା ଭଲ ଅଛନ୍ତି, ଆସିବା ବେଳେ କହିଥିଲେ ତାକୁ ମୋତେ ଖବର ଦେଇ ଦେବାକୁ ଯେ ମୋ ସହ ତାଙ୍କର କିଛି କଥା ଅଛି । ମୁଁ ବିତୃଷ୍ଣା ମିଶ୍ରିତ କ୍ରୋଧରେ ଏଡାଇ ଯାଇଥିଲି ସେ ଖବରକୁ ଯେ ମୋ ସହ କି କଥା ଅଛି ତାଙ୍କର ? ସେ ତ ସମୟ ଦେଇଛନ୍ତି ଓ ମୁଁ ସେ ସମୟକୁ ଅପେକ୍ଷା କରିଛି । ରଖିଥାଆନ୍ତୁ ସେ ତାଙ୍କର ଗୋପନ ରହସ୍ୟ ତାଙ୍କ ପାଖରେ । ମୁଁ ଜାଣେ ସେ ରହସ୍ୟ ଖୋଲିବା ବେଳକୁ ଆଉ କିଛି ନଥିବ ବରଂ ଭଲ ସେ ସାଇତି ରଖିଥିବା ରହସ୍ୟ ଚିରଦିନ ରହସ୍ୟମୟ ହୋଇଥାଉ ।

ଗତକାଲି ରାତିରେ ମାତ୍ର ଖବର ପାଇଲି ଯେ ତାଙ୍କ ଦେହ ଭଲ ନାହିଁ । ଖବର ପାଇବା ବେଳକୁ କୌଣସି ଗାଡ଼ିର ସମୟ ନ ଥିଲା, ଏତେ ରାତିରେ ଡ୍ରାଇଭର ଠିକ୍ କରି କାର ଧରି ଯିବାଟା ମଧ୍ୟ ନିରାପଦ ନ ଥିଲା । ଖବରପାଇବା ପରେ ଦ୍ୱନ୍ଦ୍ୱରେ ପଡ଼ି ପଚାରିଲି - କ'ଣ ଏ ରାତିରେ ବାହାରିବାଟା ଏକାନ୍ତ ଜରୁରୀ ?

ସେ କଥା କିପରି କହିହେବ - ଏହାଠାରୁ ତ ଅଧିକ ଖରାପ ଅବସ୍ଥାରୁ ବାପା ସୁସ୍ଥ ହୋଇଛନ୍ତି । ଏଥର ତାଙ୍କର ଶାରିରୀକ ଅବସ୍ଥା ଯଦିଓ ସେପରି ହେଲେ ମାନସିକ ସ୍ତରରେ ଲାଗୁଛନ୍ତି ବେଶି ଦୁର୍ବଳ । ଆଉ ଆଗଭଳି ବାକ୍ ସ୍ଫୃତି ନାହିଁ, ସ୍ୱରଟି ଆସୁଛି ଗୋଟେ ଗମ୍ଭିରୀ ଘରରୁ ଆସୁଥିବା ସ୍ୱର ପରି । ତେବେ ଆଜି ରାତିରେ ନ ବାହାରି କାଲିକୁ ଆ - ଭାଇ କହିଲେ ।

ଅଥଚ ସକାଳର ପ୍ରଥମ ଟେଲିଫୋନ୍ ଆସିଲା ବାପା ଚାଲିଗଲେ । ଖବର ପାଇସାରି ମୁଁ ଧିକ୍କାରୀଲି ନିଜକୁ - କାହିଁକି ରାତାରାତି ଘରକୁ ଯିବାର ଦୁଃସାହସ କରି ପାରିଲନି ବୋଲି । ଯାଇଥାଆନ୍ତି ଯଦି ଅନ୍ତତଃ ଶେଷ ମୁହୂର୍ତ୍ତରେ ତ ଦେଖିବାର ସୁଯୋଗ ପାଇଥାଆନ୍ତି । ହଉ ଯାହା ତ ଭାଗ୍ୟରେ ଥିଲା ହେଲା - ମୁଁ ସର୍ବନିମ୍ନ ସମୟ ଭିତରେ ପହଞ୍ଚୁଛି, ସଂସ୍କାର ପାଇଁ ମୋତେ ଅପେକ୍ଷା କର କହି ମୁଁ ବାହାରି ପଡ଼ିଲି ।

ମୁଁ ଦୀର୍ଘପଥ ଅତିକ୍ରମ କରି ପହଞ୍ଚିବା ବେଳକୁ ମୋତେ ଅପେକ୍ଷା କରି କରି ପ୍ରାୟ ଧୈର୍ଯ୍ୟଚ୍ୟୁତି ଘଟି ସାରିଥିଲା ସମସ୍ତଙ୍କର । ସାହିରେ ଲାଗୁନଥିଲା ଚୁଲି, ଶବବି ହେଉଥିଲା ବାସୀ ମଢ଼ା, ତଥାପି ହେଇ ପହଞ୍ଚିଯିବ, ଏତେ ସମୟ ଅପେକ୍ଷା କଲେଣି, ଏତେ ଦୂରରୁ ଶେଷ ଦର୍ଶନ ପାଇଁ ଆସୁଛି, ଆଉ ଘଡ଼ିଏ ଅପେକ୍ଷା କରିଯିବା ନ୍ୟାୟରେ ସମସ୍ତେ ବସିଥିଲେ ମୋ ବାଟ ଚାହିଁ । ମୁଁ ପହଞ୍ଚିବା କ୍ଷଣି ଆଉ ବିଳମ୍ବ ନ କରି ସକିଲ୍ କରାଗଲା କୋକେଇ, ଆରମ୍ଭ କରାଗଲା ରୀତି ନୀତି, ଲଦାଗଲା ଜୁଇ, ପ୍ରସ୍ତୁତ ହେଲା ଚରୁଅନ୍ନ । ଚରୁଅନ୍ନ ପ୍ରଦାନ ପୂର୍ବରୁ ବାପାଙ୍କର ପୁରୁଣା ବସ୍ତ୍ର ଖୋଲି ଯେତେବେଳେ ନୂଆ ବସ୍ତ୍ର ପରିଧାନ କରାଗଲା । ସେତେବେଳେ ମୁଁ ଦେଖିଲି ତାଙ୍କର ବିହାରୀ ପାର୍ଟନ ପଂଜାବୀ ପକେଟ୍‌ରେ ଅଛି ଛୋଟ କାଗଜ ଖଣ୍ଡେ । ମୁଁ କାଗଜଟିକୁ ବାହାର କଲି । ରାତ୍ରୀର ଅନ୍ଧାର ଏବଂ ଗୋଟିଏ ମାତ୍ର ଗ୍ୟାସ ଲାଇଟର ଆଲୁଅରେ ସେ ଛଟାମଟା ଅକ୍ଷରକୁ ଏ ବ୍ୟସ୍ତତା ଭିତରେ ପଢ଼ିପାରିବା ସମ୍ଭବ ହୋଇପାରିବ ନାହିଁ ଭାବି ତାକୁ ମୁଁ ମୋ ପକେଟ୍‌ରେ ପୂରାଇ ଦେଲି । ସଂସ୍କାର କାର୍ଯ୍ୟ ସରିବା ବେଳକୁ ରାତି ତଥାପି ପାହିନଥାଏ । ନଦୀକୁ ସ୍ନାନ

ଶୌଚ ପାଇଁ ଗଲାବେଳକୁ କାଳେ କାଗଜଟି ଭିଜି ଯିବ ଭାବି ତାକୁ ମୋ ମନିପର୍ସ ଭିତରେ ରଖି ଦେଇଥିଲି ।

ମୃତ୍ୟୁ, ମୃତ୍ୟୁ ପରବର୍ତ୍ତୀ ସମସ୍ତ ରୀତିନୀତି, କ୍ରିୟା, କର୍ମ ଏବଂ ପରେ ପରେ ବ୍ରାହ୍ମଣ ଭୋଜନ, ଜ୍ଞାତି ଭୋଜନ ଏବଂ ଗାଆଁ ଭୋଜନ ଦେବାର ବ୍ୟସ୍ତତା ମଧ୍ୟରେ ମୁଁ ଆଉ କେବେ ମନରେ ପକାଇ ପାରିନଥିଲି ମୋ ମନିପର୍ସରେ ସାଇତା ସେଇ ଛୋଟ କାଗଜ ଖଣ୍ଡକର କଥା । ଏତେ ସଯତ୍ନରେ ସାଇତା ଏବଂ ବାପାଙ୍କର ହାତଲେଖା, ସମ୍ଭବତ ଶେଷ ହାତଲେଖା କାଗଜଟିକୁ ମୁଁ ଯେ କିପରି ଦୀର୍ଘ ଚଉଦଦିନ କାଳ ନ ଦେଖିଲି ତାହା ଏବେ ବି ମୋତେ ରହସ୍ୟମୟ ଲାଗେ । ଭାବେ ଏହା ବୋଧେ ବିଧି ନିର୍ଦ୍ଦିଷ୍ଟ ଥିଲା କିମ୍ବା ପିତୃ ଉଦ୍ଦେଶ୍ୟ ଥିଲା, ଯେଉଁଥି ପାଇଁ ଏ ଚଉଦ ଦିନ କାଳ ମୁଁ ବିସ୍ମୃତ ହୋଇଥିଲି ସେ କାଗଜ ଖଣ୍ଡକର ଅସ୍ତିତ୍ୱରୁ ।

ଚଉଦ ଦିନ ପରେ ମୁଁ ଫେରିଲି ରହୁଥିବା ସହରକୁ । କାର୍‌ରୁ ଓହ୍ଲାଇବା ବେଳେ ପତ୍ନୀ କେବଳ ହାତରେ ଧରିଥିଲେ ବାପାଙ୍କର ସୁଦୃଶ୍ୟ ବନ୍ଧାଇ ଫଟୋଟି ଏବଂ ଫଟୋରେ ପିନ୍ଧାଇବାକୁ ଆଣିଥିବା କିଛି କର୍ପୂର ମାଳକୁ । ଆମେ ସମସ୍ତେ କାର୍‌ରୁ ଅନ୍ୟ ସମସ୍ତ ଜିନିଷ ବାହାର କରି ଘରକୁ ଆସିବା ବେଳକୁ ସେ ଫଟୋଟିକୁ ଆମ ଶୋଇବା ଘରର ସେଲ୍‌ଫ ଉପରେ ରଖି ସାରିଥିଲେ ଓ ତା' ଉପରେ ଲମ୍ବାଇ ସାରିଥିଲେ କର୍ପୂର ମାଳକୁ । ମୁଁ ଘରକୁ ପଷୁ ପଷୁ କହିଲି – ଫଟୋଟି ଏଠାରେ କାହିଁକି ରଖିଲ ? ଠାକୁର ଘରେ ରଖିଲେ ଠିକ୍ ହେବ, ଅନ୍ତଃ ପୂଜା କଲାବେଳେ ତାଙ୍କୁ ଧୂପ, ଦୀପ ଦେଇପାରିବା ।

ନା – ବାପାଙ୍କ ଫଟୋକୁ ଏଇଠି ରଖିବା, ତାଙ୍କୁ ଲୌକିକ ପୂଜା ଅପେକ୍ଷା ଆମର ସ୍ମରଣ ବେଶି ଦରକାର । ସକାଳୁ ଉଠିବା ପରେ ଓ ରାତିରେ ଶୋଇବାକୁ ଗଲାବେଳେ ଅନ୍ତତଃ ବାପାଙ୍କ ଫଟୋ ଦେଖି ଆମେ ତାଙ୍କୁ ସ୍ମରଣ କରି ପାରିବା । ବର୍ଷରେ ଥରେ ଶ୍ରାଦ୍ଧ ଦେଇ ତାଙ୍କୁ ସ୍ମରଣ କରିବା ଅପେକ୍ଷା ନିତିନିତି ତାଙ୍କୁ ସ୍ମରଣ କରିବା ଭଲ ହେବ ।

ସ୍ମରଣ ଶବ୍ଦଟି ଶୁଣୁ ଶୁଣୁ ହଠାତ୍ ମୋର ମନେ ପଡ଼ିଗଲା ବାପାଙ୍କ ପକେଟ୍‌ରୁ ବାହାର କରିଥିବା କାଗଜ ଖଣ୍ଡକ କଥା । ସଂଗେ ସଂଗେ ବାହାର କଲି କାଗଜଟିକୁ । ମୃତ୍ୟୁର ପୂର୍ବ ରାତିରେ ବୋଧେ ବାପା ଲେଖିଥିଲେ ସେ କାଗଜ ଖଣ୍ଡକ, କାରଣ ଅକ୍ଷରଗୁଡ଼ାକୁ ଲାଗୁଥିଲେ ଯନ୍ତ୍ରଣାସିକ୍ତ ପରି । ଲେଖାଥିଲା – "ଗତ ଥର ତୁ ମୋତେ

ପଚାରିଥିବା ପ୍ରଶ୍ନଟି ଯକ୍ଷ ପ୍ରଶ୍ନ ପରି ମୋତେ ଅନୁଧାବନ କରିବ ମୃତ୍ୟୁ ଲୋକଯାଏ । ତୁ' ପଚାରିଲୁ, ସେ ଅଧିକାର ତୋ'ର ବି ଥିଲା । ହେଲେ ତୁ ପଚାରିବା ବେଳକୁ ମୁଁ ହରାଇ ସାରିଥିଲି ଉତ୍ତର ଦେବାରେ ଅଧିକାର ଏବଂ ସୌଭାଗ୍ୟ । ବାପାଙ୍କର ଗୁପ୍ତଧନ ନେଇ ତୋ' ଭିତରେ ଥିବ ଧାରଣାଟି ହଠାତ୍ ନିଃସ୍ୱ ହୋଇଯାଉ ମୁଁ ଚାହୁଁନଥିଲି । ନ ଚାହିଁବାରେ ବି ମୋ ସ୍ୱାର୍ଥ ଥିଲା ଶତାୟୁ ହେବାର ଅଭିପ୍ସା ! ଯେତେବେଳେ ମୁଁ ଉପଲବ୍ଧି କରୁଛି ଜୀବନ ଆଉ ମୋ ଆୟତ୍ତାଧୀନ ନୁହେଁ, ଖୁବ୍ ଶୀଘ୍ର ଶୀଘ୍ର ମୃତ୍ୟୁ ଆଡ଼କୁ ଧାବମାନ ସେତେବେଳେ ଏକଥା ଲେଖୁଛି । ସେଦିନ ତୋତେ କହିଥିଲି ସତ୍ୟ ଚିରଦିନ ରହସ୍ୟମୟ ଏବଂ ରହସ୍ୟ ଉନ୍ମୋଚନ ତୋତେ ହୁଏତ ଦୁଃଖୀ କରିପାରେ । କିନ୍ତୁ ମୋ ମୃତ୍ୟୁ ସମୟର ପ୍ରାର୍ଥନା ଯେ ତୁ ସୁଖୀ ହଅ । ସେଥିପାଇଁ ରହସ୍ୟକୁ ରହସ୍ୟମୟ କରି ରଖିଲି । ପାରିବୁ ଯଦି ଏ ରହସ୍ୟକୁ ଆଉ କେବେ ସ୍ମରଣ କରିବୁ ନାହିଁ । ସୁଖୀ ହେବୁ ।"

ମୋ ଆଖିରୁ ଗଡୁଥିଲା ଲୁହ । ପତ୍ନୀ ମୋ ହାତରୁ କାଗଜଟି ନେଇ ପଢ଼ି ସାରି ମୋର ଗଡ଼ି ଆସୁଥିବା ଲୁହକୁ ପୋଛିଦେଇ କହିଲେ - ମୃତ୍ୟୁକାଳୀନ ପ୍ରାର୍ଥନା ନିଷ୍ଫଳ ହୁଏ ନାହିଁ । ବାପା ଏହାଠାରୁ ଆମକୁ ଆଉ ଅଧିକ କ'ଣ ଦେଇଥିଲେ ତମେ ଖୁସି ହୋଇଥାଆନ୍ତ ?"



# ବାପା ତମେ କେବେ ଯିବ

ମୃତ୍ୟୁ ଅପେକ୍ଷାରେ ବୃଦ୍ଧ ସିଂହଟିଏ ଗୁମ୍ଫା ଭିତରେ ଶୋଇ ରହିବା ଭଳି ବିଛଣା ଉପରେ ପଡ଼ି ରହିଥିଲେ ବାପା । ବାପା ତାଙ୍କର ଜନ୍ମ ତାରିଖ ଓ ମସିହାକୁ ସଠିକ୍ କରି ମନେ ରଖିନଥିଲେ ମଧ୍ୟ ତାଙ୍କର ସମସାମୟିକଙ୍କ ବୟସକୁ ହିସାବକୁ ନେଲେ ତାଙ୍କର ବୟସ ସତାଅଶୀ କିମ୍ବା ଅଠାଅଶୀ ହୋଇପାରେ । ଏତଦ୍‌ବ୍ୟତୀତ ମୋ ବଡ଼ଭଉଣୀର ବୟସ ଏବଂ ସେ ଜନ୍ମ ବେଳକୁ ବାପାଙ୍କର ବୟସକୁ ହିସାବକୁ ନେଇ ଆମେମାନେ ବାପାଙ୍କର ବୟସ ସମ୍ପର୍କରେ ଏକ ହାରାହାରି ସତ୍ୟରେ ପହଞ୍ଚୁ । ଗାନ୍ଧିଙ୍କର ଓଡ଼ିଶା ଆଗମନ ସମୟରେ ଆମ ଗାଆଁଠାରୁ ପାଞ୍ଚ କିଲୋମିଟର ଦୂରରେ ଥିବା ସହୀଦ୍ ପଡ଼ିଆରେ ଗାନ୍ଧିଜୀଙ୍କୁ ସ୍ପର୍ଶ କରିବାର ଅପପ୍ରୟାସ କରି ପୋଲିସ୍ ଲାଠିରେ ତାଙ୍କ ହାତ କିପରି ଜଖମ୍ ହୋଇଥିଲା ଓ ସେତେବେଳେ ସେ କେତେ ବର୍ଷର ହୋଇଥିଲେ ତାକୁ ହସିାବ କରି ମଧ୍ୟ ଆମେ ତାଙ୍କର ବୟସ କଳନା କରୁ । ଏସବୁ ହିସାବ ମଧ୍ୟରେ ବର୍ଷେ ଦୁଇବର୍ଷର ଫରକ ରହୁଥିଲେ ମଧ୍ୟ, ମୋଟା ମୋଟି ଆମେ ବାପାଙ୍କ କଥାକୁ ଗ୍ରହଣ କରି ନେଉ ଯେ ତାଙ୍କର ବୟସ ସତାଅଶୀ ବୋଲି । ସେ ସତାଅଶୀ ହେଉ ଅବା ଅଠାଅଶୀ, ବାପା ତାଙ୍କର ବାର୍ଦ୍ଧକ୍ୟଜନିତ କୌଣସି ସମସ୍ୟାରେ ଆମକୁ ଆଜିଯାଏଁ ପକାଇ ନଥିଲେ । ସେ ଆଜିଯାଏ କେବଳ କର୍ମଠ ନ ଥିଲେ, ଆମ କାହାରି ଉପରେ ନିର୍ଭର  ନକରି ତାଙ୍କର ସମସ୍ତ କାର୍ଯ୍ୟକୁ ନିଜେ କରି ଆସିଥିଲେ ।

ବାପା ଏକ ଭିନ୍ନ ରଚିର ମଣିଷ । ସେ ଥିଲେ ବିଳାସୀ ଓ ମନୋରଂଜନ ପ୍ରିୟ । ତାଙ୍କ ସଂସାର କହିଲେ ଗୋଟେ ବଡ଼ ଟେବୁଲ ସେଟ୍ ରେଡିଓ, ଗୋଟେ ଟି.ଭି. ସଦାସର୍ବଦା ଚା, ପାତ୍ର ବସି ରହିବା ପାଇଁ ଗୋଟେ ହିଟର, ଗୋଟେ ଫିତା ଷ୍ଟୋଭ ଇତ୍ୟାଦି । ବାପା ଏକା ରହୁଥିଲେ ସତ ନିଃସଂଗ ନ ଥିଲେ । ତାଂକ ଚାରିପଟେ ସକାଳୁ ସଂଜ ଯାଏଁ ଭିଡ଼ ଲାଗି ରହୁଥିଲା ଗାଆଁରେ ଟି.ଭି. ଦେଖା ପ୍ରିୟ କିଛି ଯୁବକଙ୍କର, ରାମାୟଣ ଓ ମହାଭାରତ ସିରିଏଲ ଦେଖାକୁ ନିଶାଭାବେ ଗ୍ରହଣ କରି

ନେଇଥିବା କିଛି ବୟସ୍କ ବ୍ୟକ୍ତିଙ୍କର । ମୋଟା ମୋଟି ସମ୍ରାଟୀୟ ଶୈଳୀରେ ବଂଚୁଥିବା ବାପା କେବେ ଇଚ୍ଛା ପ୍ରକାଶ କରୁନଥିଲେ ତାଙ୍କର ସ୍ୱାଧୀନତା ଓ ସ୍ୱତନ୍ତ୍ର ରୁଚିକୁ ବଳି ଦେଇ ସହରରେ ଆମେ ରହୁଥିବାର ଭଡ଼ା ଘରରେ ଆସି ପଂଜୁରୀବଦ୍ଧ ହେବାକୁ । ତେଣୁ ତାଙ୍କର ସ୍ୱତନ୍ତ୍ର ଜୀବନ ଶୈଳୀ ପାଇଁ ଆବଶ୍ୟକ ପଡୁଥିବା ଅର୍ଥକୁ ଛାଡ଼ି ଦେଲେ ଅନ୍ୟ କୌଣସି ଥିରେ ସେ ଆମ ଉପରେ ନିର୍ଭରଶୀଳ ନ ଥିଲେ । ଆମେମାନେ ମଧ୍ୟ ସେତିକି ଦେଇ ସାରି ପୁତ୍ର ହିସାବରେ ଆମର ଦାୟ ଓ ଦେୟରୁ ଆପାତତଃ ନିରାପଦ ଓ ନିଶ୍ଚିନ୍ତ ଥିଲୁ ।

ମାତ୍ର ଦୁଇଦିନ ଜ୍ୱରରେ ପଡ଼ିବା ପରେ ସେ ହଠାତ୍ ହୋଇପଡ଼ିଲେ ଦୁର୍ବଳ । ଖାଲି ଦୁର୍ବଳ ହୋଇପଡ଼ିଥିଲେ ବୋଧହୁଏ ସେ ପରୱା କରିନଥାନ୍ତେ । ମାତ୍ର ଗୋଡ଼ ଦୁଇଟି ଯେତେବେଳେ ତାଙ୍କ ଶରୀରର ଭାର ବହନ କରିବାକୁ ଅକ୍ଷମ ହେଲା, ସେ ବାଥରୁମ୍ କିମ୍ବା ଲାଟ୍ରିନ୍ ଯାଇପାରିଲେ ନାହିଁ, ଅଗତ୍ୟା ବାଧ୍ୟ ହେଲେ ନିଜର ସାମ୍ରାଜ୍ୟକୁ ଅବସର ନେଇ ପରିବାର ଭିତରକୁ ଆସିବା ପାଇଁ ।

ବାପା ଅସୁସ୍ଥ, ତାହା ପୁଣି ଗୁରୁତର, ଏହି ଖବରଟି ଯଥେଷ୍ଟ ଥିଲା ଆମ ଭାଇ, ଭଉଣୀ ବନ୍ଧୁବାନ୍ଧବମାନଙ୍କ ପାଇଁ ଯାଇ ଘରେ ପହଞ୍ଚିବା ପାଇଁ । ଲୋକ ଅଭାବରୁ ଖାଁ ଖାଁ କରୁଥିବା ଘର ହଠାତ୍ କଳରବରେ ହୋଇ ଉଠିଲା ମୁଖର । ସମସ୍ତେ ନିଜ ନିଜ ପସନ୍ଦ ଓ ବିବେକ ମୁତାବକ , ଫଳ, ମୂଳ, ମିଠା ଓ ହର୍ଲିକ୍ସ ଧରି ପହଞ୍ଚୁଥିଲେ । ସମସ୍ତଙ୍କର ଘରକୁ ଯିବାର ଉଦ୍ଦେଶ୍ୟ ଯଦିଓ ବାପାଙ୍କର ଅସୁସ୍ଥତା ଥିଲା, କିନ୍ତୁ ଘରେ ପହଞ୍ଚିବାପରେ ସମସ୍ତେ ବାପାଙ୍କର ଅସୁସ୍ଥତା ଭୁଲି ପରସ୍ପର ସହ ବହୁବର୍ଷ ପରେ ସାକ୍ଷାତର ସୁଯୋଗ ମିଳିଥିବାରୁ ଖୁସି ହେଉଥିଲେ । ବାପାଙ୍କ ସହ ଔପଚାରିକ ସାକ୍ଷାତ ପରେ ବାପାଙ୍କର ଅସୁସ୍ଥତା ପାଲଟି ଯାଉଥିଲା ଗୌଣ, ମୁଖ୍ୟ ହେଉଥିଲା ନିଜ ନିଜର ସୁଖ ଦୁଃଖ, ପିଲାଙ୍କ ପାଠପଢ଼ା, ସହରରେ ଜମିକିଣା, ଘରତୋଳା, ମୁଦ୍ରାସ୍ଫିତି ପାଇଁ ବଢ଼ିଥିବା ଦରଦାମ୍, ଷଷ୍ଠ ବେତନ କମିଶନ୍ ରିପୋର୍ଟରେ ବଢୁଥିବା ଦରମା ଓ ମିଳିବାକୁ ଥିବା ଏରିୟର, ରାଜନୀତି ହାଲଚାଲ୍, ଦୁଇଟଙ୍କିଆ ଚାଉଳ ଯୋଜନାରେ ଭୋଟରମାନଙ୍କ ଉପରେ ପଡୁଥିବା ପ୍ରଭାବ ଇତ୍ୟାଦି । ସେଥିରେ ଯଦି କିଏ କାହାକୁ ପଚାରି ଦେଲା – ଆସିଲ ପିଲାମାନଙ୍କୁ କାହିଁକି ନେଇ ଆସିଲ ନାହିଁ, ଆଉ କ'ଣ ଜେଜେଙ୍କୁ ଦେଖିପାରିବେ ? ଅବସୋସ କଲାଭଳି ସେ କହୁଥିବ – ଆଜିକାଲି ପିଲାଙ୍କୁ କ'ଣ ଫୁରୁସତ୍ ଅଛି, ଖାଲି ପାଠ ପାଠ ହୋଇ ଗଲାଣି ସେମାନଙ୍କର ଶୈଶବ । ଯୁକ୍ତ

ଦୁଇ ବିଜ୍ଞାନ ସରିଲା ତ ସଙ୍ଗେ ସଙ୍ଗେ କୋଚିଂ ସେଣ୍ଟର ଯାଇ ମେଡ଼ିକାଲ କିମ୍ବା ଇଂଜିନିୟର ପାଇଁ ପ୍ରସ୍ତୁତ ହୁଅ । ପିଲାଟା ରାତି ଦିନ କରି ଏତେ ପ୍ରସ୍ତୁତ ହେଉଥିଲା ହେଲେ ମେଡ଼ିକାଲରେ ଦେଖିବା ବେଳକୁ ର୍‍ୟାଙ୍କ ରହିଲା ପାଁଶହ ଚବିଶ୍ ରେ । ଇଂଜିନିୟରିଂରେ ଯେଉଁ ର୍‍ୟାଙ୍କ ଅଛି ଗଭର୍ଣ୍ଣମେଣ୍ଟ କଲେଜ ନ ହେଲେ ବି ଭଲ ପ୍ରାଇଭେଟ୍ କଲେଜରେ ସିଟ୍ ମିଳିଯିବ, ହେଲେ ତା'ର ତ ଏକା ଜିଦ୍ ଯେ ସେ ମେଡ଼ିକାଲ ପଢ଼ିବ । ତେଣୁ ଆଉ ଗୋଟିଏ ବର୍ଷ ପ୍ରସ୍ତୁତ ହେବ ।

ତାଙ୍କ ମନ୍ତବ୍ୟ ସରିନଥିବ ଆଉ ଜଣେ ବାହାରି ପଡ଼ି କହିବ,ଏଇଟା ନିର୍ବୋଧତା । ତମେ ଶିକ୍ଷିତ ବାପା ମାଆ ହୋଇ ପିଲାଟାର ନିର୍ବୋଧତାକୁ ପ୍ରଶ୍ରୟ ଦେଉଛ କେମିତି ? କ'ଣ ଅଛି ସେ ମେଡିକାଲ ପଢ଼ାରେ ? ଚାକିରି କରିବ ତ ? ଦଶବାର ବର୍ଷ ପାଠପଢ଼ି ସାରି ପୋଷ୍ଟିଂ ପାଇବ ଯାଇଁ କେ.ବି.କେ ଜିଲ୍ଲାରେ, ସେଥିରେ ଦରମା ତିରିଶ ଚାଳିଶ ହଜାର । ଆରେ ଇଂଜିନିୟରିଂ ଚାରିବର୍ଷ ପଢ଼ିବା ଭିତରେ କ୍ୟାମ୍ପସ ପାଇ ପିଲାଏ ଏଇନେ ଲକ୍ଷ ଲକ୍ଷ ଟଙ୍କା ଦରମାରେ ଯାଉଛନ୍ତି । ଭଲ କମ୍ପାନୀ ପାଇଗଲେ ତ ଫରେନ୍‌କୁ ଚାଲିଲା, ସିଏ ଯେତିକି ଟଙ୍କା ଟ୍ୟାକ୍ସ ଦେବ ଇଏ ଏଠି ସେତିକି ଟଙ୍କା ଦରମା ପାଇବନି ।

ଆଉ ଜଣେ କହିବ ଯାହା ହେଲେ ବି ମେଡିକାଲ ପାଠର ମର୍ଯ୍ୟାଦା ସ୍ୱତନ୍ତ୍ର ।

ସ୍ୱତନ୍ତ୍ର ନା ଚୋପା - ଆଜିକାଲି ଯୁଗରେ ପଇସା ଯେଉଁଠି ମର୍ଯ୍ୟାଦା ସେଇଠି ।

ଏମିତି ଅଛିଣ୍ଡା ଆଲୋଚନା ଭିତରେ ବରାଦ ହେଉଥିବ ଖାଦ୍ୟର ମେନୁ । ଘଡ଼ିକୁ ଘଡ଼ି ଆସୁଥିବ ଚା' । ବିନା ଚିନିର ଚା' ଅଛି କି ନାହିଁ ଜଣେ କିଏ ପଚାରି ଦେଇ - ହଉ ଏବେ ଚଳାଇ ଦେବା କହି ଉଠାଇ ନେଉଥିବ କପଟିଏ । ତାଙ୍କର ବିନା ଚିନିର ଚା' କଥା ଶୁଣି ଆଉ ଜଣେ କିଏ ପଚାରିବ କ'ଣ ଡାଇବେଟିକ୍ ହେଲାଣିକି ? ସେ ଉତ୍ତର ଦେଉଥିବ- ନା, ହେଇନି, ଏଇଟା ହେରେଡିଟାରୀ, ବାପାଙ୍କର ଥିଲା ତ, ତେଣୁ ଚାଳିଶ ପରେ ଟିକିଏ ସତର୍କ ହୋଇ ଯାଉଛି ।

କ'ଣ ଖାଦ୍ୟରେ ନା ଯୋଗ ଫୋଗ କରୁଛ ?

ନାଇଁମ, ସେ ଯୋଗ ଫୋଗକୁ ବେଳ କାହିଁ, ତୋ' ଭାଉଜ ବହୁତ ଲଗାଇବାରୁ ବାବା ରାମଦେବଙ୍କର ଗୋଟିଏ କ୍ୟାସେଟ୍ ଆଣି ଦୁଇଚାରିଦିନ ସକାଳୁ ଫୁ - ଫାଁ ହୋଇଛି କି ନାହିଁ ସବୁ ବନ୍ଦ ।

ମର୍ଣ୍ଣିଂଓ୍ୱାକ୍ କର - ମର୍ଣ୍ଣିଂଓ୍ୱାକ ।

ମର୍ଣ୍ଣିଂ ୱାକ୍! ପଚାରିଲ, ପଚାରିଲ ତମ ଭାଇଙ୍କୁ ମର୍ଣ୍ଣିଂ କେତେବେଳେ ହୁଏ । ତାଙ୍କ ସକାଳର ରୁଟିନ୍ ତମେ ଜାଣ? ବାବୁ ଉଠିବେ ଆଠଟାରୁ ସାଢ଼େ ଆଠଟା ଭିତରେ । ଉଠିବାକ୍ଷଣି ଚା' ପିଇବେ । ନିଉଜ ପେପର ଦେଖିବେ । ନ୍ୟୁଜ୍ ପେପର ଦେଖି ସାରି ଆଉ ଗୋଟେ କପ୍ ଚା' ପିଇ ଝାଡ଼ା ଯିବେ, ତା'ପରେ ଆସି ବ୍ରସ୍ କରି ସେଭିଂ ହେବେ । ସେଭିଂ ପରେ ଗାଧୋଇ ପାଧୋଇ ଅଫିସ୍‌କୁ ତରତରରେ ବାହାରୁ ବାହାରୁ ତ ଦଶଟା ବାଜି ସାରିଥିବ ରକ୍ଷା ହୋଇଛି ଇଏ ତାଙ୍କ ଅଫିସର ବସ୍, ନଚେତ୍ ଲେଟ୍ ଆଟେଣ୍ଡାନ୍ସ୍‌ରେ ତାଙ୍କର ଚାକିରି କେବେଠୁ ଯାଇ ସାରନ୍ତାଣି । ଇଏ ପୁଣି ମର୍ଣ୍ଣିଂୱାକ୍ କରିବେ ନା ଯୋଗ ନା ଫୋଗ ।

ଆଉ ଜଣେ କହୁଥିବ - ଏଥର ବହୁ ବର୍ଷ ପରେ ବନ୍ୟା ସମୟରେ ଗାଆଁକୁ ଆସିବାର ସୁଯୋଗ ମିଳିଛି, ସବୁବେଳେ ସହରର ସେହି ଏକା ରୋହୀ, ଭାକୁଡ ମାଛ ଖାଇ ଖାଇ ପାଟି ଛତୁ ଫୁଟିଲାଣି । ଏଥର ଖରସୁଆଁ ଇଲିସି କିମ୍ବା କିଛି ନଈ ମାଛର ବ୍ୟବସ୍ଥା ହେଉ । ଖରସୁଆଁରେ ଏବେ ଇଲିସ୍ ଜାଲ ପଡୁଛି କି ନାହିଁ?

ପଡୁଥିବ, କିଏ ଆଉ ଦେଖିଲାକି? ଶୁଣୁଛୁ ଲୋକ ତ ଜାଲ ସଂଗେ ସଂଗେ ନଈ ଧାରରେ ଚାଲୁଛନ୍ତି, ପଡିଲାକ୍ଷଣି ଅଦରଦର ଦେଇ କିଣି ନେଉଛନ୍ତି । ରେଟ୍‌କୁ କାହାର ପରୱା ନାହିଁ ।

ବଡ଼ଭାଇ କହିବେ ତମେମାନେ ଏବେଗାଆଁକୁ ଆସିଛ, ମଜା ଗପସପ ଓ ପାଟି ସୁଆଦ କରିବାକୁ ନା ବାପାଙ୍କ ଭଲମନ୍ଦ ବୁଝିବାକୁ?

ହଠାତ୍ ନିରବ ହୋଇଯିବ ଆମ ଭାଇମାନଙ୍କ ଭିତରେ ଚାଲିଥିବା ଆଲୋଚନା ।

ଭାଇ କହିବେ ବାପା ତ ଘରଛାଡ଼ି ଇଂଚେ ଘୁଂଚିବାକୁ ରାଜି ନୁହଁନ୍ତି । କାଳେ ଭିଟାମାଟିରେ ମରିପାରିବେନି ଭୟରେ, ତେଣୁ ସହରକୁ ଯାଇ କାରଟିଏ କରି ଡାକ୍ତରକୁ ଡକାଇବାର ବ୍ୟବସ୍ଥା କର ।

କେଉଁ ଡାକ୍ତର ଏତେ ବାଟ, ଏ ନଈ ଡଙ୍ଗା ପାର ହୋଇ ଦିନଟିଏ କମାଇହେବାକୁ ରାଜି ହୋଇ ଆସିବ?

ଆଉ କ'ଣ ବାପାଙ୍କୁ ଡାକ୍ତର ନ ଦେଖାଇ ଏମିତି ଘରେ ରଖିଥିବା - ଲୋକେ କ'ଣ କହିବେ?

ବାପାଙ୍କର ରୋଗ କ'ଣ ଯେ ଡାକ୍ତର ଦେଖାଇବା? ସିଏ ତ ନିଜେ କହୁଛନ୍ତି ଯେ ସେ ସମ୍ପୂର୍ଣ୍ଣ ଜୀବନଟିଏ ଜିଇଁ ସାରିଲେଣି, ଯଦି ଡାକ୍ତରଙ୍କ ଦ୍ୱାରା

ବାର୍ଦ୍ଧକ୍ୟକୁ ରୋକାଯାଇ ପାରୁଥାଆନ୍ତା ତାହେଲେ କୌଣସି ଧନୀ ଲୋକ ମରନ୍ତେ ନାହିଁ ।

ଆଉ ଜଣେ ଭାଇ କହିବ - ଏବେ ବାପାଙ୍କୁ ଡାକ୍ତରଙ୍କ ପାଖକୁ ନେଲେ ସେ କହିବେ ଡାକ୍ତରଖାନା କିମ୍ୱା ନର୍ସିଂହୋମରେ ଭର୍ତ୍ତି କରିଦିଅ । ଭର୍ତ୍ତି କରିବାକୁ ମନା ନାହିଁ ଯେ, ହେଲେ ସେଠାରେ କେତେ ଦିନ ରହିବାକୁ ପଡ଼ିବ କିଏ ଜାଣେ ? କାହା ହାତରେ ଏତେ ସମୟ ଅଛି ଯେ ବସି ମେଡିକାଲ ଆଟେଣ୍ଡାଣ୍ଟ ହେବ । ଯାହା ପାଖରେ ସମୟ ଅଛି ସେ କରୁ, ମୁଁ ତ ବଡ଼ା କଷ୍ଟରେ ଜନ୍ମାଷ୍ଟମୀ ଶନିବାର ପଡ଼ିବାରୁ ଦୁଇଦିନ ଛୁଟି ପାଇଲି, ନଚେତ୍ ଏଇନେ ଯେମିତି ବିଧାନସଭା ଅଧିବେଶନ ଚାଲିଛି, କେତେବେଳେ କେଉଁ ବିଷୟରେ ଷ୍ଟାରଡ୍ କୋଶ୍ଚେନ୍ ଆସିବ କିଏ ଜାଣେ, ସେଥିରେ କ'ଣ ଅଫିସ୍ ଛାଡ଼ି ଆସିବା ସମ୍ଭବ ? ତେଣୁ ମୋତେ ତ ଯେମିତି ହେଲେ ସୋମବାରର ଫାଷ୍ଟ ବସ୍ ଧରି ଭୁବନେଶ୍ୱରରେ ପହଞ୍ଚିବାକୁ ପଡ଼ିବ । ବାପାଙ୍କୁ ନର୍ସିଂହୋମରେ ରଖିବାକୁ ମୋର ମନା ନାହିଁ, ଯାହା ଖର୍ଚ୍ଚ ହେବ ମୋତେ କହିଲେ ମୁଁ ସେଥିରୁ କିଛି ଦେଇଦେବି, ହେଲେ ମୁଁ ରହିପାରିବି ନାହିଁ ।

ଆଉ ଜଣେ ଭାଇ କହିବ - ଡାକ୍ତର ଦେଖାଯାଉ ବା ଯାହା କରାଯାଉ କିଛି ଲାଭ ହେବନି । ତାଙ୍କର ତ ଆୟୁଷର ସଳିତା ଜଳିସାରିଲାଣି । ଏବେ ସେଥିରେ ତେଲ ଢାଳି ଲାଭ କ'ଣ ? ଡାକ୍ତର ଦେଖାଇ ଆମେ କେବଳ ଆମ ନିଜ ମନକୁ ସନ୍ତୁଷ୍ଟ କରିବା ସିନା କିଛି ଲାଭ ହେବନି ।

ସମସ୍ତଙ୍କ ଭିତରେ ସେହି ଏକା ପ୍ରକାରର ଚିନ୍ତାଧାରା ଥିଲା ଅବଶ୍ୟ ଔପଚାରିକତା ଦୃଷ୍ଟିରୁ ବଡ଼ ଭାଇ କେବଳ କହୁଥିଲେ ଡାକ୍ତର ଦେଖାଇବା ପାଇଁ । ଶେଷରେ ସେ ବି କହିଲେ - ହଁ, ଏଇଟା ବି ଠିକ୍ କଥା, ବାପାଙ୍କର କୌଣସି ରୋଗ ନାହିଁ ଯେ ଡାକ୍ତର ଦେଖାଇ ଟ୍ରିଟମେଣ୍ଟ କିରବା, ତାଙ୍କର ଏହି ଅସୁସ୍ଥତା ସମ୍ପୂର୍ଣ୍ଣ ବାର୍ଦ୍ଧକ୍ୟଜନିତ, ଏଥିରେ ଚିକିତ୍ସା ଅପେକ୍ଷା ସେବାର ଆବଶ୍ୟକତା ଅଧିକ ରହିଛି ଯେମିତି ବାପାଙ୍କର ହୃଦ୍‌ବୋଧ ନହୁଏ ଯେ ସେ ଏତେ ଗୁଡ଼ିଏ ପୁଅ ଜନ୍ମ କରି ଶେଷକୁ ଉପେକ୍ଷିତ ହୋଇ ଶେଷ ନିଶ୍ୱାସ ତ୍ୟାଗ କଲେ ବୋଲି ।

ତମେ ଯାହା କହୁଛ ସତ ଯେ, ହେଲେ ଏ ଅବସ୍ଥା ତାଙ୍କର କେତେଦିନ ଲାଗି ରହିବ କିଏ ଜାଣେ ? କାହାର କ'ଣ ଏତେ ଛୁଟି ଅଛି, ଛୁଟି ଥିଲେ ବି ମିଳିବ କି ମାସ ମାସ ଧରି ବାପାଙ୍କ ପାଇଁ ଘରେ ବସି ରହିବାକୁ ? ନିଜ ନିଜ ପିଲାମାନଙ୍କ ଜଞ୍ଜାଳ

ପାଇଁ ଓ ପାଠ ପଢ଼ା ପାଇଁ କୌଣସି ବୋହୂ ତ ରାଜି ନାହାନ୍ତି ଏ ସମୟରେ ମଧ୍ୟ ଗାଆଁରେ ଆସି ରହିବାକୁ । ତା'ପରେ ସେବା କରିବାର ମନୋବୃତ୍ତି ନଥିଲେ କାହାକୁ କ'ଣ ଏ ଦିଗରେ ବାଧ୍ୟ କରିହେବ ? ବଡ଼ ଭାଉଜଙ୍କର ତ ସୂଚିବାଇ ରୋଗ, ସେ ତ ଆସିବା ଦିନଠାରୁ ଟିପରେ ଚାଲୁଛନ୍ତି । ଘର ଭିତରେ ବି ଚପଲ ମାଡ଼ି ବୁଲୁଛନ୍ତି । ଯେମିତି ବାପା କେଉଁ ଗୋଟେ ସଂକ୍ରାମକ ରୋଗରେ ପୀଡ଼ିତ । ସେ ତ ତାଙ୍କ ବିଛଣାପାଖ ମାଡୁନାହାନ୍ତି, ସେ ରହି ସେବା କରିବେ କ'ଣ ? ମଝିଆଁ ଭାଉଜ ତ ତାଙ୍କର ପୁଅର ଆଇ,ଆଇ.ଟି ଏଣ୍ଟ୍ରାନ୍ସ ନେଇ ଏତେ ସ୍ୱପ୍ନ ଅଧୀର ଯେ ସେ ଏଠିକୁ ଆସିବା ଦ୍ୱାରା ତାଙ୍କ ପୁଅର ପାଠପଢ଼ାର କେତେ କ୍ଷତି ହେଲା ତାକୁ କିପରି ଭରଣା କରିବେ ସେଥିପାଇଁ ବ୍ୟସ୍ତ, ତେଣୁ ତାଙ୍କୁ ଏଠାରେ ରହି ସେବା କରିବାକୁ କହିବା ଯାହା ଡିସେମ୍ବର ମାସରେ ଷ୍ଟ୍ରବେରୀ ଖୋଜିବା ତାହା । ଆଉ ଆମ ଦୁଇଜଣଙ୍କର ମିସେସ୍ ତ ଚାକିରି କରିଛନ୍ତି, ଆମ ପରି ସେମାନଙ୍କ ଦଶା, ସେମାନେ କେଉଁଠୁ ରହିପାରିବେ ? ସବା ସାନଭାଇ ଏକଥା କହି ସାରି ଅପେକ୍ଷା କରୁଥିଲା ତା' କଥାର ପ୍ରତିକ୍ରିୟା କିପରି ହେଉଛି ଦେଖିବା ପାଇଁ ।

ତା' କଥାରେ କୌଣସି ପ୍ରତିକ୍ରିୟା ପ୍ରକାଶ ନ ପାଇବାରୁ ସେ ଆଉ ଟିକେ ଉତ୍ସାହିତ ହୋଇ କହିଲା – ଏହିସମୟ ପାଇଁ ବଡ଼ ଭଉଣୀ ହିଁ ଏକାମାତ୍ର ଫିଟ୍ । ତା' ପୁଅ ବୋହୂ ତ ବାହାରେ, ନନା ରିଟାୟାର୍ଡ କଲା ପରେ ତ ଗାଆଁରେ, ସେ ଆସି କିଛି ଦିନ ଏଠାରେ ରହି ବାପାଙ୍କର ସେବା କଲେ ତା'ର ସେମିତି କିଛି ଅସବୁିଧା ହେବ ବୋଲି ମୋର କାହିଁକି ହୃଦ୍‌ବୋଧ ହେଉନାହିଁ ।

ତୋ' ହୃଦବୋଧ ଉପରେ ତ ଦୁନିଆଁ ଚାଲିନି – ରାଗିଯାଇ କହିଲେ ବଡ଼ଭାଇ । ଯଦି ତା' ମନରେ ବାପାଙ୍କୁ ଶେଷ ସମୟରେ ସେବା କରିବାର ଆଗ୍ରହ ଥାଆନ୍ତା, ତେବେ ସେ କାହିଁକି ଦିନ ଦିଇଟାରେ ଛାଟି ପିଟି ହୋଇ ଏଠାରୁ ପଳାଇ ଯାଇଥାଆନ୍ତା ? ବୁଝିଲୁ ତୋତେ ତୋ' ସମସ୍ୟା ଯେମିତି ବଡ଼ ଲାଗୁଛି । ତାକୁ ତା' ସମସ୍ୟା ବି ସେହିପରି ବଡ଼ ।

ବାପାଙ୍କ ଅସୁସ୍ଥତା ଏକ ଅଛିଣ୍ଡା ଭାଜକ ପରି ଉଭା ହୋଇଥିଲା ଆମ ପାଖରେ । ଆମେ ଯେତେ ଯାହା ଚିନ୍ତା କଲେ ବି ସମସ୍ୟାର ଭାଗଶେଷ ଛିଣ୍ଡୁନଥିଲା ଜମାରୁ । କେବଳ ଲିକୁଇଡ୍ ଡାଏଟ୍ ଉପରେ ନିର୍ଭର କରୁଥିବା ବାପାଙ୍କୁ କ୍ଷୀର, ହର୍ଲିକ୍ସ କିମ୍ବା ଫଳରସ ଟିକିଏ କରି ଦେବା ପାଇଁ ସେମିତି କୌଣସି ବିଶେଷ ସମସ୍ୟା ନ ଥିଲା,

ସମସ୍ୟା କେବଳ ଥିଲା ତାଙ୍କର ଝାଡ଼ା ଓ ପରିସ୍ରାର । ତାଙ୍କର ଗୋଡ ଦୁଇଟି ଠିକ୍ ଭାବେ କାମ କରୁନଥିବାରୁ ନା ସେ ବାଥ୍ରୁମ୍କୁ ଯାଇପାରୁଥିଲେ ନା ତାଙ୍କୁ ଟେକି ଟେକି ନେଇ ଯାଇ ବସାଇ ହେଉଥିଲା । ଏ ସମସ୍ୟାର ସମାଧାନ ପାଇଁ ତାଙ୍କ ପାଇଁ ଦୁଇଟି ପ୍ୟାନ୍ ଅଣାଗଲା, ଗୋଟେ ଝାଡ଼ା ପାଇଁ ଅନ୍ୟଟି ପରିସ୍ରା ପାଇଁ । ଯେହେତୁ ସେ ସମ୍ପୂର୍ଣ୍ଣ ସୁସ୍ଥ ମସ୍ତିଷ୍କରେ ଥିଲେ ଜାଗ୍ରତ ଅବସ୍ଥାରେ ନା ସେ ପ୍ୟାନ୍‌ରେ ଝାଡା କରି ପାରୁଥିଲେ ନା ପରିସ୍ରା । କେବଳ ଶୋଇ ରହିଥିବା ସମୟରେ ଅବଚେତନ ଅବସ୍ଥାରେ ଯାହା ତାଙ୍କର ଝାଡ଼ା ପରିସ୍ରା ହେଉଥିଲା । ଝାଡ଼ା ପରିସ୍ରା ହେବାକ୍ଷଣି ସେ ପୁନଃ ସଚେତନ ଅବସ୍ଥାକୁ ଚାଲି ଆସୁଥିଲେ । ସେ ସଚେତନ ହେବା କ୍ଷଣି ଯେଉଁ ଅସହାୟତା ବ୍ୟକ୍ତ କରୁଥିଲେ ଏବଂ ଯେମିତି ନିଜକୁ ଦୋଷୀ ଦୋଷୀ ମନେ କରୁଥିଲେ ତାହା ଦେଖିଲେ ଖୁବ୍ ଦୟା ଲାଗୁଥିଲା । ତେଣୁ ଆମେ ବାପାଙ୍କୁ ମାନସିକ ସ୍ତରରେ ସୁସ୍ଥ ରଖିବବାକୁ କହୁଥିଲୁ – ବାର୍ଦ୍ଧକ୍ୟରେ ଏସବୁ ହୁଏ, ତମେ ଏଥିପାଇଁ ଏତେ ମର୍ମାହତ ହେଉଛ କାହିଁକି ?

ଧୀରେ ଧୀରେ ସରି ଯାଇଥିଲା ସମସ୍ତଙ୍କ ଛୁଟି । ସାନ ଦୁଇ ଭାଇ ତ ମଉକା ଦେଖି କେମିତି ଖସିଯିବେ ସେଥିପାଇଁ ଥିଲେ ବ୍ୟଗ୍ର । ସେମାନେ ଚାଲିଗଲେ ମଧ୍ୟ । ଗଲାବେଳେ କେବଳ କହିଲେ – ଯାଉଛୁ, ପୁଣି ସୁବିଧା ଦେଖି ଛୁଟି ଧରି ଆସିବୁ । କୌଣସି ଆକସ୍ମିକ ଆବଶ୍ୟକତା ପାଇଁ ଆମେ ସବୁବେଳେ ପ୍ରସ୍ତୁତ ହୋଇଥିବୁ ଆସିବା ପାଇଁ । ମୁଁ ଭୟ କରୁଥିଲି ଏହି ଆକସ୍ମିକ ଆବଶ୍ୟକତା ଶବ୍ଦଟି ଉପରେ ଭାଇ ହୁଏତ ପ୍ରତିକ୍ରିୟା ପ୍ରକାଶ କରି କିଛି କହିଦେବେ ଯାହା ଫଳରେ ବାପାଙ୍କ ମନ କ୍ଷୁର୍ଣ୍ଣ ହୋଇପାରେ, ମାତ୍ର ପରିସ୍ଥିତିର ଗମ୍ଭୀରତା ଓ ବାପାଙ୍କ ସାମ୍ନାରେ ସେ ଶବ୍ଦଟିକୁ ସେ ଆଉ ପ୍ରାଞ୍ଜଳ କରିବାକୁ ଚାହିଁଲେ ନାହିଁ । ବାପା କେବଳ ସେମାନଙ୍କ ଯିବା ସମୟରେ ଏତିକି କହିଲେ:–

"ଗଳିତ ତୁଷାର ପରି
ଏଇ ଜୀବନ ଯୌବନ
ଆୟୁଷର ଜପାମାଳିରୁ
ସରୁଅଛି ଗୋଟେ ଗୋଟେ ଦିନ ।"

ମୁଁ ତ ଜାଣିନି ମୋ ଆୟୁଷର ଜପାମାଳିର ଶେଷ ମାଳିଟିର ଶେଷ ଦିନ କେଉଁଟା, ହେଲେ ଯଦି ଶେଷ ଦିନରେ ତମେମାନେ ସବୁ ଉପସ୍ଥିତ ରହିପାରିଲ ମୁଁ

ଖୁସି ହେବି । ଅବଶ୍ୟ ସେ କଥା ତ ଏବେ କହି ହେବନି, କେତେ ଦିନ ଯନ୍ତ୍ରଣା ଭୋଗିବାକୁ ମୋ କପାଳରେ ଲେଖା ହୋଇଛି କିଏ ଜାଣେ ? ହଉ - ତମେମାନେ ଯାଉଛ ଯଦି ଯାଅ ।

ଆମେ ଭାବୁଥିଲୁ ଦୀପ ଲିଭିବା ବେଳେ ଯେପରି ପ୍ରଖର ହୋଇ ଜଳେ, ବାପାଙ୍କ ମସ୍ତିଷ୍କର ଏ ପ୍ରଖରତା ତାଙ୍କର ଲିଭିବା ସମୟ ଉପଗତର ସୂଚନା ଦେଉଛି । ତେଣୁ ଆମେ ପରସ୍ପର ଭିତରେ ଆଲୋଚନା କରୁଥିଲୁ - ବାପା, ଆଉ ଅଳ୍ପଦିନର ଅତିଥି, ତେଣୁ ସେ ଯେତିକି ଦିନ ବଂଚିଛନ୍ତି ଅନ୍ତତଃ ସେତିକି ଦିନ ଆମେ ତାଙ୍କୁ କିପରି ସେବାର ଆତିଥେୟତା ଦେଇପାରିବା ସେ କଥା ଚିନ୍ତା କରିବା । ସ୍ୱାଧୀନ ଓ ସ୍ୱାଭିମାନ ନେଇ ଜୀବନ ସାରା ଜିଇଁ ଆସିଥିବା ବାପା ଅନ୍ତତଃ ଶେଷ ମୁହୂର୍ତ୍ତରେ ନଭାବନ୍ତୁ ଯେ ସେ ଅବହେଳିତ ହୋଇଗଲେ ବୋଲି ।

ଆମେ ଯତ୍‌ପରୋନାସ୍ତି ଚେଷ୍ଟା କଲୁ ତାଙ୍କୁ ଆବଶ୍ୟକୀୟ ସେବା ଯୋଗାଇବା ପାଇଁ । ମାତ୍ର ବାପା ଜଟିଳ ଅଥଚ ସ୍ଥିର ଅବସ୍ଥାରେ ରହିଗଲେ । ଆମେ ଆଶା କରୁଥିବା ସମୟ ଉପଗତ ହେବାଭଳି କ୍ଷୀଣ ସଂଭାବନା ମଧ୍ୟ ଦିଶୁନଥିଲା । ଏମିତି ଅବସ୍ଥାରେ ଆମେ ଅବା ଆଉ କେତେ ଦିନ ଛୁଟି ନେଇପାରିବୁ ? ଛୁଟିରେ ଥିଲେ ମଧ୍ୟ ଚାକିରିର ଜଂଜାଳ ଛାଡୁ ନଥିଲା । ଛିଡୁନଥିଲା ବି ବାପାଙ୍କର ଜଂଜାଳ । ମୋ ପତ୍ନୀ ମୋର ମାନସିକ ଅବସ୍ଥାକୁ ଠିକ୍ ରୂପେ ପଢ଼ି ନେଇଥିଲେ । ସେ ମୋତେ କହିଲେ - ମନେ ପକାଅ ଓଲଡ ଏଜ୍ ହୋମ ସମ୍ପର୍କିତ କୌଣସି କାହାଣୀ କିମ୍ବା ନାଟକ ଦେଖିଲେ ତମେ ଭାବପ୍ରବଣ ହୋଇ ସେ ବୃଦ୍ଧଙ୍କର ସନ୍ତାନମାନଙ୍କୁ ଅଭିଶାପ ଦେଉଥିଲ । ମୁଁ ସେତେବେଳେ ମଧ୍ୟ ତମକୁ କହୁଥିଲି ଭାବପ୍ରବଣ ନ ହୋଇ ବାସ୍ତବତାକୁ ଗ୍ରହଣ କର । ଯେଉଁ ବାପ ପିଲାମାନଙ୍କୁ ମଣିଷ କରିବାର ସ୍ୱପ୍ନ ଦେଖି ତାଙ୍କୁ ମଣିଷ କରିଛି, ଡାକ୍ତର, ଇଂଜିନିୟର କରାଇଛି ଏବଂ ସେମାନେ ବିଦେଶରେ ଅବସ୍ଥାପିତ ହୋଇଛନ୍ତି । ସେମାନଙ୍କ ହାତରେ କ'ଣ ଏତିକି ସମୟ ଓ ସ୍ୱାଧୀନତା ଅଛି ଯେ ସେମାନେ ଆସି ଉପସ୍ଥିତ ରହିପାରିବେ ବାପାମାଆଙ୍କର ବୃଦ୍ଧାବସ୍ଥାର ଯତ୍ନ ଓ ଦାୟିତ୍ୱ ନେବାକୁ । ତେଣୁ ସେମାନେ ଗ୍ରହଣ କରି ନେଇଛନ୍ତି ଓ ଓଲ୍‌ଡ ଏଜ୍ ହୋମ୍‌କୁ, ଯେଉଁଟାକି ଚରମ ଆବଶ୍ୟକତା କେବଳ ନୁହଁ ସତ୍ୟ ମଧ୍ୟ । ମନେକର ତମେ ଆଜି କୌଣସି ଜିଲ୍ଲାର କଲେକ୍ଟର କି ଏସ.ପି. ହୋଇଥାଆନ୍ତ, ଏ ଚାକିରିରେ ତମେ ଯେତିକି ଛୁଟି ନେଇ ପାରିଲ, ପାରିଥାଆନ୍ତ କି ନେଇ ? ସେଠି ତମ ସମ୍ମୁଖରେ କେବଳ ବାପର ଦାୟ

ନଥାନ୍ତା ଥାଆନ୍ତା ଦାୟିତ୍ୱର ଦାୟ ମଧ୍ୟ । ଲକ୍ଷ୍ୟ କରିଥିବ ଯେତେ ସବୁ ବଡ଼ ବଡ଼ ଲୋକମାନେ ମରୁଛନ୍ତି ବାର୍ଦ୍ଧକ୍ୟଜନିତ ରୋଗରେ, ମଲାବେଳକୁ ଦୀର୍ଘ ସମୟ ଧରି ସେମାନେ ଥାଆନ୍ତି ନର୍ସିଂ ହୋମରେ, କାରଣ କିଛି ଅର୍ଥ ବିନିମୟରେ ତାଙ୍କର ପିଲାମାନେ ସେବାକ୍ରୟ କରିଥାଆନ୍ତି । ନଚେତ୍ ସେମାନଙ୍କ ପାଖରେ କ'ଣ ଏତେ ସମୟ ଅଛି ବସି ବାପାମାଆଙ୍କର ସେବା କରିବାକୁ ?

କଥାଟା ଅପ୍ରିୟ ଲାଗୁଥିଲେ ବି ସତ୍ୟ ବୋଲି ମୁଁ ଉପଲବ୍ଧ କଲି । ବାପାଙ୍କର ଝାଡା ପରିସ୍ରା ସଫା କରି ପୁତ୍ରକାର୍ଯ୍ୟ କରିବାର ଧୈର୍ଯ୍ୟ ଧୀରେ ଧୀରେ ଆମେ ଭିତରୁ ଶେଷ ହୋଇ ଆସୁଥିଲା । କିନ୍ତୁ ସମ୍ପୂର୍ଣ୍ଣ ସକ୍ରୀୟ ମସ୍ତିଷ୍କରେ ଥିବା ବାପାଙ୍କୁ ନର୍ସିଂହୋମରେ ଭର୍ତ୍ତି କଲାଭଳି ପ୍ରସ୍ତାବ ଦେଲେ, ସେ ନିଶ୍ଚୟ ଉପଲବ୍ଧ କରିବେ ଏଇଟା ତାଙ୍କର ଆରୋଗ୍ୟ କାମନା ପାଇଁ ନୁହେଁ ବରଂ ଦାୟିତ୍ୱ ହସ୍ତାନ୍ତର କରିବାର ବାହାନା ଟିଏ । ଭିଟାମାଟିରେ ମରିବାର ମୋହରେ ତ ପ୍ରଥମ ଦିନରୁ ଆମେ ସମସ୍ତଙ୍କର ସେହି ପ୍ରସ୍ତାବକୁ ସେ ପ୍ରତ୍ୟାଖ୍ୟାନ କରିବା ସହ ଆଉ ଖୁବ୍ ଅଳ୍ପଦିନରର ଆୟୁଷକୁ ନେଇ ଘର ନ ଛାଡ଼ିବାକୁ ନିଷ୍ପତ୍ତି ନେଇଛନ୍ତି ।

ନିଜର ଓ ନିଜ ପତ୍ନୀମାନଙ୍କର ଚାକିରିର ବ୍ୟସ୍ତତା ଦର୍ଶାଇ ମୁକୁଳି ଯାଇଥିବା ସାନଭାଇ ଦୁଇଜଣ ଯଦିଓ ଚାଲି ଯାଇଥିଲେ, କିନ୍ତୁ ମୁକୁଳି ପାରିନଥିଲେ ନିଜ ନିଜର ନୈତିକ ଦାୟିତ୍ୱବୋଧରୁ । ତେଣୁ ପ୍ରାୟ ପ୍ରତିଦିନ ଥରେ ଦୁଇଥର ଟେଲିଫୋନ୍ କରି ପଚାରି ବୁଝନ୍ତି ବାପାଙ୍କର ସ୍ୱାସ୍ଥ୍ୟାବସ୍ଥା । ବାପାଙ୍କର ଦେହ କେମିତି ଅଛି ? ପଚାରିବା ବେଳେ ଗୋଟିଏ ଆକୁଳ ଆବେଗ ଦର୍ଶାନ୍ତି ସେମାନେ । ମନ ଭିତରେ ସେମାନଙ୍କର ଥାଏ, ଏପଟୁ ଉତ୍ତର ମିଳନ୍ତା କି ଆଉ ନୁହେଁ, ଜମ୍ମା ଦିନେ କି ଦୁଦିନ, ଗୋଟିକିଆ ପକାଇଲେଣି, ଶେଷ ସମୟରେ ଯଦି ଦେଖିବାର ଇଚ୍ଛା ଅଛି ଚାଲିଆସ । ମାତ୍ର ସେମିତି କୌଣସି ଉତ୍ତର ନ ପାଇ ସ୍ଥିତାବସ୍ଥା ବଜାୟ ରହିଛି ଶୁଣି ସେପଟେ ସେମାନଙ୍କ ମନ ଆମ୍ବିଲା ହେବ ସହ କହନ୍ତି – କ'ଣ ଆଉ କରିବା ଜନ୍ମମୃତ୍ୟୁ ତ କାହାର ହାତ କଥା ନୁହେଁ, ଦଣ୍ଡେ ନିମିଷ ଥିଲେପ୍ରାଣ, ନନେଇ ପାରେ ଜନ୍ତୁରାଣ । ବାପାଙ୍କର ଆଉ କେତେଦିନ ଭୋଗିବାର ଅଛି କିଏ ଜାଣେ ?

ଏପଟୁ ଉତ୍ତର ଥିବ – ବାପାଙ୍କର କେତେ ଦିନ ଭୋଗିବାର ଅଛି କଥା ନୁହଁ, ଆମର କେତେଦିନ ଭୋଗିବାର ଅଛି ସେ କଥା ଭାବ ।

ହଁ – ସେଇଟା ହିଁ ସତ କଥା । ପ୍ରକୃତରେ ବାପା ତ ଭୋଗୁ ନାହାନ୍ତି ଭୋଗୁଛନ୍ତି ଆମେମାନେ ।

ବାପାଙ୍କ ପାଇଁ ଦାନ ଦେବାର ବ୍ୟବସ୍ଥା କରିବାକି ?

କ'ଣ ଆରୋଗ୍ୟ କାମନା କରିବା ନା ମୃତ୍ୟୁ ପାଇଁ ?

ଆରୋଗ୍ୟ କ'ଣ ଆଉ ସମ୍ଭବ ଏବେ କେବଳ ତାଙ୍କର ମୃତ୍ୟୁ କାମନା କରିବା କଥା ।

ହଁ – ମୁଁ ବି ଏ ବିଷୟରେ ବୁଝାବୁଝି କରିଥିଲି, ମାତ୍ର ବୁଢ଼ାବୁଢ଼ୀ ଲୋକମାନେ ଉପଦେଶ ଦେଲେ ସ୍ୱାସ୍ଥ୍ୟର ସ୍ଥିର ଅବସ୍ଥା ଯେମିତି ରହିଛି ଦାନ ନେଇସାରି ଯଦି ବେଶିଦିନ ବଂଚିଯିବେ ତେବେ ପରିବାର ପାଇଁ କ୍ଷତି ।

ତେବେ କ'ଣ କରାଯାଇପାରିବ ?

କେବଳ ମିଳିତ ପ୍ରାର୍ଥନାଟିଏ – ଢେର ବଂଚିଲଣି, ଏବେ ତମେ ଆମକୁ ମୁକ୍ତି ଦିଅ । କୁହ ଯେ କେବେ ଯିବ – କେବେ ଯିବ ବାପା, ବାଣ୍ ଈଶ୍ୱର ନୁହଁ ବାପା ଯଦିପ୍ରାର୍ଥନା ଶୁଣନ୍ତି ତେବେ ଆମେ ଉଦ୍ଧାର ପାଇଯିବା ।



# ମାୟାଚିତ୍ର

ଗୋଟିଏ ଅଜବ ନିଶା ମୋତେ କେବଳ ଆଚ୍ଛନ୍ନ କରି ରଖି ନ ଥିଲା, ଉନ୍ମାଦ ବି କରୁଥିଲା ଭିତରେ ଭିତରେ । ମୁଁ ଶିଳ୍ପୀ ହେବି । ଏମିତି ସେମିତି ଶିଳ୍ପୀ ନୁହେଁ - ପିକାସୋ, ଡା' ଭିନ୍‌ସ କିମ୍ବା ଏମ୍.ଏଫ୍.ହୁସେନ୍‌ଙ୍କ ପରି । ଅର୍ଥ ସହ ଆସିବ ଖ୍ୟାତି । ମୋ ଚିତ୍ରର ହେବ ପ୍ରଦର୍ଶନୀ । ଦେଶ ବିଦେଶରେ ପ୍ରଚାର ଓ ପ୍ରସାର । ଧାଡ଼ି ଲାଗିବ ବଡ଼ ବଡ଼ ଶିଳ୍ପପତି, ଧନୀ ବ୍ୟବସାୟୀ, ଚିତ୍ରତାରକା, କ୍ରିକେଟ କାରତକାମାନଙ୍କର ମୋ ପେଣ୍ଟିଂ କିଣିବା ପାଇଁ । ଗୋଟିଏ ଗୋଟିଏ ପେଣ୍ଟିଂର ଦାମ୍ ଦେଖି ଆଖି ଖୋସି ହୋଇ ପଡୁଥିବ ସାଧାରଣ ଲୋକଙ୍କର । ଅନେକ ତ ଚିନ୍ତା କରୁଥିବେ ଯେ ତାଙ୍କର ସାରା ଜୀବନର ସଂଚୟ ବି ଯଥେଷ୍ଟ ନୁହଁ ମୋର ଗୋଟେ ଗୋଟେ ପେଣ୍ଟିଂ କିଣିବା ପାଇଁ ।

ପର ମୁହୂର୍ତ୍ତରେ ଭାଙ୍ଗିଯାଏ ମୋର ସ୍ୱପ୍ନ ପ୍ରବଣତା । ଭାବେ ପେଣ୍ଟିଂ କ'ଣ ଆଦୌ ଜାଣିନଥିବା ଗାଆଁ ଲୋକେ, ସାଙ୍ଗସାଥୀ ଭାବି ନେଉଛନ୍ତି ଯେ ମୋ ହାତରେ ଐଶ୍ୱରିକ କଳା ଅଛି । ମାନୁଛି ଥାଇ ବି ପାରେ । ହେଲେ ମଣିଷର ଅବିକଳ ଛବିଟିଏ କିମ୍ବା ଗଛ, ଲତା, ଫୁଲ ଓ ପ୍ରକୃତିର କୌଣସି ବସ୍ତୁର ଚିତ୍ରଟିଏ ଆଙ୍କିଦେଲେ କ'ଣ ଜଣେ ଚିତ୍ରକର ହୋଇଯିବ ? ମୁଁ ଯେଉଁସବୁ ପ୍ରସିଦ୍ଧ ଚିତ୍ରଶିଳ୍ପୀଙ୍କର ଚିତ୍ର ଦେଖିଛି, କାହିଁ କେଉଁଠି ତ ପାଉନି ଅବିକଳ ଗୋଟେ ବସ୍ତୁର ଚିତ୍ର ? ଅନେକ ଚିତ୍ରର ଅଗମୂଳ ତ ମୁଁ କିଛି ବୁଝିପାରେନା । ମାତ୍ର ଶୁଣେ ସେ ଚିତ୍ରର ବିଶ୍ୱବ୍ୟାପୀ ପ୍ରଶଂସା ରହିଛି ଏବଂ ସେ ସବୁର ମୂଲ୍ୟ ଲକ୍ଷ ଲକ୍ଷ ଡଲାର ଏପରିକି 'ମୋନାଲିସା'ର ପେଣ୍ଟିଂ ଦେଖି ସାରିବା ପରେ ମୁଁ କୌଣସି ବିଶେଷତ୍ୱ ଲକ୍ଷ୍ୟ କରିପାରିଲି ନାହିଁ ଚିତ୍ରଟିରେ । ଯେଉଁ ହସ ପାଇଁ ଚିତ୍ରଟି ବିଶ୍ୱବିଖ୍ୟାତ, ତାହା ମୋତେ ଲାଗିଲା ରକ୍ତଶୂନ୍ୟତା ରୋଗିଣୀର ଶେଥା ହସ କିମ୍ବା ଅପାସୋରା ବୈଧବ୍ୟକୁ ବୋହି କୃତ୍ରିମ ହସ ହସୁଥିବା ଗୋଟେ ଅସହାୟତା ପରି । ମନରକଥା ମନରେ ରଖେ ସିନା କାହାକୁ ଏକଥା କହିପାରେନା ।

ଭୟ ହୁଏ ଏତେ ବଡ଼ ବଡ଼ ଶିଳ୍ପୀ ଓ ସର୍ବଜନଆଦୃତ ପେଣ୍ଟିଂ ଉପରେ ମୋର ମତାମତ କେବଳ ମୋର ଅଜ୍ଞତାକୁ ଚିହ୍ନାଇବ ।

ଯଦି ଲୋକେ ମୋର ଚିତ୍ରକୁ ଦେଖି ଭାବୁଛନ୍ତି ମୋ ଭିତରେ ଈଶ୍ୱରଦତ୍ତ ପ୍ରତିଭା ଅଛି ବୋଲି, ତେବେ ମୁଁ ଏହାକୁ ମୋର ବ୍ରତ ଓ ବୃତ୍ତି ଭାବରେ ଗ୍ରହଣ କଲେ କ୍ଷତି କ'ଣ ? ମାତ୍ର ଏହାକୁ କିପରି ପେସା ଓ ନିଶା କରିହେବ ସେ ବୁଦ୍ଧି ବାଟ ମୁଁ ପାଉନଥାଏ । କେବଳ ଗୋଟେ ଆତ୍ମମନସ୍କତାର ପାଗଳପଣ ବଢ଼ି ଚାଲୁଥାଏ ମୋ ଭିତରେ । ମୋର ଏମିତି ମାନସିକ ଅବସ୍ଥା ଦେଖି ସହରରେ ରହି ଉଚ୍ଚଶିକ୍ଷା ନେଉଥିବା ମୋର ଜଣେ ବାଲ୍ୟ ବନ୍ଧୁ ମୋତେ କହିଲା – ଆଜିକାଲି ଚିତ୍ରକଳାର ବହୁତ ଡିମାଣ୍ଡ । ହେଲେ ଏଥିପାଇଁ ତୋତେ ଗାଆଁ ଛାଡ଼ି ସହରକୁ ଯିବାକୁ ହେବ । ସେଠାରେ ଯଦି ତୋ ପ୍ରତିଭା ଥରେ ଲୋକଲୋଚନକୁ ଆସିଗଲା ନା ତା'ପରେ ତୋତେ ଆଉ ପଛକୁ ଫେରି ଚାହିଁବାକୁ ପଡ଼ିବନି । ଥରେ ନାଆଁ ହୋଇଗଲେ ପ୍ରତିଷ୍ଠା ଓ ପ୍ରାଚୁର୍ଯ୍ୟ ଉଭୟ ହାତ ଧରାଧରି ହୋଇ ତୋ ପାଖକୁ ଆସିବେ । ତୁ ପଳା ସହରକୁ – ସଂଘର୍ଷ କର ଭାଗ୍ୟ ସହ । ଖୋଜିନେ ଜଣେ ଗୁରୁ, ଯିଏ ତୋତେ ମାର୍ଗଦର୍ଶନ ଦେଇ ବାଟ କଢ଼ାଇ ନେବେ ଆଗକୁ । ଯଦି ତୁ ଜଣେ ଶିଳ୍ପୀ ହିସାବରେ ପ୍ରତିଷ୍ଠା ଅର୍ଜନ ନ କରିପାରିଲୁ ତୁ ସେଠାରେ କମର୍ସିଆଲ ଆର୍ଟ କଲେ ବି ତୋର ଟଙ୍କାର ଅଭାବ ରହିବ ନାହିଁ ।

ବନ୍ଧୁର କଥା ଶୁଣିବା ପରେ ମୋର ସ୍ୱପ୍ନ ପ୍ରବଣତା ଆହୁରି ବଢ଼ିଗଲା । ହାତରେ ସାମାନ୍ୟ ଅର୍ଥ ଧରି ମୁଁ ଚାଲି ଆସିଲି ସହରକୁ । ଗୋଟେ ଝୁଙ୍କରେ ଚାଲି ଆସିଲି ସିନା, ରହିବି କେଉଁଠି ତାହା ଥିଲା ମୋ ପାଇଁ ବଡ଼ ସମସ୍ୟା । ଖୋଜି ଚାଲିଲି ସହରସାରା ସ୍ୱଳ୍ପ ଭଡ଼ାରେ ଘରଟିଏ । ଘର ଯେ ନ ଥିଲା କି ମିଳୁ ନଥିଲା ସେ କଥା ନୁହେଁ, ମାତ୍ର ବେକାରି ଓ ବିନା ପରିବାରର ଅବିବାହିତ ଯୁବକକୁ କେହି ଘର ଦେବାକୁ ରାଜି ନଥିଲେ । ଚା' ଦୋକାନୀ, ପାନଦୋକାନୀଙ୍କଠାରୁ ଆରମ୍ଭ କରି ଭଡ଼ାଘର ଯୋଗାଡ଼ କରୁଥିବା ଦଲାଲଯାଏ ସମସ୍ତଙ୍କୁ ନେହୁରା ହେଉଥିଲି ମୋ ପାଇଁ ଭଡ଼ା ଘରଟିଏ ଖୋଜି ଦେବାକୁ । ହେଲେ ଘରଭଡ଼ା ଦେବାରେ ମୋ ସାମର୍ଥ୍ୟକୁ ତଉଲି ଏ ବିଷୟରେ ବିଶେଷ କେହି ଆଗଭର ହେଉ ନଥିଲେ । ଶେଷରେ ଜଣେ ଦଲାଲ ମୋତେ କହିଲା – ତମେ ତ ଚାକିରି ବାକିରି କରୁନ, ଭଡ଼ାଘର ଖୋଜୁଛ କ'ଣ ? ଯାଉନ ଚୌଧୁରୀ ବୁଢ଼ା ପାଖକୁ, ତା'ର ତ କାହିଁରେ କେତେ ଘର ଫାଙ୍କା ପଡ଼ିଛି । ଟିକେ ନେହୁରା ହୋଇପଡ଼ିଲେ ସେ ଦେଇଦେବେ ଘରଟିଏ ରହିବା ପାଇଁ, ବୁଢ଼ାକୁ ବି ତମଭଳି ସାଥୀଟିଏ ମିଳିଯିବ ।

ଚୌଧୁରୀ... କେଉଁ ଚୌଧୁରୀ ?

ଆରେ ତାଙ୍କ ପୂରା ନାଆଁ ଜାଣିବାର ଦରକାର ନାହିଁ । ରାୟ ଚୌଧୁରୀ ଘର ପଚାରିଲେ ସମସ୍ତେ କହିଦେବେ ।

ଅବଶ୍ୟ ସେତେବେଳେ ମୁଁ ଜାଣିନଥିଲି ଯେ ଦଲାଲଟି ମୋତେ ଥଟ୍ଟାରେ ଏସବୁ କଥା କହୁଛି ବୋଲି । ତା' କଥାକୁ ସତମଣି ମୁଁ ଖୋଜି ଖୋଜି ପହଞ୍ଚିଲି ରାୟ ଚୌଧୁରୀଙ୍କ ଘର ପାଖରେ । ଗେଟ୍ ପାଖରେ ପହଞ୍ଚିବା ପରେ ମୁଁ ଭ୍ରମରେ ପଡ଼ିଲି ଏଠିକୁ କୁଆଡ଼େ ଆସିଛି ବୋଲି । ଇଏ ତ ଘର ନୁହଁ, ରାଜନଅର । ଏଠି ମୋର ସ୍ଥାନ କେଉଁଠି ? ଗେଟ୍ ଆଗରେ ଛିଡ଼ା ହୋଇ ଏପଟ ସେପଟ ଚାହିଁଲି । କାଳେ କିଏ ଦେଖା ହୋଇଗଲେ ପଚାରିବି, ଏଠି ଭଡ଼ା ଘର ମିଳିବ କି ବୋଲି । ମାତ୍ର କେହି କୁଆଡ଼େ ଦେଖା ଯାଉ ନ ଥିଲେ । ସାହସ କରି ପାରୁ ନ ଥାଏ ଗେଟ୍‌ରେ ହାତମାରି ଶବ୍ଦ କରିବାକୁ । କିଛି ସମୟ ଠିଆ ହେବାପରେ ଶେଷରେ ସାହସ କରି ଗେଟ୍ ଦେହରେ ହାତ ମାରିଛି କି ନାହିଁ ଭିତରୁ ଗର୍ଜି ଉଠିଲା ଆଲ୍‌ସେସିଆନ୍ କୁକୁରଟାଏ । ଧାଇଁ ଆସିଲା ଗେଟ୍ ପାଖକୁ । ତା' ପଛରେ 'ଜ୍ୟାକ୍ - ଜ୍ୟାକ୍' ଡାକି ଡାକି ଗେଟ୍ ପର୍ଯ୍ୟନ୍ତ ଚାଲି ଆସିଲେ ଜଣେ ବୃଦ୍ଧ ।

ଗେଟ୍ ବାହାରେ ମୋତେ ଛିଡ଼ା ହୋଇଥିବାର ଦେଖି ପ୍ରଶ୍ନ କଲେ - କାହାକୁ ଖୋଜୁଛ ?

ମୁଁ ତାଙ୍କ ପ୍ରଶ୍ନରେ ହଡ଼ବଡ଼େଇ ଯାଇ କହିଲି - କାହାକୁ ଖୋଜୁନି, ରହିବା ପାଇଁ ଭଡ଼ା ଘରଟିଏ ଖୋଜୁଛି ।

ଭଡ଼ାଘର ଖୋଜିବା ପାଇଁ ଏଠିକୁ କାହିଁକି ଆସିଛ ?

ହଁ, ଏ ଘର ଦେଖିବା ପରେ ଭାବୁଛି, ମୋତେ ଏଠିକା ଠିକଣା ଯିଏ ଦେଇଥିଲେ, ସିଏ ବୋଧେ ମୋ ଅବସ୍ଥାକୁ ଏମିତି ଉପହାସ କରିବା ପାଇଁ ।

କ'ଣ କରୁଛ ତମେ ?

କିଛି କରୁନି ଆଜ୍ଞା । କିଛି କରିବାର ସ୍ୱପ୍ନନେଇ ଗାଆଁରୁ ଚାଲି ଆସିଲି ଯେ ଏଠି ମୁଣ୍ଡ ଗୁଂଜିବାକୁ ଜାଗା ଖଣ୍ଡେ ପାଉନି ।

ଇତି ମଧ୍ୟରେ ବୃଦ୍ଧ ଜଣକ ତାଙ୍କ କୁକୁରର ବେଲ୍‌ଟଟିକୁ ଧରି ଗେଟ୍ ଖୋଲି ସାରିଥିଲେ । ମୋତେ ଗୋଡ଼ରୁ ମୁଣ୍ଡଯାଏଁ ଥରେ ଚାହିଁ ପଚାରିଲେ - କେଉଁ ସ୍ୱପ୍ନକୁ ସାକାର କରିବାକୁ ଗାଆଁ ଛାଡ଼ି ସହରକୁ ଆସିଛ ?

ମୁଁ ଜଣେ ଶିଳ୍ପୀ, ଚିତ୍ର ଆଙ୍କେ । ଶୁଣିଲି ସହରରେ ଏହାର ଡିମାଣ୍ଡ ଅଛି, ସେହି ଭରସାରେ ଚାଲି ଆସିଲି ।

ତମେ ଶିଳ୍ପୀ । ଚିତ୍ର ଆଙ୍କ । ତମେ ବି ସେହି ପାଗଳାମିର ଶିକାର ?

ପାଗଳାମି ନୁହଁ ଆଜ୍ଞା, ମୁଁ ଏହାକୁ ମୋ ଜୀବନର ଲକ୍ଷ୍ୟ ବୋଲି ଧରି ନେଇଛି ।

ହୁଃ - ଲକ୍ଷ୍ୟ ନା ଛେନା ଗୁଡ଼ ! ଇଏ ସବୁ ତମଭଳି ଅଳସୁଆ ଯୁବକଙ୍କର ପାଗଳାମି । ସେ ଏତେ ଘୃଣାରେ ହୁଃ -କହିଲେ ଯେ ମୁଁ ଭାବିଲି ଧଡ଼ାସ୍ କରି ଗେଟ୍ ବନ୍ଦ କରିଦେଇ ମୋତେ କହିବେ - ଗେଟ୍ ଆଉଟ୍ । ମାତ୍ର ସେମିତି କିଛି ନ କରି କହିଲେ - ତମକୁ ଦେଖି ମୋର ଦୟା ଆସୁଛି । ମୁଣ୍ଡ ଗୁଂଜିବାକୁ ଚାହୁଁଛ ତ, ଆସ ଭିତରକୁ । ବଂଚିବାକୁ ଏବଂ ସ୍ୱପ୍ନ ଦେଖିବାକୁ ବହୁତ ରାସ୍ତା ପଡ଼ିଛି, ଶିଳ୍ପୀ ହେବାର ସ୍ୱପ୍ନ ଛାଡ଼ି ଅନ୍ୟ ମାର୍ଗ ଦେଖ ।

ଏତକ କହିସାରି ସେ ଚାଲିଲେ ଆଗେ ଆଗେ । ମୁଁ ତାଙ୍କୁ ଅନୁସରଣ କରି ଚାଲିଲି ।

ବୈଠକ ଘରେ ପହଞ୍ଚି ସେ ଖୁବ୍ ଦୃଢ଼ ଓ ଗମ୍ଭୀର ଗଳାରେ ଡାକିଲେ- ଜଗୁ - ଜଗୁ ।

ମାତ୍ର ସେ ଡାକ ଶୁଣି କେହି ଆସୁ ନ ଥିଲେ । କିଛି ସମୟ ପରେ ସ୍ୱଗତୋକ୍ତି କଲାପରି କହିଲେ - ତାକୁ ତ ବଜାରକୁ ପଠାଇଛି, ଏଠି ଡାକ ଛାଡ଼ିଲେ କ'ଣ ହେବ ? ମୋ ଆଡ଼କୁ ଚାହିଁ କହିଲେ ହଉ ତମେ ଏଇଠି ବସ, ଜଗୁ ଆସିଲେ ତମର ରହିବାର ବ୍ୟବସ୍ଥା କରିବ ।

ମୁଁ ବସିରହିଲି ବୈଠକଖାନାରେ । ବିସ୍ମୟ ହୋଇ ଦେଖୁଥିଲି ଘରଟିକୁ । ଶିଶୁ ଓ ମେହେଗାନୀ କାଠରେ ତିଆରି ଆଣ୍ଟିକ ଫର୍ଣ୍ଣିଚର ସବୁ । ଗଠନ କଳାରେ ଫୁଟି ଉଠୁଥିଲା ପ୍ରାଚୀନତା ସହ ଆଭିଜାତ୍ୟ । ସେ ସବୁର ହେପାଜତ୍ ମଧ୍ୟ ଏପରି ହେଉଥିଲା ଯେ ସେସବୁ ଦର୍ପଣ ପରି କରୁଥିଲେ ଚକ୍ ଚକ୍ । କାନ୍ଥରେ ଟଙ୍ଗା ଯାଇଥିଲା କିଛି ତୈଳଚିତ୍ର । ଆହୁରି ମଧ୍ୟ କ୍ୟାମେରାରେ ଉଠା ଯାଇଥିବା କିଛି ବ୍ଲାକ ଏଣ୍ଡ ହ୍ୱାଇଟ ଫଟୋଗ୍ରାଫ୍ । ଫଟୋଗ୍ରାଫ୍‌ଗୁଡ଼ିକ ଯେତିକି ଆକର୍ଷଣୀୟ ଥିଲା, ତା'ଠାରୁ ଅଧିକ ଆକର୍ଷଣୀୟ ଥିଲା ଶିଶୁ କାଠରେ କୁଟିକମ୍ କରା ଫ୍ରେମ୍ । ମୁଁ ବିସ୍ମୟ ହୋଇ ସେସବୁ ଦେଖୁଥିବା ବେଳେ ସେ କହିଲେ - ଏଠି ଆମ ପରିବାରର ଦୁଇଟି ପୀଢ଼ିର ଫଟୋ ରହିଛି । ଗୋଟିଏ ପୀଢ଼ି ଅତୀତ ଓ ଗୋଟେ ପୀଢ଼ି ବର୍ତ୍ତମାନ । ମାତ୍ର ବର୍ତ୍ତମାନ ପୀଢ଼ିର ମୋତେ ଛାଡ଼ି କେହି ଜଣେ ବି ରହୁନାହାନ୍ତି ଏଠାରେ ।

ହେଇ ଦେଖ, ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଡିଗ୍ରୀ ଧରି ଯେଉଁ ଫଟୋଟି, ତାହା ମୋ ବଡ଼ ପୁଅର । ସେ ଏବେ ଆମେରିକାର ସ୍ଥାୟୀ ବାସିନ୍ଦା । ପୂର୍ବରୁ ପ୍ରତିବର୍ଷ ଥରେ ଆସୁଥିଲା, ହେଲେ ବିଗତ ଦଶବର୍ଷ ହେଲାଣି ଆସିନାହିଁ । ବୋଧେ ତା' ମାଆ ବଂଚିଥିଲା ବୋଲି ଆସୁଥିଲା, ମାଆ ଚାଲିଗଲା ପରେ ଆଉ ଆସିବାର ଆବଶ୍ୟକତା ଉପଲବ୍ଧି କରିନାହିଁ । ଏପଟ କାନ୍ଥରେ ତା' ମାଆର ଫଟୋ । ମଝିରେ ଯେଉଁ ଫଟୋଟି ତାହା ମୋ ମଝିଆ ପୁଅର । ସେ ନାସାରେ ବୈଜ୍ଞାନିକ । ବିଦେଶୀ ମେମ୍‌କୁ ବାହାହୋଇ ସିଏ ବି ଏନ୍.ଆର.ଆଇ ଏବଂ ବିବାହ ପରଠାରୁ ଏଠିକୁ ଆସିନାହିଁ । ଏବେ ସିଏ ମୋତେ କିମ୍ବା ମୁଁ ତାକୁ ଦେଖିଲେ ଚିହ୍ନିପାରିବୁ କି ନା ସନ୍ଦେହ । ଶେଷରେ ଯେଉଁ ଫଟୋଟି ସିଏ ହିଁ ମୋର ଅସଲ ଦୁଃଖ । ଟୀନ୍‌ର ଦୁଃଖ ହୋୟାଙ୍ଗହୋ ପରି ଭାବିଥିଲି ସେ ମୋ ପାଖରେ ରହି ଏ ସମସ୍ତ ସମ୍ପତ୍ତିର ହେପାଜତ୍ କରିବ, ମାତ୍ର ସେ ଏକ ଅଜବ ଖିଆଲର ଶିକାର ହେଲା । ଖିଆଲ ତ ନୁହେଁ, ପାଗଳାମି । ଆରେ ହଁ - ହଁ, ତମେ କ'ଣ କର ବୋଲି କହୁଥିଲ ?

ଶିଳ୍ପୀ - ଚିତ୍ର ଆଙ୍କେ ।

ହୁଃ - ଘରକୁ ଡାକି ସାରିଲିଣି ଯେତେବେଳେ, ଏବେ ତମକୁ ବାହାରି ଯିବାକୁ କହିବାଟା ଠିକ୍ ହେବନି । ମାତ୍ର ଜାଣିରଖ, ମୁଁ ଏହି ଚିତ୍ରକଳାକୁ ଘୃଣା କରେ । ମୋର ଏଇ ପୁଅ ଶିଳ୍ପୀ ଚିତ୍ର ଆଙ୍କେ । ସେହି ଖିଆଲରେ ସେ ମୋ ପାଖରେ ରହୁନି । ସହରଠାରୁ ଦୂରରେ ମୋର ଗୋଟେ ଫାର୍ମ ହାଉସ୍ ଅଛି । ସେଇଠି ରହୁଛି ସିଏ । ସମ୍ପୂର୍ଣ୍ଣ ଏକା । ବାହା ହେଲାନି କି ସଂସାର କଲାନି । ଚିତ୍ରକଳାରେ ସେ କ'ଣ ଗୋଟେ ସନ୍ଧାନରେ ଅଛି । ତାକୁ ନ ପାଇବା ଯାଏ, ପଣ କରିଛି ବାହାହେବନି ବୋଲି । ହେଲେ ମୁଁ ଜାଣିଛି ସେ ଯାହା ଖୋଜୁଛି ତାକୁ ପାଇପାରିବ ନାହିଁ କି ବାହାହେବ ନାହିଁ । ଏଇ ଅଳ୍ପ ଦୂରରେ ସେ ରହୁଥିଲେ ମଧ୍ୟ ତା' ସହ ମୋର ସାକ୍ଷାତ ନାହିଁ କହିଲେ ଚଳେ । କେବଳ ଘୃଣାରେ ।

ତାଙ୍କର ନାଁ କ'ଣ ?

କ'ଣ ତାକୁ ସାକ୍ଷାତ କରିବ ନା କ'ଣ ? ସିଏ ତ ଏବେ କାହାକୁ ସାକ୍ଷାତ କରୁନି । ଆଗରୁ ବହୁ ପେଣ୍ଟିଂ କରୁଥିଲା, ଚିତ୍ରକଳାରେ ତା'ର ନାଆଁ ବି ଥିଲା । ହେଲେ ଏବେ ସେ କେବଳ ତୂଳୀଟିଏ ଧରି ଗୋଟେ ଶୂନ୍ୟ କାନ୍‌ଭାସ୍ ଆଗରେ ବର୍ଷ

ବର୍ଷ ହେଲାଣି ବସି ରହୁଛି ବୋଲି ଶୁଣିଛି । କେଉଁ ଚିତ୍ର ଆଙ୍କିବାର ପ୍ରସ୍ତୁତିରେ ସେ ଅଛି, ସେ ହିଁ କେବଳ ଜାଣେ ।

ଇତ୍ୟବସରରେ ତାଙ୍କର ଜଗୁ ନାମକ ଭୃତ୍ୟଟି ଆସି ପହଞ୍ଚି ଯାଇଥିଲା । ତାକୁ ମୋର ରହିବାର ବନ୍ଦୋବସ୍ତ କରିବାକୁ ନିର୍ଦ୍ଦେଶ ଦେଇ କହିଲେ - ମୋ ପାଇଁ ମଧ୍ୟ ରୋଷାଇ  କରିବାକୁ ।

ମୁଣ୍ଡ ଗୁଂଜିବାକୁ ଜାଗା ମିଳୁଥିବାରୁ ମୁଁ ତାଙ୍କ ପାଖରେ ଏତେ କୃତଜ୍ଞ ଥିଲି ଯେ ମୋର ଖାଇବାର ବୋଝ ତାଙ୍କ ଉପରେ ପଡୁ ବୋଲି ଚାହୁଁନଥିଲି । ମୁଁ ନାଇଁ - ନାଇଁ, ଆଜ୍ଞା କହୁ କହୁ ସେ ଗର୍ଜନ କରି କହିଲେ - ଏଠି କେବଳ ମୋ ହୁକୁମ ଚାଲେ । ମୋ ଘରେ ଅନ୍ୟ କାହାର ଇଚ୍ଛା ବା ଅନିଚ୍ଛାର ମୂଲ୍ୟ କିଛି ନାହିଁ । ସେଥିପାଇଁ ତ ଜଣକ ପରେ ଜଣେ ଏ ଘର ଛାଡ଼ି ଚାଲି ଯାଇଛନ୍ତି । ହେଲେ ମୁଁ ମୋ ଜିଦ୍‌ରୁ ଓହରି ଯାଇନି କି ଭାଙ୍ଗିପଡ଼ିନି । ତେଣୁ ତମେ ଯଦି ଏଠାରେ ରହିବାକୁ ଚାହୁଁଛ, ତେବେ ମୋର ହୁକୁମ ମାନି ଚଳିବ, ନଚେତ୍ ଅନ୍ୟ ରାସ୍ତା ଦେଖ ।

ଅଗତ୍ୟା ମୋ'ର ଆଉ କିଛି କହିବାର ନଥିଲା । ମୁଁ ମୁଣ୍ଡ ପୋତି ଛିଡ଼ା ହୋଇଥିବା ବେଳେ ସେ ଜଗୁକୁ ନିର୍ଦ୍ଦେଶ ଦେଲେ ମୋର ରହିବା ଘର ଦେଖାଇଦେବାକୁ । ମୁଁ ଜଗୁ ପଛେ ପଛେ ଚାଲିଲି । ଜଗୁ ଗୋଟିଏ ପରେ ଗୋଟିଏ ରୁମ୍ ଅତିକ୍ରମ କରି ଶେଷକୁ ଯେଉଁ ରୁମ୍‌ଟି ମୋ ପାଇଁ ଖୋଲିଲା, ତାକୁ ଖୋଲୁ ଖୋଲୁ କହିଲା - ଆଉ କେଉଁ ଅତିଥି ଆସୁଛନ୍ତି ଯେ ତାଙ୍କ ପାଇଁ ସଜା ହୋଇ ବନ୍ଦ ହୋଇ ରହିଥିବ । ଆପଣ ରୁହନ୍ତୁ ଏଠାରେ । ଆପଣ ବି ତ ଅତିଥି ନା ।

ମୁଣ୍ଡ ଗୁଂଜିବାକୁ ଝୁମ୍ପୁଡ଼ି ଖୋଜୁଥିବା ବେଳେ ଏ ରାଜମହଲର ଅତିଥିଶାଳା । ମୁଁ ବିସ୍ମୟାଭିଭୂତ ହୋଇ ଭାବୁଥିଲି ଭାଗ୍ୟ ବୋଧେ କିଛି ନୂଆ କରିବାର ସୁଯୋଗ ଦେବ ।

ରହିଗଲି ସିନା ରାଜକୀୟ କାଇଦାରେ, ହେଲେ ସାହସ କରିପାରୁନଥାଏ ମୋର ରଙ୍ଗ ତୂଳୀ ବାହାର କରି ଚିତ୍ର ଉପରେ ଧ୍ୟାନ ଦେବା ପାଇଁ । ଚୌଧୁରୀ ସାହେବଙ୍କର ଚିତ୍ରକଳା ଉପରେ ଥିବା ଘୃଣା ମୋତେ ଏଥିରୁ ନିବୃତ୍ତ କରୁଥାଏ । ଥରେ ବୁଲୁ ବୁଲୁ ଦେଖିଲି ଗୋଟିଏ ରୁମ୍‌ର ଦ୍ୱାରଦେଶରେ ଲେଖାଯାଇଛି ତୂଳୀଶାଳା । ଏ ଘରଟିରେ କ'ଣ ଅଛି ବୋଲି ଜଗୁକୁ ପଚାରିଲି । ସେ କହିଲା - ଏ ଘରେ ସାହେବଙ୍କ ଘୃଣା ଉର୍ଦ୍ଧ୍ୱ ହୋଇଛି ।

ମାନେ !

"ଆମ ସାନ ସାହେବଙ୍କର ସମସ୍ତ ଚିତ୍ରକଳା ଭର୍ତ୍ତି ହୋଇ ରହିଛି ଏ ଘରେ ।"

ଏ ଘରର ଚାବି ଅଛି ତମ ପାଖରେ ?

ଅଛି ଯେ ହେଲେ ସାହେବ ଥିବାବେଳେ ଏ ଘର ଖୋଲିଲେ ମହା ବିପଦ । ସେ ଯେତେବେଳେ ବାହାରକୁ ଯାଇଥିବେ ମୁଁ ସେ ଘର ଖୋଲି ଆପଣଙ୍କୁ ଦେଖାଇବି ।

ଦିନେ ସାହେବଙ୍କ ଅନୁପସ୍ଥିତିରେ ଜଗୁ ମୋ ପାଖକୁ ଆସି କହିଲା - ସେ ଘର ଦେଖିବେ ବୋଲି କହୁଥିଲେ ପରା, ଆସନ୍ତୁ । ସେ ଘରର କବାଟ ଖୋଲୁ ଖୋଲୁ ଜଗୁ କହିଲା - ଏସବୁ ଲୋକଙ୍କୁ ଦେଖାଇବା ଜିନିଷ । ତା' ନକରି ଗୋଟେ ଅଜବ କ୍ରୋଧରେ ସାହେବ ତାକୁ ବନ୍ଦ କରି ରଖିଛନ୍ତି । ତାଙ୍କର ଉଦ୍ଦେଶ୍ୟ ଥିଲା ଏମିତି ବାରଣ ଦ୍ୱାରା ପୁଅ ତାଙ୍କର ଛାଡ଼ିଦେବ ଚିତ୍ରକଳାର ନିଶା । ଫେରି ଆସିବ ଜମିଦାରିର ଦାୟିତ୍ୱ ନେବା ପାଇଁ । ମାତ୍ର ଚିତ୍ରକଳା ଯାହା ରକ୍ତରେ, ସିଏ ଭଲା କାହିଁକି ଏସବୁ ଜଂଜାଳରେ ପଶି ଥାଆନ୍ତେ । ଚିତ୍ରକଳା ତ ଛାଡ଼ିପାରିଲେନି ବରଂ ଛାଡ଼ିଦେଲେ ଘରକୁ । ଏବେ ଯାଇ ରହୁଛନ୍ତି ଫାର୍ମ ହାଉସ୍‌ରେ ।

ଖୁବ୍ ସୁନ୍ଦର ଭାବରେ ଫ୍ରେମିଙ୍ଗ୍ କରାଯାଇ ରଖାଯାଇଥିଲା ସମସ୍ତ ପେଣ୍ଟିଂକୁ । ପ୍ରତ୍ୟେକ ପେଣ୍ଟିଂ ଏକରୁ ଆରକେ ବଳି ସୁନ୍ଦର ଓ ଭାବଧର୍ମୀ ଥିଲେ । ମୁଁ ଚିତ୍ରଗୁଡ଼ିକୁ ନିରୀକ୍ଷଣ କରି ଦେଖିବା ବେଳେ ଶ୍ରଦ୍ଧା ଓ ଭକ୍ତିରେ ମୋ ମୁଣ୍ଡ ନଇଁ ଯାଉଥିଲା ସେ ଶିଳ୍ପୀଙ୍କ ପାଇଁ । ମନେ ମନେ ନିଜକୁ ତୁଳନା କରୁଥିଲି । ଭାବି ପାରୁନଥିଲି ତାଙ୍କ ତୁଳନାରେ ମୋର ସ୍ଥାନ କେଉଁଠି । ମନେ ମନେ ଭାବିଲି, ମୁଁ ଯେଉଁ ଗୁରୁଙ୍କ ସନ୍ଧାନରେ ଘରୁ ଆସିଥିଲି, ଇଏ ନିଶ୍ଚୟ ସେହି ଗୁରୁ, ନଚେତ୍ ଏମିତି ସଂଯୋଗ କେମିତି ଘଟିଥାଆନ୍ତା ?

ଗୁରୁଙ୍କ ସାକ୍ଷାତ୍ ପାଇଁ କାହାକୁ କିଛି ନ କହି ଦିନେ ଯାଇ ପହଞ୍ଚିଲି ତାଙ୍କ ଫାର୍ମ ହାଉସ୍‌ରେ । ଫାର୍ମ ହାଉସ୍ କହିଲେ ବୁଝାଉଥିଲା ଗୋଟେ ଫଳ ବଗିଚା, ମାଛ ପୋଖରୀ, ଗୋରୁ ଗୁହାଳ ଇତ୍ୟାଦି । ସେଥିରେ ଯେ ଚାଷ ଉପଯୋଗୀ ଜମି ନଥିଲା ସେ କଥା ନୁହେଁ, ଚାଷ ଜମିତକ ଅଚଷା ଓ ଅରମା ହୋଇ ପଡ଼ିଥିଲା । କିନ୍ତୁ ସେ ଜମିର ହାବଭାବ କହୁଥିଲା ଏକଦା ସେ ଜମିରୁ ପ୍ରଚୁର ଶସ୍ୟ ଅମଳ ହେଉଥିଲା । ମୁଁ ଫାର୍ମ ହାଉସ୍ ଦାୟିତ୍ୱରେ ଥିବା ଲୋକଟିକୁ କହିଲି - ମୋତେ ଜଗୁ ପଠାଇଛି ସାନ ସାହେବଙ୍କୁ ଭେଟିବା ପାଇଁ ।

"ସାନ ସାହେବଙ୍କୁ ଭେଟିବେ ?" ମୋତେ ବିସ୍ମିତ ହୋଇ ଏ ପ୍ରଶ୍ନଟି ପଚାରି ଦେଇ କହିଲା "ଜଗୁ ନ ଜାଣିଲା ପରି ପଠାଇ ଦେଲା କେମିତି ?" କିଏ ଜାଣେ ସେ ଭେଟିବାକୁ ଅନୁମତି ଦେବେ କି ନାହିଁ ।

କାହିଁକି ?

କାହିଁକି କ'ଣ, କିଏ ଭେଟିବାକୁ ଆସିଲେ ତାଙ୍କର ଏକାଗ୍ରତା ଉପରେ ଆଞ୍ଚ ଆସିବ, ସେଥିପାଇଁ ସେ କାହାରିକୁ ଭେଟୁନାହାନ୍ତି । ଦେଖୁନାହାନ୍ତି ଏଠାରେ ଲୋକଙ୍କ ଗହଳ ଚହଳ କମାଇ ଦେବା ପାଇଁ କେମିତି ସୁନା ଫଳୁଥିବା ଜମିରେ ଚାଷ ବନ୍ଦ କରି ଦେଇଛନ୍ତି । ଜମିସବୁ କେମିତି ଅରମା ହୋଇ ପଡ଼ିଆ ପଡ଼ିଛି । ପୋଖରୀରେ ମାଛ ନାହାନ୍ତି କି ଗୁହାଳରେ ଗାଈ ନାହାନ୍ତି । ସେ କ'ଣ କରୁଛନ୍ତି ଯେ ତାଙ୍କର ଏକାଗ୍ରତା ଭଙ୍ଗ ହେବ, ତାହା ମୁଁ ଆଜିଯାଏ ବୁଝିପାରୁ ନାହିଁ । ଗୋଟିଏ ଶୂନ୍ୟ କାନ୍‌ଭାସ ଆଗରେ ତ କେବଳ ରାତିଦିନ ବସିଛନ୍ତି, ତୂଳୀଟିଏ ଧରି । କେଉଁ ଚିତ୍ର କରିବାର ଉପକ୍ରମ ସେ କରୁଛନ୍ତି, ସେ ନିଜେ ହିଁ କେବଳ ଜାଣନ୍ତି । କାନ୍‌ଭାସରେ କୌଣସି ଚିତ୍ର ଅଙ୍କାହେଲେ ସିନା କିଏ ଜାଣନ୍ତା, କି ଚିତ୍ର ହେଉଛି । ଯାହା ବି କୁହନ୍ତୁ, ଆମ ବଡ଼ ସାହେବ ଠିକ୍ କଥା କହୁଛନ୍ତି - ଇଏ ଗୋଟେ ପାଗଳପଣ । ଚିତ୍ର ଆଙ୍କିବା ନାଆଁରେ ଗୋଟିଏ କାନ୍‌ଭାସ୍ ଆଗରେ ରାତିଦିନ ବସି କ'ଣ ଶୂନ୍ୟର ଚିତ୍ର ଆଙ୍କୁଛ ।

କି ଅଜବ ଶିଳ୍ପୀ ଇଏ ବାବା ! ସେଥିରେ ଠିକ୍ ଠାକରେ ଖିଆ ନାହିଁ କି ପିଆ ନାହିଁ । ରୋଷେଇ କରିବାରେ ଆମର ହେଲା ନାହିଁ । ରାନ୍ଧିବାଢ଼ି ସାରି ଖାଇବାକୁ ବସାଇବା ପର୍ଯ୍ୟନ୍ତ ଆମେ ସିନା କରିପାରିବୁ, ହେଲେ ତାଙ୍କ ପାଇଁ ତ ଆଉ ଖାଇପାରିବୁ ନାହିଁ । ମୁହଁରେ ପଦିଏ କଥା କହିବା ମନା - କେବଳ ଯାହା ଇଶାରାରେ । ଯଦି କେତେବେଳେ ମନକୁ ଆସିଛି ଖାଇବେ ତ ଦେଇଥିବା ଭାତତକ କେବଳ ଖାଇଦେବେ । ସାଂଗରେ ଦେଇଥିବା ତରକାରି ସେମିତି ଥୁଆ ହୋଇଥିବ । ଆଉ କେତେବେଳେ ତରକାରି ସବୁ କେବଳ ଖାଇବେ ଯେ ଦେଇଥିବା ଭାତ କି ରୁଟିରେ ହାତ ମାରିବେ ନାହିଁ । ବେଳେବେଳେ ତ ପଟେ ରୁଟି କି ପିଠାକୁ ଧରି ସେମିତି ସେଇ କାନ୍‌ଭାସ୍ ଆଗରେ ବସିଥିବେ ଯେ ବସିଥିବେ । ମୁଁ ଆଗରୁ ଜାଣିଥିଲି ଶିଳ୍ପୀମାନେ ସ୍ୱପ୍ନ ଜଗତର ମଣିଷ, ସବୁବେଳେ କଳ୍ପନା ବିଳାସରେ ରହନ୍ତି । ତାଙ୍କର ଚାଲିଚଳନ ସାଧାରଣ ମଣିଷଙ୍କଠାରୁ ଭିନ୍ନ । ମାତ୍ର ଇଏ ଏତେ ଅସ୍ୱାଭାବିକ ସ୍ୱପ୍ନବିଳାସୀ ଯେ ତାଙ୍କର ହାବଭାବ କେବଳ ଅସାଧାରଣ ନୁହେଁ, ଅଜବ ମଧ୍ୟ ।

ଆଚ୍ଛା ସେ ଆଙ୍କିଥିବା ଚିତ୍ରସବୁକୁ ତମେ ଦେଖିଛ ନା ?

ଦେଖିଛି ମାନେ, ସେସବୁକୁ ପରା ଯତ୍ନରେ ସାଇତି ରଖିବା ଦାୟିତ୍ୱ ମୋର ଥିଲା । ଉଆସରେ ଗୋଟେ ଘର ପରା ଭର୍ତ୍ତି ହୋଇଛି ପେଣ୍ଟିଂରେ । ପୂର୍ବରୁ ବହୁଲୋକ ଆସି ତାଙ୍କ ପେଣ୍ଟିଂ ଦେଖି ତାରିଫ୍ କରୁଥିଲେ । ଦେଶ ବିଦେଶରୁ ବହୁ ବ୍ୟକ୍ତି ଆସି ତାଙ୍କର ଚିତ୍ରକୁ କିଣିବା ପାଇଁ ମଧ୍ୟ ପ୍ରଚୁର ଅର୍ଥ ଯାଚିଛନ୍ତି । ମାତ୍ର ସାନ ସାହେବଙ୍କର ଏକାଜିଦ୍, ସେ ତାଙ୍କର ପେଣ୍ଟିଂକୁ ବିକିବେ ନାହିଁ । ପେଣ୍ଟିଂ ସବୁ ତାଙ୍କ ପାଇଁ ପୁତ୍ରକନ୍ୟା ସଦୃଶ । ସେମାନଙ୍କୁ ସେ ବିକିପାରିବେ କିପରି । ତାଙ୍କର ଚିତ୍ରକଳାର ପ୍ରଦର୍ଶନୀ ପାଇଁ ବହୁ ପ୍ରସ୍ତାବ ଆସିଛି, ମାତ୍ର ସବୁଥର ସେ ତାକୁ ପ୍ରତ୍ୟାଖ୍ୟାନ କରି କହନ୍ତି, ପ୍ରଦର୍ଶନୀର ଅର୍ଥ ଆତ୍ମପ୍ରଚାର । ତା' ଛଡ଼ା ମୁଁ ଆଜିଯାଏ ଯାହା ଆଙ୍କିଛି, ସେଥିରେ କ'ଣ ମୁଁ ସନ୍ତୁଷ୍ଟ ହେଲେଣିକି ? ମୁଁ ଯେତେବେଳେ ସନ୍ତୁଷ୍ଟ ନୁହଁ, ତାକୁ ଅନ୍ୟମାନଙ୍କ ଆଗରେ ଉପସ୍ଥାପିତ କରି କିପରି ସନ୍ତୁଷ୍ଟ କରିପାରିବି ? ଏହା କ'ଣ ସାଧାରଣ ଚିତ୍ରପ୍ରେମୀମାନଙ୍କର ଆବେଗ ଓ ଶ୍ରଦ୍ଧାକୁ ପ୍ରତାରଣା କଲାଭଳି ହେବ ନାହିଁକି ? ମୁଁ ଅପେକ୍ଷା କରୁଛି ମୋର ମାଷ୍ଟରପିସ୍‌କୁ ଶ୍ରେଷ୍ଠତମ କୃତିକୁ, ଯେଉଁ ଦିନ ସେଇଟା ଅଙ୍କା ସରିବ, ସେଦିନ ମୋର ସମସ୍ତ ଚିତ୍ରକୁ ମୁଁ ସର୍ବସାଧାରଣଙ୍କ ଆଗରେ ଉପସ୍ଥାପନ କରିବି ।

ମୁଁ ମନେ ମନେ ଭାବିଲି ଯେ ଜଣେ ଶିଳ୍ପୀ କିପରି ଜାଣିବ ତା'ର ଶ୍ରେଷ୍ଠତମ କୃତିକୁ ? ଶ୍ରେଷ୍ଠତମର ଅପେକ୍ଷାରେ ତ ଗୋଟିଏ ପରେ ଗୋଟିଏ ଚିତ୍ର ଜନ୍ମ ନିଏ । ଚିତ୍ରଟିଏ ଆଙ୍କି ସାରିବା ପରେ ଶ୍ରେଷ୍ଠତମର ସନ୍ତୁଷ୍ଟି ଆସେ ନାହିଁ ବୋଲିତ ଶିଳ୍ପୀଟି ଆଙ୍କି ବସେ ଆଉ ଗୋଟେ ଚିତ୍ର । କେବଳ ସନ୍ଧାନରେ ଥାଏ ଶ୍ରେଷ୍ଠତମର । କୌଣସି ଶିଳ୍ପୀର ଜୀବଦ୍ଦଶାରେ କ'ଣ ଆସିପାରେ ଶ୍ରେଷ୍ଠତମ କୃତିର ସନ୍ତୋଷ ! ଶ୍ରେଷ୍ଠତମର ଅନ୍ୱେଷାରେ ସେ ଯାହା ଆଙ୍କିଥାଏ, ତା'ର ମୃତ୍ୟୁପରେ ସେଥିରୁ କେଉଁ ଗୋଟିକୁ ମିଳେ ଶ୍ରେଷ୍ଠର ଆଖ୍ୟା । ସେକଥା ଜାଣିବା ବା ଶୁଣିବା ପାଇଁ ଶିଳ୍ପୀଟି ନଥାଏ । ଯଦି ଶିଳ୍ପୀଟି ଜାଣି ପାରୁଥାଆନ୍ତା, ଏଇଟି ତା'ର ଶ୍ରେଷ୍ଠତମ କୃତି ବୋଲି ତେବେ ତାହାପରେ ତା'ର ଆଉ ଆଙ୍କିବାର ଆବଶ୍ୟକତା ରହନ୍ତା କି ?

ମନର ଭାବ ମନରେ ରଖି ପଚାରିଲି – ଆଚ୍ଛା ସାନସାହେବ କ'ଣ ସବୁଦିନ ଏହିପରି ?

ନା – ନା, ଆଗରୁ ଏପରି ନଥିଲେ । ପୂର୍ବରୁ ତ ସେ ବହୁତ ଖୁସି ମିଜାଜର ମଣିଷ ଥିଲେ । ଚିତ୍ରଟିଏ ସରିଗଲା ପରେ ଡାକ ଛାଡ଼ିବେ – ବିଶୁ, ବିଶୁ, ଆ, ଆ

ଦେଖିବୁ ଆ । ମୁଁ ଆସି ତାଙ୍କ ପାଖରେ ପହଞ୍ଚିବା ବେଳକୁ ସେ ଖୁସିରେ ବଜାଉଥିବେ ସୁସୁରି । ଆଙ୍କିଥିବା ଚିତ୍ରକୁ ଦେଖାଇ ମୋତେ ପଚାରିବେ - କହ, କେମିତି ହୋଇଛି ? ମୁଁ ବା ସେ ଚିତ୍ରରୁ କ'ଣ ବୁଝିପାରିବି । ଯେତେ ନିରିଖେଇ ଦେଖିଲେ ବି ବୁଝିପାରେନା ସେ ଚିତ୍ରର ବିନ୍ଦୁ ବିସର୍ଗ । ସେ କ'ଣ କେଉଁ ଗୋଟାଏ ଜିନିଷର ଚିତ୍ର ହୋଇଛି ଯେ ଅବିକଳ ଦେଖାଯାଉଛି ବୋଲି ଭଲ କହିଦେବି । କେବଳ କହେ - ସାନ ସାହେବ ଆଙ୍କିଛନ୍ତି, ଦୁନିଆସାରା ଭଲ କହୁଛନ୍ତି, ମୁଁ ବା କ'ଣ ଅଧିକ କହିବି ।

ସେଦିନ ସେ ଖୁବ୍ ହାଲ୍କା ଲାଗନ୍ତି । ମନପସନ୍ଦର ଖାଦ୍ୟ ଖାଇବା ପାଇଁ ବରାଦ କରନ୍ତି । ତାଙ୍କର ଏହି ଉଲ୍ଲାସପଣ ରହେ କିଛିଦିନ ଧରି । ସେ ବୁଲନ୍ତି ଫାର୍ମ ହାଉସ୍ ସାରା । କଥା ହୁଅନ୍ତି ଗଛ, ପତ୍ର, ଆକାଶ ସହ । ଏହା ଲାଗିରହେ ଆଉ ଗୋଟେ ଚିତ୍ର ଆଙ୍କିବାର କାଳିଶି ନଲାଗିବା ଯାଏ । ମାତ୍ର ଏବେ କେଉଁ ଗୋଟେ ଚିତ୍ରର କାଳିଶି ତାଙ୍କୁ ଲାଗିଚି ଯେ ମୁଁ ଜମା ଜାଣିପାରୁନି । ମାସ ମାସ, ବର୍ଷ ବର୍ଷ ଧରି ସେ ବସିଛନ୍ତି ଯେ ବସିଛନ୍ତି । କଥା ନାହିଁ କି ବାର୍ତ୍ତା ନାହିଁ, ଖିଆ ନାହିଁକି ପିଆ ନାହିଁ, ଲାଗୁଛି ସେ ଯେମିତି ଏ ଜଗତରୁ ଊର୍ଦ୍ଧ୍ୱରେ ଅନ୍ୟ କେଉଁ ଜଗତରେ ଅଛନ୍ତି । ଯାହା ବି ହେଲା କିଛି ଆଙ୍କୁଥାଆନ୍ତେ କି ମୁଁ ଜାଣନ୍ତି ଆଜି ନ ହେଲା କାଲି, ମାସେ ନହେଲେ ବର୍ଷ ପରେ ସରିବ । ହେଲେ ଏମିତି ଶୂନ୍ୟ କାନ୍‌ଭାସ୍ ଆଗରେ ବର୍ଷ ବର୍ଷ ବସିଲେଣି ଯେ ମୋତେ ଲାଗୁଛି ସେ ଚିରକାଳ ଏମିତି ବସିଥିବେ ।

ବିଶୁଠାରୁ ଏକଥା ଶୁଣିବା ପରେ ମୁଁ ଆଉ ଚାହିଁଲି ନାହିଁ ସିଧାସଳଖ ତାଙ୍କୁ ଭେଟିବା ପାଇଁ । କେବଳ ଅନୁରୋଧ କଲି ଫାର୍ମ ହାଉସ୍‌ରେ କିଛିଦିନ ରହିବାକୁ ଅନୁମତି ଦେବାକୁ, ଯାହା ଫଳରେ ମୁଁ ତାଙ୍କୁ ଦୂରରୁ ଥାଇ ଅନୁଧ୍ୟାନ କରିପାରିବି ।

ବିଶୁ ମୋତେ ପଚାରିଲା - ଆପଣ ବି କ'ଣ ଜଣେ ଶିଳ୍ପୀ? ହଁ, ମୁଁ ଚିତ୍ର ଆଙ୍କେ, ହେଲେ ସାନସାହେବଙ୍କ ପରି ଏତେ ବଡ଼ ଶିଳ୍ପୀ ନୁହଁ ।

ହଉ ଠିକ୍ ଅଛି - ଆପଣ ଏଠାରେ ରୁହନ୍ତୁ, କ'ଣ ଅନୁଧ୍ୟାନ କରିବାର ଅଛି କରନ୍ତୁ । ହେଲେ ତାଙ୍କୁ ଡିଷ୍ଟର୍ବ କରିବେ ନାହିଁ ।

ନା - ନା, ତମେ ସେଥିପାଇଁ ନିଃସନ୍ଦେହ ରହିପାର ।

ମାତ୍ର ମୋର ଅନୁଧ୍ୟାନ ପୂର୍ବରୁ ମୋ ଉପସ୍ଥିତିକୁ ସେ ଜାଣିପାରିଲେ । ସେଦିନ ରାତ୍ରିଭୋଜନ ସମୟକୁ ବିଶୁ ହାତରେ ଖବର ଦେଲେ ତାଙ୍କ ସହ ସାକ୍ଷାତ ପାଇଁ ।

ବିଶୁଠାରୁ ଖବର ପାଇ ମୁଁ ଖୁସି ଯେତିକି ହେଲି, ମନେ ମନେ ପ୍ରମାଦ ମଧ୍ୟ ସେତିକି ଗଣି ତାଙ୍କ କୋଠରିକୁ ଗଲି । ମୋର ଉପସ୍ଥିତିକୁ ଉପଲବ୍ଧି କରି କାନ୍‌ଭାସ୍ ଉପରୁ ଆଖି ନ ଫେରାଇ ସେ କହିଲେ - ବସନ୍ତୁ ।

ମୁଁ ଜାଣେ ଆପଣ ଜଣେ ଶିଳ୍ପୀ । ଆପଣ ଯେବେଠାରୁ ଉଆସରେ ଅଛନ୍ତି, ସେବେଠୁ ଖବର ପାଇଛି । ଜାଣିଥିଲି ଆପଣ ନିଶ୍ଚୟ ଏଠାକୁ ଆସିବେ ବୋଲି, ମାତ୍ର କେବେ ଆସୁଛନ୍ତି ସେଥିପାଇଁ ଅପେକ୍ଷା କରୁଥିଲି ।

କେମିତି ଜାଣିଲେ ?

ଜଣେ ଶିଳ୍ପୀର ଚେତନା ଯେଉଁଠି ପରାହତ ହୁଏ, ଆଉ ଜଣେ କେହି ଆସି ତାକୁ ସେଠାରୁ ଉଧାର କରେ - ସେ ସମଧର୍ମୀ ହୋଇପାରନ୍ତି ବା ଈଶ୍ୱର ।

ଚେତନାର ପରାହତ ?

ହଁ, ମୁଁ ଯେଉଁ ଚିତ୍ର ଆଙ୍କିବାକୁ ଚାହୁଁଛି, ତା'ର ରଙ୍ଗର ସମନ୍ୱୟ ପାଇଁ ମୁଁ ବସି ରହିଛି ମାସ ମାସ, ବର୍ଷ ବର୍ଷ ଧରି ଏ ଶୂନ୍ୟ କାନ୍‌ଭାସ ଆଗରେ । ମୁଁ ଆଙ୍କିବାକୁ ଚାହୁଁଥିବା ଚିତ୍ରର ରୂପରେଖ ତ ମୁଁ ତିଆରି କରିସାରିଛି, ହେଲେ କେବଳ ସନ୍ଧାନ କରୁଛି ରଂଗର ।

କ'ଣ ସେ ଚିତ୍ରର ରୂପରେଖ ?

ମାୟା । ମାୟାର ବ୍ୟାପକ ରୂପ । ସେଠି ପ୍ରେମ ଥିବ, ଅହଂକାର ଥିବ, ଶୂନ୍ୟତା ଥିବ ।

ଯଥେଷ୍ଟ ବିନୟଭାବ ଦେଖାଇ ମୁଁ କହିଲି - ଏସବୁ ହେଉଛି ଅନୁଭବ ଓ ଚେତନାର ବିଷୟ । ଜଣେ ଶିଳ୍ପୀ ନିଜର ଅନ୍ତର୍ଦୃଷ୍ଟି ଓ ଚେତନାର ଗଭୀରତା ଅନୁଯାୟୀ ଏ ରଂଗର ପରିକଳ୍ପନା କେବଳ କରିପାରେ । କାରଣ ପ୍ରକୃତିର ଦୃଶ୍ୟମାନ ବସ୍ତୁଙ୍କୁ ଛାଡ଼ିଦେଲେ ସବୁତ କଳ୍ପନା ଉପରେ ପର୍ଯ୍ୟବସିତ ହୋଇ ରଂଗାୟିତ ହୋଇଥାଏ ।

ଆକାଶ ତ ଦୃଶ୍ୟମାନ ବସ୍ତୁନୁହେଁ, ତେବେ ଆକାଶର ରଂଗ ନୀଳ କାହିଁକି ? ପ୍ରଶ୍ନଟି ପଚାରି ସାରି ସାଂଗେ ସାଂଗେ କହିଲେ - ମୁଁ ଜାଣେ ଆପଣ ଏହାର ଏକ ବିଜ୍ଞାନସମ୍ମତ କାରଣ ଦେଇପାରିବେ । ମାତ୍ର ମନେରଖନ୍ତୁ ଯେଉଁଠି ବିଜ୍ଞାନର ସମସ୍ତ ତତ୍ତ୍ୱ ଓ ସିଦ୍ଧାନ୍ତ ପରାହତ ହୁଏ, ସେଠି କଳ୍ପନା ଓ ଅନ୍ତର୍ଦୃଷ୍ଟିର ସହାୟତା ନିଏ ମଣିଷ । ଲାଜର ରଂଗ ଲାଲ, ରାଗର ରଂଗ ଲାଲ୍, ରକ୍ତର ରଂଗ ଲାଲ୍, ହେଲେ ସବୁ ଲାଲ ରଂଗ କ'ଣ ସମାନ ? ଏ ତିନୋଟିକୁ ରଂଗେଇଲା ବେଳେ ଶିଳ୍ପୀଟିଏ ନିଜର କଳ୍ପନା ମିଶାଇ ରଂଗର ଗାଢ଼ତ୍ୱ ନିରୂପଣ କରେ । ଶିଳ୍ପୀଟିଏ କେବଳ ରଂଗ ଓ ତୂଳୀରେ

ଖେଳେ ନାହିଁ, ରଂଗ ହେଉଛି ଶିଳ୍ପୀର ଚେତନାର ପରିପ୍ରକାଶ, ତୂଳୀ ହେଉଛି ମାଧ୍ୟମ ଓ କାନ୍‌ଭାସ୍ ହେଉଛି ଆଧାର । ମୋ ପାଖରେ ମାଧ୍ୟମ ଓ ଆଧାର ଥାଇ ମଧ୍ୟ ମୁଁ ଦିନ ଦିନ, ମାସ ମାସ ଧରି ଯେମିତି ଶୂନ୍ୟ କାନ୍‌ଭାସ ସାମ୍ନାରେ ବସିରହିଛି, ମୋତେ ଯିଏ ଦେଖିବ ନିଶ୍ଚୟ ପାଗଳ ବୋଲି ଭାବିବ । ବିକ୍ଷିପ୍ତ ଚେତନା ପାଗଳପଣ ହେଲେ ଚେତନାର ପରାହତ ଅବସ୍ଥା ମହାପାଗଳ ପଣ । ଆପଣଙ୍କର ଏ ଅନୁଭବ ଆସିଛି କି ନାହିଁ ମୁଁ ଜାଣେନା । ମାତ୍ର ପ୍ରତ୍ୟେକ ଶିଳ୍ପୀ ଭିତରେ ଏ ଅନୁଭବ ଦିନେ ନା ଦିନେ ଆସିବାକୁ ବାଧ୍ୟ । ହୁଏତ ତାହା ସାଧନା କରୁ କରୁ ଆସିପାରେ କିମ୍ବା ତାହା ପାଇଁ ସାଧନା କରିବାକୁ ପଡ଼ିପାରେ । ହଁ - ଆପଣ ଯେଉଁକଥା କହୁଥିଲେ, ଦୃଶ୍ୟମାନ ବସ୍ତୁକୁ ଛାଡ଼ିଦେଲେ ଅନ୍ୟସବୁକୁ କଳ୍ପନାର ରଂଗ ଦେବାକୁ ପଡ଼େ ତାହା ଠିକ୍ କଥା । ହେଲେ ଦୃଶ୍ୟମାନ ବସ୍ତୁକୁ ଆଙ୍କିବାର କାମ ହେଉଛି ଚିତ୍ରକରର, ଶିଳ୍ପୀର ନୁହଁ । ଆପଣଙ୍କର ଅନ୍ୱେଷା ଚିତ୍ରକରର ନା ଶିଳ୍ପୀର ?

ଏ ପ୍ରଶ୍ନଟି ମୋତେ ଛିଡ଼ା କରାଇଲା ଏକ ଚରମ ଦ୍ୱନ୍ଦ୍ୱରେ । ଏହାର ଉତ୍ତରଟି ଯେ ମୋତେ ଅଜଣା ଥିଲା ସେଥିପାଇଁ ନୁହଁ, ବରଂ କଳାକୁ ମାଧ୍ୟମ କରି ମୁଁ ଖୋଜୁଥିବା ଜିଇଁବାର ରାସ୍ତାଟି ପାଇଁ । କଳାକୁ ବୃତ୍ତି କରି ଜିଇବାର ପ୍ରୟାସ ସେ ମୁହୂର୍ତ୍ତରେ ମୋତେ ଏତେ ଘୃଣ୍ୟ ଲାଗିଲା ଯେ ତାକୁ ପ୍ରକାଶ କରି ମୁଁ ଆଉଥରେ ନ୍ୟୁନ ହେବାକୁ ଚାହିଁଲି ନାହିଁ ।

ମୋର ନୀରବତାକୁ ଲକ୍ଷ୍ୟ କରି ସେ କହିଲେ - ପ୍ରତ୍ୟେକ କଳା ଜୀବନକୁ ଦେଖିବାର ଏକ ମାଧ୍ୟମ ମାତ୍ର, ଜିଇବାର ଅବଲମ୍ବନ ନୁହେଁ । ଜୀବନ ଜିଇବାକୁ ଏତେ ବାଟ ଥିବାବେଳେ କଳାକୁ ପାଥେୟ କରିବା କଳା ପାଇଁ ଅପମାନ ନୁହେଁ କି ? କଳାକୁ ଅର୍ଥ ରୋଜଗାର କରିବାର ମାଧ୍ୟମ କରିଦେଲେ ସେ ତା'ର କଳାତ୍ମକ ଦିଗଟିକୁ ହରାଇ ବ୍ୟବସାୟିକ ଦୃଷ୍ଟିଭଂଗୀକୁ ଆଦରି ନିଏ । ଯେଉଁଠି କଳାର ବ୍ୟବସାୟ ପ୍ରାଧାନ୍ୟ ବିସ୍ତାର କରେ, ସେଠାରେ ସୃଜନଶୀଳତାର ମୃତ୍ୟୁ ହୁଏ । ଈଶ୍ୱର ଯେଉଁ ବିରଳ ପ୍ରତିଭାଟି ଆପଣଙ୍କୁ ଦେଇଛନ୍ତି ତାକୁ ବାଣିଜ୍ୟିକରଣ କରି ତା'ର ଅବମାନନା କରିବା ଠିକ୍ ହେବ ବୋଲି ଆପଣ ଭାବୁଛନ୍ତି କି ?

ମୋଠାରୁ କୌଣସି ଉତ୍ତର ନ ପାଇ ସେ ପୁଣି କହିଲେ - ଲୋକେ ମୋତେ ପାଗଳ ବୋଲି ଭାବୁଛନ୍ତି । ଭାବିବା ମଧ୍ୟ ସ୍ୱାଭାବିକ, କାରଣ ମୁଁ ଗୋଟେ ଶୂନ୍ୟ କାନ୍‌ଭାସ୍ ଆଗରେ ବର୍ଷବର୍ଷ ହେଲା ବସି ରହିଛି ଚିତ୍ରଟିଏ ଆଙ୍କିବା ପାଇଁ । ସାଧାରଣ ଲୋକଙ୍କ ଆଖିରେ ତାହା ଶୂନ୍ୟ କାନ୍‌ଭାସ୍, ମାତ୍ର ପ୍ରକୃତରେ ତାହା ଶୂନ୍ୟ କାନ୍‌ଭାସ୍

ନୁହଁ । ସୂର୍ଯ୍ୟଙ୍କଠାରୁ ଉଛରିତ ସାତରଂଗ ପୃଥିବୀରେ ପହଞ୍ଚିବା ବେଳକୁ ମିଶିଯାଇ ଯେପରି ରଂଗଶୂନ୍ୟ ହେଉଛନ୍ତି, ସେହି ତତ୍ତ୍ୱରେ ମୋର ଚିତ୍ର । ଏକ ନିର୍ଦ୍ଦିଷ୍ଟ ଦୂରତାରୁ କାନ୍‌ଭାସଟି ଜଣାପଡ଼ିବ ଶୂନ୍ୟ, ମାତ୍ର ସେ ଦୂରତା ଡେଇଁ ସେ ଚିତ୍ରର ଦୃଶ୍ୟବଳୟ ମଧ୍ୟକୁ ପଶିଲେ ଧୀରେ ଧୀରେ ଗୋଟିଏ ପରେ ଗୋଟିଏ ରଂଗ ଆସିବ ଆଖିର ସାମ୍ନାକୁ । ପାଖରେ ପହଞ୍ଚିଲେ ଯାଇ ଦେଖିହେବ ସାତରଂଗର ସମାହିତ ସେ ଚିତ୍ରକୁ । ସାଧାରଣ ଦର୍ଶକମାନଙ୍କଠାରୁ ଯେଉଁ ଦୂରତାରେ ମୁଁ ସେ ଚିତ୍ରକୁ ରଖିଛି, ସେ ଦୂରତା ହେଉଛି ଏ ସଂସାରର ମାୟା । ମାୟାର ଦୂରତ୍ୱ ଅତିକ୍ରମ କଲେ ଯାଇ ସତ୍ୟର ସନ୍ଧାନ ମିଳିବ ।

ରଂଗରେ ରଂଗରେ ମାୟାବାଦକୁ ଉପସ୍ଥାପନା କରିବା ମୋର ଲକ୍ଷ୍ୟ ଥିଲା ମାତ୍ର ପ୍ରେମ, ଅହଂକାର ଓ ଶୂନ୍ୟତାକୁ ରଂଗ ଦେବାରେ ମୋର ଚେତନା ବାରମ୍ବାର ପରାହତ ହୋଇ ଚାଲିଛି । ଆପଣ ଜଣେ ଶିଳ୍ପୀର ଆବେଗ ନେଇ ଆସିଛନ୍ତି । ସେହି ନିର୍ଦ୍ଦିଷ୍ଟ ଦୂରତାର ପରିଧି ଭାଂଗି ମୁଁ ନେଇଯିବି ମୋ କାନ୍‌ଭାସ୍ ନିକଟକୁ ଆପଣଙ୍କୁ । ମୁଁ ଆଶା କରୁଛି ମୋର ପରାହତ ଚେତନାକୁ ଜାଗ୍ରତ କରି ଆପଣ ସହାୟକ ହେବେ ମୋର ଚିତ୍ରଟିକୁ ସମ୍ପୂର୍ଣ୍ଣ କରିବାରେ ।

ମୁଁ ବଡ଼ ବିନମ୍ରତାର ସହ କହିଲି - ମୋର ଆଜିଯାଏଁ କେବଳ ଜଣେ ଚିତ୍ରକରର ଆଖି ରହିଛି । ଶିଳ୍ପୀର ଆଖି ଏଯାଏଁ ଆସିନି । ସେ ଆଖି ପାଇବାକୁ ମୋତେ କଠୋର ସାଧନା କରିବାକୁ ପଡ଼ିବ । ଯଦି ସେ ସାଧନାରେ ମୁଁ ସଫଳ ହୁଏ, ତେବେ ନିଶ୍ଚୟ ଫେରିବି ଆପଣଙ୍କ ପାଖକୁ ଏବଂ ସେହି ନିଷିଦ୍ଧ ଦୂରତାକୁ ଅତିକ୍ରମ କରି ପହଞ୍ଚିବି ଆପଣଙ୍କ ଶୂନ୍ୟ କାନ୍‌ଭାସ ପାଖରେ ।



# ତଥାସ୍ତୁ

ଟୁର୍ ଯିବେ ବୋଲି ତରବରରେ ବାଥ୍‌ରୁମ୍‌କୁ ଯାଉ ଯାଉ ପଡ଼ିଗଲେ ବାପା । ଆମେ ଦୌଡ଼ିଯାଇ ଉଠାଇଲା ବେଳକୁ ତାଙ୍କର ଚେତା ନଥିଲା । ଡାକ୍ତରଖାନା ନେବା ପରେ ଜଣାପଡ଼ିଲା ପକ୍ଷାଘାତ । ପକ୍ଷାଘାତ – କେବେ ଭଲ ହେବ ଠିକ୍ ନଥିଲା । ତେଣୁ ଅନିର୍ଦ୍ଦିଷ୍ଟ କାଳଯାଏ ଛୁଟିରେ ରହିଲେ । ଆଠମାସ ମଧ୍ୟରେ ଅର୍ଜିତ ଛୁଟି ସରିଗଲା । ଏହି ଛୁଟି ସମୟରେ ବାପାଙ୍କର ଭଲ ହେବା କହିଲେ ସମ୍ପୂର୍ଣ୍ଣ ଅଚଳ ଥିବା ହାତଟି ଅଧା ଉଠୁଥିଲା ଓ ବାଡ଼ି ସାହାଯ୍ୟରେ ଘୋଷାରି ଘୋଷାରି ହୋଇ ଚାଲି ପାରୁଥିଲେ । ଡାକ୍ତରମାନେ ଆଶ୍ୱସନା ଦେଇ କହୁଥାନ୍ତି – ଖୁବ୍ ଭଲ ଇମପ୍ରୁଭ୍‌ମେଣ୍ଟ ହୋଇଛି । ଆଉ କିଛିଦିନ ମ୍ୟାସେଜ ଓ ଏକସରସାଇଜ୍ ପରେ ଯଦିଓ ସମ୍ପୂର୍ଣ୍ଣ ସୁସ୍ଥତା ନୁହେଁ ତଥାପି ନିଜ କାମ କଲାଭଳି ଦକ୍ଷତା ଚାଲିଆସିବ । ଅର୍ଜିତ ଛୁଟି ପରେ ଅଧାଦରମାର ମେଡିକାଲ – ଛୁଟିରେ ରହିଲେ କିଛି ଦିନ । ବାପା ଧୀରେ ଧୀରେ ସୁସ୍ଥ ଆଡ଼କୁ ଗତି କରୁଥିଲେ ସତ ମାତ୍ର ସୁସ୍ଥତାର ଲକ୍ଷଣ ଏମିତି ଦେଖାଯାଉ ନଥିଲା କି ପୁଣି ତା'ଙ୍କ କାର୍ଯ୍ୟରେ ଯୋଗଦେଇ ଦାୟିତ୍ୱ ନିର୍ବାହ କରି ପାରିବେ । ତାଙ୍କର ଅଧାଦରମାର ଛୁଟି ମିଆଦ ସରି ସରି ଆସୁଥିଲା । ସେ ଯେତିକି ପରିମାଣରେ ସୁସ୍ଥ ହେଉଥିଲେ, ତାଙ୍କ ପାଇଁ ଡାକ୍ତରଖର୍ଚ୍ଚ, ଔଷଧ, ପଥ୍ୟ ଇତ୍ୟାଦିର ଖର୍ଚ୍ଚ ପୂରଣ କରୁ କରୁ ଆମ ପରିବାରର ଆର୍ଥିକ ଅବସ୍ଥା ସେହି ପରିମାଣରେ ରୁଗ୍‌ଣ ହୋଇ ଧୀରେ ଧୀରେ ପକ୍ଷାଘାତ ରୋଗୀ ଘୁଷୁରି ଘୁଷୁରି ଚାଲିବା ପରି ଅବସ୍ଥାକୁ ଆସୁଥିଲା ।

ପକ୍ଷାଘାତ ପୂର୍ବରୁ ଜି.ପି.ଏଫ୍ ଡ୍ର କରି ମୋ' ତଳ ଭଉଣୀ ବାହାଘର ସାରିଥିଲେ ବାପା । ତେଣୁ ସେଥିରୁ ଆଉ କିଛି ଉଠାଇବାର ସୁଯୋଗ ନଥିଲା । ବାପାଙ୍କର ଅବସ୍ଥା ଯଦି ଅନିର୍ଦ୍ଦିଷ୍ଟ କାଳଯାଏ ଲାଗି ରହେ, ତେବେ ଘର କେମିତି ଚଳିବ, ସାନ ଭାଇର ପାଠପଢ଼ା ଓ ପଢ଼ା ବନ୍ଦ କରି ଘରେ ବସିଥିବା ସାନଭଉଣୀର ବାହାଘର କେମିତି ହେବ ସେହି ଚିନ୍ତାରେ ମୁଁ ଥିଲି ଅସ୍ଥିର । ବାପାଙ୍କ ପଇସା ଶ୍ରାଦ୍ଧ କରି ଏମ୍.ଏ. ଯାଏ

ପଢ଼ିଲି; ବି.ଇଡି.ଟା କରିଦେଲେ ଅନ୍ତତଃପକ୍ଷେ ଶିକ୍ଷକ ଚାକିରିଟାଏ ମିଳିଯିବ ଭାବି ସେଟା’ ବି କଲି; ମାତ୍ର ପ୍ୟାନେଲ୍‌ରେ ନାଆଁ ଆସିବ ବୋଲି ଅପେକ୍ଷା କରି କରି ବୟସ ସରିବା ଉପରେ । କିଛି କୂଳକିନାରା ଧରିନି ବୋଲି ମୁଁ ଜମା ରାଜି ହେଉ ନଥିଲି କିନ୍ତୁ ବାପାଙ୍କର ଏକାନ୍ତ ଜିଦ୍‌ରେ ବାଧ୍ୟ ହେଲି ବେକାରୀ ସମୟରେ ମଧ୍ୟ ବିବାହ ପରି ଏକ ଗୁରୁଦାୟିତ୍ୱ ବହନ କରିବାକୁ । ବିବାହ କରି ସଂସାର ବଢ଼ାଇ ପାରିଛି ସତ; ମାତ୍ର ରୋଜଗାର କରି ସଂସାରକୁ ସାହାଯ୍ୟ କଲାଭଳି କିଛି କରିପାରିନି ।

ଆଜି ଏ ଚିଠି - ବାପାଙ୍କ ଅସୁସ୍ଥତା ପାଇଁ ମୁଁ ରିସିଭ୍ କରିସାରିବା ପରେ ଆଗ୍ରହ ସହକାରେ ଖୋଲି ପଢ଼ିଲି । ଦୁଇ ଧାଡ଼ିର ଚିଠିଟି “ଆପଣ ରୋଗାକ୍ରାନ୍ତ ହୋଇଥିବାରୁ ଅଫିସ୍ ର ଦାୟିତ୍ୱ ସମ୍ଭାଳିବାକୁ ଅକ୍ଷମ ବୋଲି ଆପଣଙ୍କ ଚରିତ୍ର ପଞ୍ଜିକାରେ ମତାମତ ଆସିଛି । ତେଣୁ ଆପଣଙ୍କୁ କାହିଁକି ବାଧ୍ୟତାମୂଳକ ଅବସର ଦିଆନଯିବ, ଏ ଚିଠି ପାଇବାର ପନ୍ଦରଦିନ ମଧ୍ୟରେ ନିମ୍ନ ସ୍ୱାକ୍ଷରକାରୀଙ୍କୁ ଜଣାଇବେ । ଉତ୍ତର ନମିଳିଲେ ଧରି ନିଆଯିବ ଯେ ଆପଣଙ୍କର ସେ ସମ୍ପର୍କରେ କିଛି କହିବାର ନାହିଁ ଏବଂ ଆପଣଙ୍କୁ ବାଧ୍ୟତାମୂଳକ ଅବସର ଦେବା ପାଇଁ ବ୍ୟବସ୍ଥା କରାଯିବ ।”

ଚିଠିଟି ପଢ଼ିସାରିବା ପରେ ମୋତେ ଲାଗିଲା ମୁଁ ଯେମିତି ଧୀରେ ଧୀରେ ପକ୍ଷାଘାତରେ ଆକ୍ରାନ୍ତ ହୋଇଯାଉଛି । ବାପାଙ୍କୁ ବାଧ୍ୟତାମୂଳକ ଅବସର ଦେଇଦେଲେ ଘର ଚଳିବ କେମିତି ? ସାନଭାଇ ପାଠପଢ଼ା କେମିତି ସରିବ ? ଏବେ ଅଧାଦରମା ମିଳୁଛି ବୋଲି ଦୋକାନରେ ଧୀରେ ଧୀରେ ବାକି ବଢୁଥିବାରୁ ମୁହଁ ମୋଡ଼ିବା ଆରମ୍ଭ କଲେଣି । ବାପା ଅବସର ନେଇଗଲେ ସେମାନେ ନ ଚିହ୍ନିବା ପରି ମୁହଁ ମୋଡ଼ି ଦେବେ । ସେଥିରେ ପୁଣି ବାପାଙ୍କର ଏ ରୋଗ କେତେଦିନ ଯାଏ ଲାଗି ରହିଥିବ କିଏ ଜାଣେ ? ଔଷଧ ସାଙ୍ଗକୁ ଡାକ୍ତରୀ ଖର୍ଚ୍ଚ, କେଉଁଠୁ ଆସିବ କିଏ ଦେବ ? ଦରମା ପଇସାରେ ତ ଘର ଚଳିବା ମୁସ୍କିଲ ହେଉଥିଲା, ଏବେ ପେନ୍‌ସନ୍ କେତେ ଅବା ମିଳିବ ?

ଚିଠିଟି ବାପାଙ୍କୁ ଦେଖାଇବି କି ନାହିଁ ଚିନ୍ତା କଲି । ଭାବିଲି, ଚିଠି ଦେଖାଇ ଲାଭ କ’ଣ - ତା’ଙ୍କ ମନ ଅଯଥାରେ ଆହୁରି ଭାରାକ୍ରାନ୍ତ ହେବ । ନା - ଚିଠିଟି ତା’ଙ୍କୁ ନ ଦେଖାଇ ତାଙ୍କ ଅଫିସରଙ୍କୁ ପଚାରି ବୁଝିବି । କ’ଣ କରାଯାଇପାରିବ ବ୍ୟବସ୍ଥା କରିବି ।

ପରଦିନ ତା’ଙ୍କ ଅଫିସ୍ ଯାଇ ଅଫିସରଙ୍କୁ ଭେଟିଲି । ସେ ବାପାଙ୍କ ସ୍ୱାସ୍ଥ୍ୟ ବିଷୟରେ ମୋତେ ପଚାରି ଔପଚାରିକ ଅବସୋସ ଦେଖାଇଲେ । ମୁଁ ତା’ଙ୍କୁ ଉପର ଅଫିସରୁ ଆସିଥିବା ଚିଠିଟି ଦେଖାଇଲି ।

ଚିଠିଟି ଦେଖି ସାରି ସେ କହିଲେ, କ'ଣ ଆଉ କରାଯାଇ ପାରିଥାନ୍ତା । ପାରାଲିସିସ୍‌ରୁ ସୁସ୍ଥ ହେବାଟା କ'ଣ ଏତେ ସହଜ ? ସେଥିରେ ଆମ ଅଫିସ୍‌ର ଯେଉଁ ଫିଲଡ୍ କାମ ସେ ଯେ ଆଉ କରିପାରିବେ ଏ ଭରସା କ'ଣ କରିହେବ ? ତେଣୁ ବାଧ୍ୟତାମୂଳକ ଅବସର ଦେବା ପାଇଁ ମୁଁ ପ୍ରସ୍ତାବ ଦେଇଥିଲି ।

ମୁଁ ଆପଣଙ୍କ କଥା ବୁଝୁଛି - ମାତ୍ର ଏବେ ଆମ ପରିବାରର ଅବସ୍ଥା ଅତ୍ୟନ୍ତ ଶୋଚନୀୟ । ମୋର ତ ଏଯାଏ କେଉଁଠି କିଛି ହୋଇନି । ବାପା ହିଁ ଏକମାତ୍ର ରୋଜଗାରୀ ଥିଲେ ।

କ'ଣ ଆଉ କରାଯିବ ? କୌଣସି ଗୋଟିଏ ପରିବାର କଥା ଚିନ୍ତାକରି ଅଫିସ୍ କାର୍ଯ୍ୟ ତ ଆଉ ବନ୍ଦ୍ କରାଯାଇପାରିବ ନାହିଁ ? ସେ ଏହି ପୋଷ୍ଟରେ ଥିଲା ଯାଏ ସରକାର ଆଉ ଜଣକୁ ବି ପୋଷ୍ଟିଂ ଦେବେ ନାହିଁ । ତେଣୁ ବାଧ୍ୟ ହେଲି ତା'ଙ୍କୁ ଅବସର ଦେବା ପାଇଁ ରେକମେଣ୍ଡ କରିବା ପାଇଁ ।

ଆଚ୍ଛା - ଏବେ ଜଣେ ମେଡିକାଲ ଅନ୍‌ଫିଟ୍ ହେଲେ ତା'ଙ୍କ ପରିବାରର ଜଣକୁ ଚାକିରି ଦିଆଯାଉଛି କି ନାହିଁ ?

ସେ ବ୍ୟବସ୍ଥା ଆଗରୁ ଥିଲା, ଅନେକ ଦିନ ହେଲା ତାହା ଉଠିଗଲାଣି । ଏବେ କେବଳ ଚାକିରି ସମୟରେ ମୃତ୍ୟୁ ପାଇଁ ଯାହା ଅନୁକମ୍ପାମୂଳକ ଚାକିରି ବ୍ୟବସ୍ଥାଟିଏ ଅଛି ପରିବାରର ଜଣକ ପାଇଁ ।

ମନଦୁଃଖରେ ଫେରିଲି । ଫେରିବା ବାଟରେ ମୋତେ ଦେଖି ତା'ର ବାଜାଜ୍ ସନୀ ଗାଡ଼ି ଅଟକାଇ ନମସ୍କାର ହେଲା ପ୍ରତିମା ମିଶ୍ର । ଏକଦା ମୋ'ର ଟିଉସନ୍ ଛାତ୍ରୀ ଥିଲା । ବାପା ତା'ର ବ୍ଲକ୍‌ରେ ସମ୍ପ୍ରସାରଣ ଅଧିକାରୀ ଥିଲେ । ସରକାରୀ ଅର୍ଥ ହେରଫେର କରି ଅଡିଟ୍ ସମୟରେ ମାନସିକ ସନ୍ତୁଳନ ହରାଇ ଆତ୍ମହତ୍ୟା କରିଦେଲେ । ତା'ଙ୍କ ମୃତ୍ୟୁଜନିତ ଅନୁକମ୍ପା ପାଇଁ ବ୍ଲକରେ କିରାଣୀ ହୋଇଛି ପ୍ରତିମା ।

ମୁଁ ତା'କୁ ପଚାରିଲି - କୁଆଡ଼େ ଯାଉଥିଲୁ ?

ଅଫିସ୍‌କୁ ।

ଆରେ ହଁ - ମୁଁ ଭୁଲି ଯାଇଥିଲି ତୁ ଚାକିରି କରୁଛୁ ବୋଲି । ଆଚ୍ଛା ଏବେ ତମ ଘର ଖବର ସବୁ ଭଲ ତ ? ବାପାଙ୍କ ଦେହ ଖରାପ ପରେ ମୁଁ ବାହ୍ୟ ଜଗତରୁ ଏକ ରକମ ବିଚ୍ଛିନ୍ନ ହୋଇଯାଇଛି କହିଲେ ଚଳେ । କାହାରି ଖବର ଭଲମନ୍ଦ ଜାଣି ପାରୁନି ।

ଘର ଖବର ଏକ ରକମ ଭଲ ।

ବାପାଙ୍କର ଯାହା ଯାହା ମିଳିବାର ଥିଲା ମିଳିଗଲା ତ ?

ହଁ - ଜି.ପି.ଏଫ୍ ଗ୍ରାଚ୍ୟୁଇଟି ଓ ଏଲ୍.ଆଇ.ସି., ଟଙ୍କା ମିଳିଗଲା । ଏ ଦୁଇ ମାସ ହେବ ବୋଉର ପେନ୍‌ସନ୍ ମଧ୍ୟ ମିଳିଗଲାଣି । ମୁଁ ଯେହେତୁ ଚାକିରି କଲି, ସାନଭଉଣୀ ନାଆଁରେ ଜି.ପି.ଏଫ୍., ଗ୍ରାଚ୍ୟୁଇଟି ଓ ଏଲ୍.ଆଇ.ସି. ଟଙ୍କାକୁ ଜମା ରଖି ଦିଆଗଲା ତା' ବାହାଘର ପାଇଁ । ବୋଉର ପେନ୍‌ସନ୍‌ରେ ଘର ଚଳିଯାଉଛି । ମୋ ଦରମା ଖର୍ଚ୍ଚର ଆବଶ୍ୟକକତା ପଡୁନି ।

ମୁଁ ମନେ ମନେ ଭାବିଲି - ଯଦି ବାଧ୍ୟତାମୂଳକ ଅବସର ପୂର୍ବରୁ ବାପାଙ୍କର ମୃତ୍ୟୁ ହୋଇଯାଆନ୍ତା ତେବେ ଆମର ଅବସ୍ଥା ମଧ୍ୟ ସୁଧୁରି ଯାଆନ୍ତା । ମୋତେ ଆରାମ୍‌ରେ ଚାକିରି ଖଣ୍ଡେ ମିଳିଯାଆନ୍ତା । ମୋ' ଦରମା ଓ ବୋଉର ଫ୍ୟାମିଲି ପେନ୍‌ସନ୍‌ରେ ଘର ଆରାମରେ ଚଳନ୍ତା । ବାପାଙ୍କ ଜି.ପି.ଏଫ୍, ଗ୍ରାଚ୍ୟୁଇଟି, ଏଲ୍.ଆଇ.ସି. ଫେଲାଇସି ଯାହା ମିଳନ୍ତା ସେଥିରେ ସାନଭଉଣୀଟାକୁ ଉଠାଇ ଦେଇ ହୁଅନ୍ତା । ଘରର ନକ୍‌ସା ବଦଳିଯିବା ସହ ଆଉ ଅଭାବ ବୋଲି ଏତେ ରହନ୍ତା ନାହିଁ । ବାପା ତା'ଙ୍କ ଜୀବନକାଳ ମଧ୍ୟରେ ପରିବାରକୁ ଯେତିକି ସ୍ୱାଚ୍ଛନ୍ଦ୍ୟ ଦେଇପାରି ନାହାନ୍ତି ତା'ଙ୍କ ମୃତ୍ୟୁରେ ଅନ୍ତତଃ ସେତିକି ସୁଯୋଗ ମିଳିଯାଆନ୍ତା । ହେଲେ ମୃତ୍ୟୁ କ'ଣ କାହାର ହାତର କଥା ? ତା' ସମୟ ଯେତେବେଳେ ହେବ ସେ ଆସିବ । ହେଲେ ଆସିବ ଯେ ଧରି ନିଆଯାଉ ବାପାଙ୍କଠାରୁ ଏ ଚିଠିର ଉତ୍ତର ଗଲା ନାହିଁ । ତେଣୁ କର୍ତ୍ତୃପକ୍ଷ ତା'ଙ୍କୁ ଅବସର ଦେବା ପାଇଁ ବ୍ୟବସ୍ଥା କରିବେ । କେତେଦିନ ଲାଗିବ ଏଥିପାଇଁ । ମାସେ ଖଣ୍ଡେ ତ । ଏ ମାସଟିଏ ମଧ୍ୟରେ ବାପା କ'ଣ ମରିଯିବେ ? ନା ଆଶା ନୁହଁ । ସେ ତ ଟିକେ ଟିକେ ସୁସ୍ଥତା ଆଡ଼କୁ ଗତି କରୁଛନ୍ତି । ପକ୍ଷାଘାତ ରୋଗୀମାନେ ଘୋଷାରି ଘୋଷାରି ହୋଇ ବହୁଦିନ ଯାଏ ବଞ୍ଚନ୍ତି ମଧ୍ୟ । ଏମିତି ଘୋଷାରି ଘୋଷାରି ହୋଇ ବଞ୍ଚି ସେ କ'ଣ କରିବେ ? ପରିବାରରେ ଅଭାବ ଯେମିତି ଲାଗି ରହିଛି ତା'ଙ୍କ ପ୍ରତି ଅନାଦର ବଢ଼ିବା ସ୍ୱାଭାବିକ । ତାଙ୍କର ରୋଗ ଓ ଔଷଧ ପ୍ରତି ଧ୍ୟାନ ଦିଆଯାଇପାରିବ ନାହିଁ । ଧୀରେ ଧୀରେ ତା'ଙ୍କର ପଙ୍ଗୁତ୍ୱ ବୃଦ୍ଧି ପାଇବ । ତା'ଙ୍କୁ ଟେକି ଛାଡ଼ା, ପରିଶ୍ରା କରାଇବାକୁ ନେବାବେଳେ ନାକ ଟେକୁଥିବେ ବୋହୂ ଝିଅ ଓ ସ୍ତ୍ରୀ ମଧ୍ୟ । ସେମିତି ଅନାଦର ଦେଖିବା ପୂର୍ବରୁ ତାଙ୍କର ମରିଯିବାଟା ଉଚିତ୍ ହେବ ନାହିଁ କି ?

ମରିଯିବା ଉଚିତ୍ ଯେ, ହେଲେ କେମିତି ମରିଯିବେ ? ମରଣକୁ ତ କେହି କେବେ ଭଲ ପାଏନା । ସେ ତ ଜାଣି ଜାଣି ଆଉ ମରିପାରିବେ ନାହିଁ । ଯଦି ତା'ଙ୍କୁ ମାରି ଦିଆଯାଏ.. ?

ନିଜ ମନ ଭିତରେ ଉଠୁଥିବା ଏ ପ୍ରଶ୍ନଟି ଏକ ବିଦ୍ୟୁତ୍ ଆଘାତ ପରି ମୁଣ୍ଡକୁ ଲାଗିଲା । ଭାବିଲି, ଛି - ମୁଁ ଏତେ କୃତଘ୍ନ ଓ ସ୍ୱାର୍ଥପର କିପରି ହେବି ? ବାପାଙ୍କୁ ମାରିବା ଚିନ୍ତାଟା କେବଳ ମୋ'ର ସ୍ୱାର୍ଥ ଜଡ଼ିତ ନୁହଁ ଏଥିରେ ପରିବାରର ସ୍ୱାର୍ଥ ମଧ୍ୟ ଜଡ଼ିତ । ଯଦି ଏମିତି ଏମିତି ବଞ୍ଚି ଧରିନିଅ ଚାରି ମାସ ପରେ ସେ ମରିଗଲେ କ'ଣ ହେବ ? ସେ ତ ଅବସର ନେଇ ସାରିଥିବେ । ତା'ଙ୍କ ଶୁଦ୍ଧିକ୍ରିୟା ପାଇଁ ଟଙ୍କା ଯୋଗାଡ଼ କରିବା ବି ମୋ' ପାଇଁ କାଠିକର ପାଠ ହେବ ।

ନିଜେ ବାପାଙ୍କୁ ନମାରି ଅନ୍ୟ କାହା ଦ୍ୱାରା ମରାଯାଇପାରିବନି ? ଡାକ୍ତରଙ୍କ ସହାୟତା ନେବି କି ? କ'ଣ ସହାୟତା ନେବି ? ପକ୍ଷାଘାତ ରୋଗୀ । ଭଲ ହେବାର ଆଶା ତ କମ୍, ତେଣୁ ଔଷଧରେ ଏପଟ ସେପଟ କରି କେମିତି ମରାଯାଇପାରିବ ଟିକେ ବ୍ୟବସ୍ଥା କରିପାରିବେ କି ? ଧର, ଡାକ୍ତର ରାଜି ହୋଇଗଲେ ଓ ଅନ୍ୟ କେହି ଜାଣିନପାରି ଏ କାମ ହୋଇଗଲା; ତଥାପି ତ ଡାକ୍ତର ଜାଣିବେ ମୁଁ ପିତୃହନ୍ତା ବୋଲି ! ଡାକ୍ତର କହୁଥିଲେ ପାରାଲିସିସ୍ ହେଲେ ହାର୍ଟଷ୍ଟ୍ରୋକ୍ ହେବାର ଯଥେଷ୍ଟ ସମ୍ଭାବନା ଥାଏ - ହେଇ ଯାଆନ୍ତାନି ଗୋଟେ ହାର୍ଟଷ୍ଟ୍ରୋକ୍ । ଆପେ ଆପେ ସବୁ କାମ ହୋଇଯାଆନ୍ତା । ଛେ' ବାଜେ କଥା, ମୋ' ଇଚ୍ଛାନୁସାରେ ଯଦି ସବୁ କାମ ହେଉଥାଆନ୍ତା, ମୋ'ର ଚାକିରି କରିବା ଇଚ୍ଛା କେବେଠୁଁ ପୂରଣ ହୋଇ ସାରନ୍ତାଣି ଆଉ ମୁଁ ଏବେ ବସି ଏ ସବୁ ଚିନ୍ତା କରୁନଥାନ୍ତି ।

ନା'... ହାତରୁ ସୁଯୋଗଟି ଖସିଯିବା ପୂର୍ବରୁ କିଛି ଗୋଟାଏ କରିବାକୁ ପଡ଼ିବ । ସ୍ଲୋ ପଏଜନ୍ ଦେଇ ହେବକି ? ସେଥିରେ କ'ଣ ହେବ ? ଧର, ନିର୍ଦ୍ଧାରିତ ସମୟ ଭିତରେ ବାପାଙ୍କର କିଛି ହେଲାନି । ତା'ଙ୍କୁ ଡାକ୍ତରଖାନା ନେବାକୁ ପଡ଼ିବ । ଚିକିତ୍ସା ଚାଲିବ । ଏକେ ତ ଏବେ ଘୋଷାରି ହେଉଛନ୍ତି । ପୁଣି ସେଥିରେ ଆହୁରି ଘୋଷରା ବଳିଯିବ । ଆଚ୍ଛା, ନିଦ ଔଷଧ ଓଭରଡୋଜ୍ ଦେଇଦେଲେ ? କ'ଣ ଗ୍ୟାରେଣ୍ଟି ଅଛି ସେଥିରେ ? ସମୟ ବହୁତ କମ୍ । ମାତ୍ର ପନ୍ଦର ଦିନ । ଏହା ମଧ୍ୟରେ ମୃତ୍ୟୁ ପାଇଁ କୌଣସି ଦୀର୍ଘସୂତ୍ରୀ ଯୋଜନା ନୁହଁ; ତ୍ୱରିତ ଯୋଜନାର ଆବଶ୍ୟକ । ଏଥି ସକାଶେ ତାଙ୍କୁ କେବଳ ହତ୍ୟା କରାଯାଇପାରେ । ନିର୍ମମ ଭାବେ ହତ୍ୟା । ବିଷ ଦେଇ ହେଉ, ତଣ୍ଟିଚପି ହେଉ ଅବା ମୁହଁ ଉପରେ ତକିଆ ଦେଇ ଅଣନିଃଶ୍ୱାସୀ କରି ହେଉ । ବାପାଙ୍କୁ ମାରିବା କଥା ଚିନ୍ତା କଲାବେଳେ ମୋ' ଛାତିତଳ ଭୟରେ କମ୍ପି ଉଠିବା ସହ ପରକ୍ଷଣରେ ନିଜ ଭିତରର ଏପରି କଦର୍ଯ୍ୟ ଚିନ୍ତା ପାଇଁ ନିଜ ଉପରେ କ୍ଷୋଭ ପ୍ରକାଶ କରୁଥିଲି ।

ପର ମୁହୂର୍ତ୍ତରେ ପୁଣି ଭାବୁଥିଲି - ଏତେ ବଡ଼ ପରିବାରଟିଏ ମୋ' ଆଖି ଆଗରେ ଉଛନ୍ନ ହୋଇଯିବ, ମୁଁ କ'ଣ ବସି ବସି ଦେଖିବି ? ବାପାଙ୍କ ଦରମା ଟଙ୍କାରେ ଘର ଚଳୁ ନଥିଲା ଏବେ ପେନ୍‌ସନ୍ ଅବା କେତେ ମିଳିବ ? ମୋ' ନିଜ ମନ ଭିତରର ଯୁକ୍ତି ପାଇଁ ମୁଁ ଉଦାହରଣ ଖୋଜୁଥିଲି । ମନେ ମନେ ପୁରାଣ, ଇତିହାସକୁ ଦରାଣ୍ଡିଲି । ରାଜ୍ୟ ଲାଭ ପାଇଁ ପିତାଙ୍କୁ ହତ୍ୟା କରିବା କିମ୍ୱା ବନ୍ଦୀ କରିବା ସହ ଅନ୍ୟ କୌଣସି ଉଦାହରଣ ମୋ' ମୁଣ୍ଡକୁ ଜୁଟିଲାନି । ଅଜାତଶତ୍ରୁ କଥା ମନକୁ ଆସିଲା ସତ; ହେଲେ ତାଙ୍କର ତ ଅନ୍ୟ କାରଣ ଥିଲା ଏବଂ ସେ ଶେଷ ମୁହୂର୍ତ୍ତରେ ନିଜର ଭୁଲ ବୁଝିପାରି ଅନୁତାପ ବି କରିଥିଲେ ।

ରାତି ଅଧଯାଏ ଏହି ଚିନ୍ତା ମୋତେ ଏମିତି ବ୍ୟସ୍ତ ଓ ବିବ୍ରତ କରୁଥାଏ ଯେ, ମୁଁ ଶୋଇ ପାରୁ ନ ଥାଏ । ପତ୍ନୀ ଶୋଇ ପଡ଼ିଥାଆନ୍ତି ଆରାମରେ । ପାଖରେ ଶୋଇଥାଏ ପୁଅ । ତା' ମୁଣ୍ଡ ଉପରେ ଘୁରି ବୁଲୁଥିବା ମଶାଟିକୁ ମାରିବା ପାଇଁ ମୁଁ ମଶାରି କଣକୁ ଗଲି । ଦେଖିଲି ପୁଅ ଛାତି ଉପରେ ପତ୍ନୀଙ୍କର ହାତର ଭାର । ମଶାଟି ମାରି ସାରି ତାଙ୍କ ହାତ ଉଠାଇ ଦେଲି ପୁଅ ଉପରୁ । ଏହି ସମୟରେ ବାପା ଡାକ ପକାଇଲେ ମୋ' ସାନ ଭଉଣୀକୁ - ବୋଧହୁଏ ପରିସ୍ରା ଯିବା ପାଇଁ । ସାନ ଭଉଣୀ ବୋଧହୁଏ ଗଭୀର ନିଦରେ ଶୋଇଥିଲା, ଶୁଣି ପାରିଲା ନାହିଁ, ମୁଁ ବାପାଙ୍କ ଶୋଇବା ଘରକୁ ପଶିଯାଇ ପଚାରିଲି - କ'ଣ ପରିସ୍ରା ଯିବେ କି ବାପା ?

ନା - ଶୋଷ ଲାଗୁଛି । ପାଣି ଗ୍ଲାସଟିଏ ଦରକାର ।

ମୁଁ ପାଣି ଗ୍ଲାସଟିଏ ଆଣି ଦେଲି । ପାଣି ଗ୍ଲାସଟି ଦେବା ପରେ ମୋତେ ଟେବୁଲ୍ ଉପରୁ ଗୋଟେ ଆଲପ୍ରୋଜୋଲାମ୍ ଟ୍ୟାବ୍‌ଲେଟ୍ ଦେବାକୁ କହିଲେ । ବଟିକାଟି ଖାଇସାରି କହିଲେ - ନିଦ ଆସୁନି ତ ଜମା ।

ବାପା ଆଖି ବନ୍ଦ କରି ଶୋଇବାକୁ ଚେଷ୍ଟା କଲେ । ମୁଁ ଠିଆ ହୋଇ ଘରର ଚାରିଆଡ଼କୁ ଚାହୁଁଥିଲି । ଘର ଭିତରେ ଚାରିଆଡ଼େ ଖେଳାଇ ହୋଇ ପଡ଼ିଥାଏ ଔଷଧ । କାନ୍ଥରେ ବିଭିନ୍ନ ଦେବଦେବୀଙ୍କର ଫଟୋ । ମଝିରେ ଶ୍ରବଣ କୁମାର ତା' ବାପା ମାଆଙ୍କୁ କାନ୍ଧରେ ବୋହି ତୀର୍ଥଯାତ୍ରାରେ ନେଉଥିବା ଫଟୋ । ଠିକ୍ ତା' ତଳକୁ ମୋ'ର ଗୋଟିଏ ଫଟୋ ବାପାଙ୍କ ସହ । ମୁଁ ତୃତୀୟ ଶ୍ରେଣୀ ବୃତ୍ତି ପାଇବା ପରେ ଖୁସିରେ ବାପା ମୋତେ ତାଙ୍କ କୋଳରେ ବସାଇ ଉଠାଇଥିଲେ ଫଟୋଟି ।

ଫଟୋଟି ଦେଖି ସାରିବା ପରେ ମୋ' ଭିତରେ ଚିନ୍ତା ପାଇଁ ଅନୁତାପ କଲି । ନିଜର ପାପ ମନ ପାଇଁ ଈଶ୍ୱରଙ୍କ ନିକଟରେ କ୍ଷମା ମାଗି ବାପାଙ୍କର ପଙ୍ଗୁ ହୋଇଯାଇଥିବା

ଗୋଡ଼ ଉପରେ ହାତ ମାରିଲି ମନେ ମନେ କ୍ଷମା ଯାଚନା ପାଇଁ । ବାପା ମୋ ହାତରେ ସ୍ପର୍ଶ ବାରି କହିଲେ – ତୁ ଏ ଯାଏ ଯାଇନୁ କିରେ ? ରାତି ବହୁତ ହେଲାଣି ଯାଆ ଶୋଇ ପଡ଼ିବୁ । ବେଶି ଅନିଦ୍ରା ରହିଲେ ଦେହ ଖରାପ ହୋଇଯିବ ।

ମୋ' ଭିତରୁ ହଠାତ୍ ଉଠି ଆସିଲା ଗୋଟେ କୋହ । ମୁଁ ତା'କୁ ସମ୍ଭାଳିବାକୁ ଚେଷ୍ଟା କରୁ କରୁ ଫାଟି ପଡ଼ିଲି ।

ବାପା ମୋତେ ସାନ୍ତ୍ୱନା ଦେବାକୁ ଯାଇ କହିଲେ – ତୁ ଯାହା ଭାବୁଛୁ ମୁଁ ଜାଣେ ।

ମୁଁ ହଠାତ୍ ପ୍ରକୃତିସ୍ଥ ହୋଇ ମନେ ମନେ ଭୟ ପାଇଗଲି । ବାପା କ'ଣ ମୋ' ଭିତରର ଚିନ୍ତାକୁ ଜାଣି ପାରିଲେ କି ?

ତୁ ଭାବୁଛୁ ମୋ' ଦେହ ଏମିତି ଖରାପ ରହିଲେ – ଆମ ପରିବାର ଚଳିବ କେମିତି ? ତୁ ଜମା ବ୍ୟସ୍ତ ହୁଅନା; ସବୁ ଈଶ୍ୱରଙ୍କ ଇଚ୍ଛା । ମଣିଷର ଦୁର୍ଦ୍ଦିନରେ ହିଁ ସେ ଧୈର୍ଯ୍ୟର ପରୀକ୍ଷା ନିଅନ୍ତି ।

– ଆଜି ତୁମ ମୁଖ୍ୟ ଅଫିସରୁ ଗୋଟେ ଚିଠି ଆସିଥିଲା ।

– କି ଚିଠି ?

– ତୁମେ କାର୍ଯ୍ୟକ୍ଷମ ନୁହଁ ବୋଲି ତୁମ ଅଫିସର ଦେଇଥିବା ମନ୍ତବ୍ୟ ଉପରେ ତୁମକୁ ବାଧ୍ୟତାମୂଳକ ଅବସର ଦେଇ ଦେବା ପାଇଁ ।

– ହଉ... ମୋ'ର ଅବା ଚାକିରି ଆଉ କେତେ ଦିନ ଥିଲା । ଆଉ ଆଠ ଦଶମାସ ପରେ ଅବସର ନେଇ ଥାଆନ୍ତି ନଚେତ୍ ଏବେ ଦେଇ ଦେବେ । ମୁଁ କ'ଣ ଆଉ କାର୍ଯ୍ୟକ୍ଷମ ହୋଇ ଚାକିରି କରିପାରିବି ବୋଲି ଭରସା ରଖିଛି । ମୋ' ଅବସର ପାଇଁ ମୋ'ର ଚିନ୍ତା ନାହିଁ ଯେ, ହେଲେ ତୋ'ର ଯଦି କିଛି ଗୋଟେ ଚାକିରି ବାକିରି ହୋଇ ଯାଇଥାଆନ୍ତା ଅନ୍ତତଃ ଅନ୍ୟମାନେ ଏତେ ଦହଗଞ୍ଜ ହୋଇ ନଥାନ୍ତେ । କ'ଣ ଆଉ କରାଯିବ ? ତଥାପି ମୋ'ର ଆଶା ଓ ବିଶ୍ୱାସ ଯେ ଯାହା ହେବ ଭଲ ହିଁ ହେବ । କୌଣସି ଅସୁବିଧା ଆସିବ ବୋଲି ଆଶଙ୍କା କରି ତୁ ତୋ' ମନକୁ ଭାରାକ୍ରାନ୍ତ କରିବା ଠିକ୍ ହେବ ନାହିଁ । ତୋ' ବାପ ବଞ୍ଚିଛି ପରା । ତୋ'ର ଏତେ ଚିନ୍ତା କାହିଁକି ? ଦେଖାଯାଉ ଆଗକୁ କ'ଣ ହେଉଛି ।

ବାପାଙ୍କ ପାଖରୁ ଫେରିବା ପରେ ମନଟା ବହୁତ ହାଲ୍‌କା ଲାଗିଲା । ଶାନ୍ତିରେ ଶୋଇଗଲି । ସ୍ୱପ୍ନଟାଏ ଦେଖୁଛି ମୁଁ ଗୋଟେ କୁନିପିଲା ପାଲଟି ଯାଇଛି । ଥର ଥର ପାଦ ପକାଇ ଚାଲୁ ଚାଲୁ ପଙ୍କ ଭିତରେ ପଡ଼ିଗଲି । ମୁଁ ଯେତେ ଚେଷ୍ଟା କଲେ ବି ଉଠି ପାରୁ

ନ ଥାଏ; ବରଂ ଗୋଡ଼ ମୋ'ର ତଳକୁ ତଳକୁ ଦବି ଦବି ଯାଉଥାଏ ମୁଁ ଚେଷ୍ଟା କରି ଥକିଗଲା ପରେ ଜୋର୍‌ରେ ଚିତ୍‌କାର କଲି ବାପା ବାବା ବୋଲି । ବାପା କୁଆଡ଼େ ଥିଲେ ଧାଇଁ ଆସି ମୋତେ ପଙ୍କ ଭିତରୁ ଉଠାଇ ନେଇ ଧୋଇ ଧାଇ ଦେଲେ । ମୋ'ର ହାତଧରି କହିଲେ, ଦୌଡ଼ ମୁଁ ଧରିଛି ତୋ' ହାତ । ମୁଁ ଦେଖୁଥାଏ ଆଗରେ ଏକ ବିଶାଳ ପ୍ରାନ୍ତର । ମୁଁ ବାପାଙ୍କର ହାତ ଧରି ଦୌଡ଼ିଲି କିଛିକ୍ଷଣ । ତା'ପରେ ବାପା ତା'ଙ୍କ ହାତଟି ଖସାଇ ନେଇ କହିଲେ, ଦୌଡ଼ ମୁଁ ଅଛି । ମୁଁ ଦୌଡୁଛି । ମୋ' କୁନି କୁନି ପାଦରେ ଦୌଡ଼ ଦେଖି ଖୁସି ହେଉଥାନ୍ତି ବାପା । ମୁଁ ବି ମନେ ମନେ କୁରୁଳି ଉଠୁଥାଏ, ଏତେ ଜୋର୍‌ରେ ଦୌଡ଼ି ପାରୁଛି ବୋଲି ।

ମୋ'ର ଗଭୀର ସ୍ୱପ୍ନର ମୁହୂର୍ତ୍ତରେ ହିଁ ସାନଭଉଣୀର ଚିତ୍‌କାରରେ ମୋ' ନିଦ ଭାଙ୍ଗିଗଲା ।

ଭାଇ – ଭାଇ ଦେଖ ବାପା...

ବାପା ! କ'ଣ ହେଲା ବାପାଙ୍କର ?

ମୁଁ ଦୌଡ଼ିଗଲି ବାପାଙ୍କ ରୁମ୍‌କୁ । ବାପା ତା'ଙ୍କ ବିଛଣା ଉପରେ ଖୁବ୍ ପ୍ରଶାନ୍ତ ଭାବେ ଶୋଇଥିଲେ । ତା'ଙ୍କର ମୁହଁର ଭାବ ଯେମିତି କହୁଥିଲା – ତୁ ଜମା ବ୍ୟସ୍ତ ହୁଅନା, ସବୁ ଈଶ୍ୱରଙ୍କ ଇଚ୍ଛା । ଯାହା ହେବ ଭଲ ହିଁ ହେବ ନିଶ୍ଚୟ ।

ବାପାଙ୍କୁ ହଲାଇ ଦେଇ ଜୋର୍‌ରେ ରଡ଼ି ଛାଡ଼ିଲି – ବାପା ... ବାପା... । ବାପା ଥିଲେ ନୀରବ, ନିଶ୍ଚଳ ଓ ବରଫ ପରି ଶୀତଳ । ନିରୀକ୍ଷଣ କରି ଚାହିଁଲି ବାପାଙ୍କ ମୁହଁକୁ ପକ୍ଷାଘାତ ଯୋଗୁଁ ମୁହଁର ଗୋଟିଏ ପଟ ବାଙ୍କି ଯାଇଥିଲା । ସେପଟ ଓଠଟି ତଳକୁ ଦବି ଯାଇ ବକ୍ରହସ ପରି ଲାଗୁଥିଲା । ମୋତେ ଲାଗିଲା ବାପାଙ୍କ ମୁହଁରେ ସତକୁ ସତ ହସଟିଏ ଯେମିତି ଲାଗି ରହିଛି ଓ ସେ ହସରେ ସେ ମୋତେ କହୁଛନ୍ତି ଜନ୍ମ ଦେଇଛି, ମନ କଥା କ'ଣ ବୁଝି ପାରିବନି ।



# ଦୌଡ଼ ପ୍ରତିଯୋଗିତା

ପୁଅର ଭବିଷ୍ୟତ ବିଷୟରେ ମୁଁ ଥିଲି ଔଦାସ୍ୟ । ସେମିତି ଖାସ୍ ଚିନ୍ତା କରୁନଥାଏ । ଯିଏ ଯାହା ହେବାର ଥିବ ହେବ ଏହା ବିଧି ନିର୍ଘଣ୍ଟ । ଆମେ ଯେତେ ବାଡ଼େଇ କଚାଡ଼ି ହେଲେ ମଧ୍ୟ ତାକୁ ପରିବର୍ତ୍ତନ କରି ପାରିବା ନାହିଁ । ବରଂ ପୁଅର ଭବିଷ୍ୟତ ନେଇ ଅତ୍ୟଧିକ ମହତ୍ୱାକାଂକ୍ଷା ପୋଷଣ କରିଥିଲେ ସେ ଯଦି କୁଆଡୁ କିଛି ହୋଇ ନପାରିଲା ତେବେ ଅବସୋସ କରିବା ସାର ହେବ । ମାତ୍ର ମୋ ସ୍ତ୍ରୀ ପୁଷ୍ପାଙ୍କର ଯୁକ୍ତି ଥିଲା ଅଲଗା । ସେ ଏଇନା କାଦୁଅ ପିଣ୍ଡୁଳାଟାଏ ଆମେ ତାକୁ ଯେମିତି ଗଢ଼ିବା ସେ ସେମିତି ଗଢ଼ି ହେବ । ଯେଉଁ ବାଟ ଦେଖାଇବା ସେ ସେହି ବାଟରେ ଯିବ । ତମେ ସେ ମରହଟ୍ଟି ବାପାଙ୍କ ଭଳି ଭାଗ୍ୟ ଉପରେ ସବୁ ଛାଡ଼ି ଦେଲେ ଭାଗ୍ୟ ବି ପୁଅକୁ ବାଟ ଭାଙ୍ଗି ଚାଲି ଯିବ ।

ମୁଁ କହେ – ହେଉ ବାବା ହେଉ । ତମେ ଯେମିତି ଚାହୁଁଛ ପୁଅକୁ ସେମିତି ଗଢ଼ । ମୋର ସହଯୋଗ ଅଛି ତମ ପଛରେ ।

ମୁଁ କ'ଣ ଗଢ଼ିବି ? ଆମେ ଉଭୟେ ଗଢ଼ିବା କୁହ । ମୋଠାରୁ ତ ତମେ ଅଧିକ ତତ୍‌ପର ହେବା କଥା । କାରଣ ପ୍ରତ୍ୟେକ ବାପା ଚାହେଁ ସେ ଯେଉଁ କାର୍ଯ୍ୟ କରିବାରେ ଅସଫଳ ହୋଇଛି ତା' ପୁଅ ସେଥିରେ ସଫଳ ହେଉ । ତମେ କହୁ ନଥିଲା କି ତମର ଭଲ ଡାକ୍ତରଟିଏ ହେବାର ଇଚ୍ଛା ଥିଲା । ମାତ୍ର ତମେ ମେଡିକାଲ ଏନ୍‌ଟ୍ରାନ୍‌ସ ପାଇଲ ନାହିଁ । ତା' ପରେ ତମେ ଚାହିଁଥିଲ ଆଇ.ଏ.ଏସ୍.ହେବା ପାଇଁ ମାତ୍ର ଦୁଇ ଦୁଇଥର ମେନ୍ ପରୀକ୍ଷାରୁ ଚିତ୍‌ପଟାଙ୍ଗ ମାରି ଶେଷଥରରେ ପ୍ରିଲିମିନାରୀରୁ ବି କଟିଯାଇଥିଲ । ତେଣୁ ମୋଠାରୁ ତ ତମ ଭିତରେ ଅଧିକ ଚ୍ୟାଲେଞ୍ଜ ଆସିବା କଥା ଅନ୍ତତଃ ତମେ ଯେଉଁଥିରେ ବିଫଳ ହୋଇଛ ପୁଅକୁ ସେଥିରେ ସଫଳ କରିବାକୁ ।

ମୁଁ ଜାଣୁଥିଲି ମୋତେ ଏ ସବୁ କହିବା ପଛରେ ପୁଷ୍ପାଙ୍କର ଅସଲ ମତଲବ ଅଛି ମୁଁ ହାରି ଯାଇଥିବା ଜିଦ୍ ନେଇ ପୁଅ ପଛରେ ଲାଗିଯାଏ । ମାତ୍ର ତା'ଙ୍କ କଥାର

ପ୍ରଭାବ ମୋ ଉପରେ ବିଶେଷ ପଡୁନଥାଏ । କାରଣ ମୁଁ ଜାଣୁଥିଲି ଗୋଟିଏ ଉଚ୍ଚାକାଂକ୍ଷାର ବିଫଳତା ଜୀବନକୁ କେତେ ଦୁର୍ବିସହ କରି ପକାଏ । ଅନ୍ତତଃ ବାପ ହିବାସରେ ମୋର ମଧ୍ୟ ଧ୍ୟାନ ଦେବା ଉଚିତ ଯେ ପୁଅ ଉପରେ ସେମିତି ଏକ ମାନସିକ ଚାପ ନ ପଡୁ । ମୋଠାରୁ ସେମିତି କୌଣସି ଉତ୍ସାହଜନକ ସହଯୋଗ ନ ପାଇ ମଧ୍ୟ ସେ ଲାଗି ପଡ଼ିଲେ ପୁଅ ପଛରେ ତାଙ୍କ ଚିନ୍ତା ଓ ଚେତନାର ସଫଳ ବ୍ୟକ୍ତିତ୍ୱ ହିସାବରେ ପୁଅକୁ ଗଢ଼ି ତୋଳିବା ପାଇଁ ।

ପୁଅ ଡାଡି ମମି ଡାକି ଶିଖିବା ବେଳକୁ ତାକୁ ଆମ ପରିପାର୍ଶ୍ୱର ଜଗତର ବିଭିନ୍ନ ବସ୍ତୁ ଓ ଜୀବଙ୍କର ଇଂରାଜୀ ନାମ ଯଥା: କାଓ, ଡଗ୍, ହର୍ସ, ଲାୟନ, ପିଗ୍, ର୍ୟାଟ, ଫ୍ରିଜ୍, ଟେବୁଲ୍, ଓଭେନ୍, ଟେପ୍, ଟି.ଭି.ରିମୋଟ ଇତ୍ୟାଦି ଶିଖାଇ ଦେଇଥିଲେ । ତାକୁ ତିନି ବର୍ଷ ହେବା ଆଗରୁ ଆଲଫାବେଟ୍ ଶିଖିବା ସହିତ ଏ ଫର୍ ଆପଲ୍‌ରୁ ଜେଡ୍ ପର ଜେବ୍ରା ଯାଏଁ ଏବଂ ଟ୍ୱିଙ୍କଲ ଟ୍ୱିଙ୍କଲ ଲିଟିଲ ଷ୍ଟାର, ଗଡ ବ୍ଲେସ୍ ମମି ଇତ୍ୟାଦି ରାଇମ୍ ଶିଖାଇ ସାରିଥିଲେ । ତା' ପାଇଁ ବିଭିନ୍ନ ପ୍ରକାରର ଷ୍ଟଡି କିଟସ୍ କିଣି ଆଣି ତାକୁ କାର୍, ଜିପ୍, ବ୍ରିଜ୍, ହାଉସ୍, ତିଆରି କରି ଶିଖାଇବା ସହ ଭାରତର ବିଭିନ୍ନ ରାଜ୍ୟକୁ ଯୋଡ଼ି ଭାରତ ତିଆରି କରି ବା ଓଡ଼ିଶାର ବିଭିନ୍ନ ଜିଲ୍ଲା ଇତ୍ୟାଦି ଚିହ୍ନେଇବା ଶିଖେଇ ଥିଲେ । ପୁଅବି ଗୋଟେ ଚାବି ଦିଆ କଣ୍ଢେଇ ପରି ସେ ଯେତିକି ଶିଖାଉଥିଲେ ସେତିକି କହି ଦେଉଥିଲା, ସେ ମନେ ମନେ ଖୁସି ହେଉଥିଲେ, ଯାହା ହେଉ ପୁଅର ଆଇକ୍ୟୁ ଯଥେଷ୍ଟ ଅଛି ।

ପାଠ ପଢ଼ା ସହ ପୁଅର ଖେଳ ପ୍ରତି ଆଗ୍ରହ ବଢ଼ାଇବାରେ ମଧ୍ୟ ସେ ଧ୍ୟାନ ଦେଉଥିଲେ । ସେ ଠୁକ୍ ଠୁକ୍ ହୋଇ ଚାଲି ଶିଖିବା ବେଳକୁ ତା' ପାଇଁ ପ୍ଲାଷ୍ଟିକ୍‌ର କ୍ରିକେଟ ବ୍ୟାଟ୍ ଓ କ୍ରିକେଟ ବଲ୍ କିଣି ଆଣି ଅଗଣାରେ ରିତିମତ ବୋଲିଂ କରି ତା' ସହ କ୍ରିକେଟ ଖେଳୁଥିଲେ । ଟି.ଭି.ରେ କ୍ରିକେଟ ମ୍ୟାଚ ଚାଲିଲା ବେଳେ ତାକୁ ବସାଇ ଦେଖାଉଥିଲେ ଦେଖ୍ ସଚ୍ଚିନ୍ କିପରି ଛକା ମାରୁଛି ।

ପୁଅ ପ୍ରତି ତାଙ୍କର ଅତି ମାତ୍ରାରେ ଧ୍ୟାନ ଦେଖି ମୁଁ ବେଳେ ବେଳେ ରାଗିଯାଇ କହେ । ତମେ ଆଗେ ତମର ଲକ୍ଷ୍ୟ ସ୍ଥିର କରି ନିଅ ପୁଅକୁ କ'ଣ କରିବ । ତା' ପରେ ସେହି ଲକ୍ଷ୍ୟ ଅନୁଯାୟୀ ପୁଅକୁ ତିଆରି କରିବ । ବହୁଧା ଲକ୍ଷ୍ୟ ନେଇ ଛୁଆଟିକୁ ଗଢ଼ିଲେ ଶେଷରେ କିଛି ହୋଇପାରିବ ନାହିଁ ।

ପୁଷ୍ପା ସଙ୍ଗେ ସଙ୍ଗେ ଯୁକ୍ତି କରି କହନ୍ତି- ଆଜି କାଲି ଯୁଗରେ କେବଳ କୌଣସି ଗୋଟିକରେ ସବଳ ହେଲେ ହେବ ନାହିଁ ଯୋତା ସିଲେଇଠାରୁ ଚଣ୍ଡିପାଠ ଯାଏ ସବୁ ବିଦ୍ୟାକୁ ଶିଖିବାକୁ ପଡ଼ିବ । ଗୋବର୍ଦ୍ଧନ ବାବୁଙ୍କ ପୁଅ ଭଲ ପାଠ ପଢୁ ନଥିଲା କି ? କ'ଣ ହେଲା ? ସ୍ମାର୍ଟ ନ ଥିଲା – ଇଣ୍ଟରନ୍ୟାସନାଲ ଆଫେୟାର୍ସ ଉପରେ ଅନାୟାସରେ ସବୁ ପ୍ରଶ୍ନର ଉତ୍ତର ଦେଇ ପାରୁଥିବା ପିଲା ଇଣ୍ଡିଆନ୍ ସିନେମା କଥା ପଚାରିଲା ବେଳକୁ ଜିରୋ । ମୁଁ ଚାହୁଁନି ମୋ ପୁଅ ସେମିତି ହେଉ । ସେ ମାଷ୍ଟର ଅଫ୍ ଅଲ ଟ୍ରେଡ୍ ହେବା କଥା ।

ଦେଖାଯାଉ କ'ଣ ହେଉଛି ତମର ପୁଅ ।

ସେ ରାଗିଯାଇ କହନ୍ତି ତମେ ବିଫଳ ମନସ୍କ ମାନସିକତାଠାରୁ କେବେ ଉର୍ଦ୍ଧ୍ୱକୁ ଯାଇପାରିବ ନାହିଁ ।

ପୁଅକୁ ତିନି ବର୍ଷ ପୁରିଲା ବେଳକୁ ସେ ବ୍ୟସ୍ତ ହୋଇ ପଡ଼ିଲେ ତାକୁ ସ୍କୁଲରେ ଆଡମିଶନ କରାଇ ଦେବା ପାଇଁ । ମୁଁ କହିଲି ଦେଖ ଏବେ ସ୍କୁଲମାନଙ୍କରେ ଯେତେ ବହି ପଢ଼ାଉଛନ୍ତି ତା'ର କୋମଳ ମସ୍ତିଷ୍କ ଭିତରେ ଏବେ ସବୁ କଥା ପାଇଁ ସ୍ଥାନ ହୋଇନି । ତାକୁ ପାଞ୍ଚ ବର୍ଷ ହୋଇଯାଉ ବରଂ ବୟସ କମାଇ ନାଁ ଲେଖାଇ ଦେବା ।

ତମେ ବୋଧେ ଏକୁଟିଆ ଶିକ୍ଷା ବିଶାରଦ । ଯିଏ ସବୁ ଏ କରିକୁଲମ କଲେ ସମସ୍ତେ ବୋଧେ ପାଗଳ କିମ୍ବା ଗଂଜେଇ ଖାଇ କରିଛନ୍ତି । ପୁଅ ବୟସର ପିଲାଙ୍କ ପାଇଁତ ଏସବୁ ହୋଇଛି ।

ମୁଁ ମାନୁଛି ହେଲେ, ତମକୁ ସେ ଦିନ ସେ ଆର୍ଟିକିଲ୍‌ଟା ଦେଖାଉ ନଥିଲି ? ଯେଉଁଠି ଲେଖା ଯାଇଥିଲା କୋମଳମତି ଶିଶୁମାନଙ୍କ ଉପରେ ସ୍କୁଲ କରିକୁଲମ୍‌ର ଅତ୍ୟଧିକ ଚାପ ଯୋଗୁଁ ସେମାନେ ମାନସିକ ଚାପର ସମ୍ମୁଖୀନ ହୋଇ କିପରି ବିଚିତ୍ର ବ୍ୟବହାର ଦେଖାଉ ଅଛନ୍ତି । ଏପରିକି ସର୍ଭେ ରିପୋର୍ଟରୁ ଜଣାଯାଇଛି ଯେ ସେମାନେ ଉପସ୍ଥିତ ବୁଦ୍ଧି ଶୁନ୍ୟତାର ଶିକାର ହେଉଛନ୍ତି ଯଥା ହଠାତ୍ ଟ୍ରାଫିକ୍ ସେଣ୍ଟରରେ ବାଆଁକି ଡାହାଣକୁ ଯିବା ନିର୍ଣ୍ଣୟ କରିବା, ହଠାତ୍ ସାମ୍ନା ପଟୁ ଗାଡ଼ି ଚାଲି ଆସିଲେ କ'ଣ କରିବା ଇତ୍ୟାଦି ଇତ୍ୟାଦି ।

ହଁଃ- ସେମାନେ କେତେଟା ଷ୍ଟ୍ରେ କେସେସ୍‌ର ଉଦାହରଣ ନେଇଥିବେ ଓ ତାକୁ ସେମାନେ ଜେନେରାଲାଇଜ୍ କରି ମନ୍ତବ୍ୟ ଦେଇ ଦେଉଛନ୍ତି । ଦୁନିଆଁରେ ସବୁ ବାପା ମାଆ କ'ଣ ମୂର୍ଖ ସେମାନେ କେବଳ ପଣ୍ଡିତ ?

ମୁଁ ତୁମ ସହ ଯୁକ୍ତି କରିବା ଉଦ୍ଦେଶ୍ୟରେ ଏକଥା କହୁ ନଥିଲି, କେବଳ ସୂଚେଇ ଦେବାକୁ ଚାହୁଁଥିଲି । ପୁଅର ପାଠ ପଢ଼ା ଓ ଭବିଷ୍ୟତ ସମ୍ପର୍କରେ ତମର ନିଷ୍ପତ୍ତିକୁ ମୁଁ ସମ୍ମାନ ଦେବି ।

ପୁଅର ନାଁ ଲେଖା ହେଲା । ସେ ସ୍କୁଲ ଗଲା । ସ୍କୁଲ ଯାଉ ନ ଥିଲା ତ ଏକ ରିତିମତ ପ୍ରାତଃ ପର୍ବ ଆମ ଘରେ ଲାଗୁଥିଲା । ସ୍କୁଲ ବସ୍ ପହଞ୍ଚିଯିବ ଠିକ୍ ଛଟାରେ । ତେଣୁ ପାଞ୍ଚଟା ରାତିରୁ ଉଠି ତାକୁ ଦାନ୍ତ ଘଷାଅ, ପାଇଖାନାରେ ବସାଇ ଝାଡ଼ା କରାଅ । ଖୋଇ ପେଇ ଟିଫିନ୍ ଦେଇ ବିଦା କରିବାର ହୋ - ହାଲ୍ଲାରେ ମୋର ଯେ କେବଳ ପ୍ରାତଃ କାଳୀନ ନିଦ୍ରାର ବ୍ୟାହତ ହେଉଥିଲା ସେ କଥା ନୁହଁ ମୋତେ ମଧ୍ୟ ରିତିମତ ସାହାଯ୍ୟ କରିବାକୁ ପଡୁଥିଲା । ଶୀତଦିନେ ପୁଅ ରେଜେଇ ଭିତରୁ ଜମା ବାହାରିବାକୁ ଚାହୁଁ ନଥିବା ବେଳେ ପୁଷ୍ପା ତାକୁ ଭିଡ଼ି ଭିଡ଼ି ମୃଦୁ ଧମକ ଦେଉଥିବେ ଦେଖ୍ ଆଜି ଡାଏରୀରେ ଲେଖିଦେବି ତୋ'ର ମିସ୍‌ଙ୍କ ପାଖକୁ ତୁ ଲେଜି ହୋଇ ଯାଉଛୁ ବୋଲି ।

ମୁଁ କହୁଥିବି ଉଠ୍ ବାପା - ଏ ଯୁଗ ଶୋଇବାର ଯୁଗ ନୁହେଁ ଧାଇଁବାର ଯୁଗ । ଏ ଶତାବ୍ଦୀରେ ଶିକ୍ଷା ନାଁରେ ଯେଉଁ ଗଣ ଦୌଡ଼ ଚାଲିଛି ସେଥିରେ ତୋ ଶୈଶବୀୟ ଅଝଟ କିମ୍ବା ଚପଳତାର ସ୍ଥାନ ନାହିଁ । ଏ ଶୈତାନୀ ଶିକ୍ଷା ଦଳି ମକଚି ଦେଉଛି ତୁମମାନଙ୍କ ବାଲ୍ୟ କଳିର ବୟସକୁ । ହେଲେ ଆମେ ନାଚାର ବାପା - ତୋ' ଭିତରେ ତ ଆମେ ସବାର ହୋଇଛୁ ସେଥିପାଇଁ ଏ ପାଠ ତୁ ପଢୁନୁରେ ବାପା ଆମେ ବି ପଢୁଛୁ ।

ପୁଅର ପ୍ରୋଗ୍ରେସ୍ ରିପୋର୍ଟ ଦେଖି ଖୁସି ହୁଅନ୍ତି ପୁଷ୍ପା । ମୁଁ କହେ ଶାରୀଟିଏ ଶିଖିଥିବା ଦୁଇପଦ କଥା କହିଦେଇ ପାରେ ସତ ମାତ୍ର ତା' ମନର ଅଭିବ୍ୟକ୍ତିକୁ ସେ କ'ଣ ପ୍ରକାଶ କରିପାରେ ? ଠିକ୍ ସେମିତି ପିଲାମାନେ ଯୋଡ଼େ ରାଇମ୍ ଶୁଣାଇ କେତେଟା ଶବ୍ଦ କହି ଏ ଯେଉଁ ନମ୍ବର ରଖୁଛନ୍ତି ସେଥିରେ ଏତେ ଆତ୍ମ ସନ୍ତୋଷ ଲାଭ କରିବାର କିଛି ନାହିଁ । ଅସଲ ଯୁଦ୍ଧ କ୍ଷେତ୍ର ତ ବହୁ ଦୂରରେ ।

ପୁଅର ପାଠ ସହ ଏଟିକ୍ୟୁଟି ଉପରେ ମଧ୍ୟ ଢ଼େର ଧ୍ୟାନ ଦେଉଥିଲେ ପୁଷ୍ପା । କିଏ ଘରକୁ ଆସିଲେ ତାକୁ ଗ୍ରିଟ୍ କରିବା ପାଇଁ ସମୟ ଅନୁଯାୟୀ ଗୁଡ଼ମର୍ଣ୍ଣିଂ, ଗୁଡ୍ ଆଫଟର ନୁନ୍, ଗୁଡ୍ ଇଭିନିଙ୍ଗ୍ କରିବା ଏବଂ ଯିବାବେଳେ ବାଏ - ଟା - ଟା କହିବା ପାଇଁ ସେ ଶିଖାଉ ଥିଲେ । କାହାଠାରୁ କିଛି ଗ୍ରହଣ କରିବା ସଙ୍ଗେ ସଙ୍ଗେ ତାଂକୁ ଥେଙ୍କ ୟୁ କହିବା ଏବଂ ଜଣେ ଥେଙ୍କ୍‌ୟୁ କହିଲେ ତାକୁ ନୋ - ମେନ୍‌ସନ୍ ପ୍ଲିଜ୍ ଇତ୍ୟାଦି କହିବା କମନ୍

କଟସି । ପୁଅ ଶୁଆଭଳି ଏ ସବୁ କଥା ମନେ ରଖୁଥିଲେ ମଧ୍ୟ ସ୍ଥଳ ବିଶେଷରେ କେତେ ବେଳେ ଭୁଲ ମଧ୍ୟ କରି ପକାଉଥିଲା । ଯେମିତି ସନ୍ଧ୍ୟାବେଳେ ଘରକୁ ଆସିଥିବା କୌଣସି ଅତିଥିଙ୍କୁ ଗୁଡ୍‌ମର୍ଣ୍ଣିଂ କହିଦେବା କିମ୍ବା କିଏ ତାକୁ କୌଣସି ଜିନିଷ ଦେଲେ ଥ୍ୟାଙ୍କ୍ ୟୁ କହିବା ଜାଗାରେ ନୋ ମେନ୍‌ସନ୍ କହି ପକାଉଥିଲା । ଚିଡିମଡ ରାଗ ଶୁଝାନ୍ତି ପିଲାଟା ଉପରେ । ମୁଁ ବୁଝାଇବାକୁ ଯାଇ କହେ - ପିଲାଟା ଏତେ କଥା ମନେ ରଖିବା ବେଳେ କିଛିଟା ଭୁଲ ଭଟକା ତ ହୋଇ ଯିବ ନା ।

ଦିନେ ମୁଁ ମାର୍କେଟରୁ ଫେରିବାବେଳକୁ ପୁଷ୍ପା ଡ଼ାଇନିଂ ଟେବୁଲ ଉପରେ ଗୁଡ଼ାଏ ଅଙ୍ଗୁର, ଆପଲ, ମିଠା, ମିକଚର ରଖି ବାଡ଼ିଟିଏ ଧରି ପୁଅକୁ ଧମକାଉ ଥାନ୍ତି - ଖାଆ, କେତେ ଖାଇବୁ ଖାଆ । ଆଜି ଖୋଇଖୋଇ ତୋ' ପେଟ ନଫଟାଇଲା ଯାଏ ମୁଁ ଛାଡ଼ୁନି । ଖାଇ ସାରିବା ପରେ କହ ତୋ'ର ପ୍ରତିଦିନ କ'ଣ କ'ଣ ଖାଇବା ଦରକାର ମୁଁ ତତେ ଆଣି ଦେବି । ଏମିତି ମାଗିଖିଆ ପରି କ'ଣ ଖାଉଛୁ କାହା ଘରକୁ ବୁଲିଗଲେ ? ସେମାନେ କ'ଣ ଭାବୁଥିବେ ? ଛୁଆକୁ ଏମାନେ ବୋଧେ କିଛଇ ଖାଇବାକୁ ଦେଉ ନାହାନ୍ତି ତେଣୁ ଏମିତି ରଙ୍କ ହେଉଛି ଖାଇବା ପାଇଁ । ମୁଁ ପଚାରିଲି କ'ଣ ହୋଇଛି ?

କ'ଣ ଆଉ ହେବ - ପୁଅ କିର୍ତ୍ତି ଦେଖାଉଛି ।

ମୁଁ କହିଲି - କ'ଣ କଲା ସିଏ ?

ପାଣିଗ୍ରାହୀ ବାବୁଙ୍କ ଘରକୁ ବୁଲି ଯାଇଥିଲୁ, ସେଠି ତା'ଙ୍କ ପୁଅ ସହ ମିଶି ଖାଇବା ପାଇଁ କମ୍ ଆଖଡ଼ା ଲଗାଇଲା । ସବୁ ପ୍ଲେଟକୁ ଆବୋରି ବସିଲା ଖାଇବା ପାଇଁ । ମୁଁ ରାଗରେ ତା ଆଡ଼କୁ ଯେତେ କଟ୍‌ମଟ୍ କରି ଚାହିଁଲେ ମଧ୍ୟ ତା'ର ସେଥିପ୍ରତି ଭ୍ରୂକ୍ଷେପ ନଥିଲା ।

ପିଲା ଲୋକ - ସାଙ୍ଗ ମିଳିଯିବାରୁ ମିଶିଯାଇ କ'ଣ ଟିକିଏ ଦୁଷ୍ଟାମୀ କରିଥିବ ସେଥିରେ ଏତେ ସିରିୟସ୍ କାହିଁକି ?

ସିରିୟସ୍ ହେବିନି ? ମିକ୍‌ସଚର କେମିତି ଖାଉଥିଲା ଜାଣ ? । ପୁରା ପାଞ୍ଚଆଙ୍ଗୁଳି ପାଟିରେ ପୁରାଇ ନଅଙ୍କିଆ ପିଲାଙ୍କ ପରି । କଦଳୀ ସରିଯିବ ବୋଲି ତାକୁ ଟିକେ ଟିକେ ଚାଟୁଥାଏ । ମୋତେ ସବୁଠୁ ବାଧିଲା କ'ଣ ଜାଣ - ପାଣିଗ୍ରାହୀ ବାବୁଙ୍କ ମିସେସ୍ କହିଲେ ମୋ ପୁଅତ କେବେ ଏମିତି ହୁଏନି ଖାଇବା ପାଇଁ । ଫ୍ରିଜ୍‌ରେ ଅଙ୍ଗୁର, ଆପଲ ସଢ଼ୁଥିଲେ ମଧ୍ୟ ସେ ଆଡ଼କୁ ଧ୍ୟାନ ଦିଏନାହିଁ । କେତେ ବାଧ କରି କ୍ଷୀରରେ ହରଲିକ୍‌ସ କିମ୍ବା ଭିଭା ନ ମିଶାଇଲା ଯାଏଁ ଛୁଏଁ ନାହିଁ । ଆଜି ଆପଣଙ୍କ

ପୁଅକୁ ଦେଖି ସେ ମଧ୍ୟ ଖାଇବା ପାଇଁ କେମିତି ହେଉଛି ଦେଖନ୍ତୁ । ପୁଅର ଖାଇବା ଢଙ୍ଗକୁ ତାଙ୍କ କଥା ଶୁଣି ମୁଁ ଅପମାନରେ ଜଳି ଯାଉଥିଲେ ମଧ୍ୟ କିଛି କହିପାରିଲି ନାହିଁ । କ'ଣ କହିବି - ମୁଁ ତ ତା'ର ଏମିତି ଅଦ୍‌ଭୁତ ଆଚରଣ ଦେଖି ହତବାକ୍ ହୋଇଯାଇଥିଲି । ସେଇଠି ମୁଁ ମନେମନେ ଭାବିଥିଲି ଆଜି ପୁଅ ଉପରେ ପ୍ରତିଶୋଧ ନେବି ତାକୁ ପେଟ ଫଟାଇ ବାନ୍ତି କଲାଯାଏ ଖୋଇବି ଆଉ ଯେମିତି, ଏମିତି ଢ଼ଙ୍ଗ ଢ଼ାଙ୍ଗ କେଉଁଠି ନ ଦେଖାଏ ଖାଇବାକୁ ।

ଦେଖ ! ତମେ ଯେଉଁ କଥାରେ ଏତେ ସିରିୟସ୍ ହେଉଛ ସେଇଟା ସେମିତି କିଛି ଗୁରୁତ୍ୱପୂର୍ଣ୍ଣ କଥା ନୁହେଁ । ଅବଶ୍ୟ ମୁଁ ମାନୁଛି ପାଣିଗ୍ରାହୀ ବାବୁଙ୍କ ସ୍ତ୍ରୀଙ୍କ ମନ୍ତବ୍ୟ ତମକୁ ବାଧିଥିବ । ମାତ୍ର ତମମାନଙ୍କର ପିଲାର ମନସ୍ତତ୍ତ୍ୱ ଜାଣିବା ଦରକାର । ଆମ ପୁଅ ସେମିତି ବ୍ୟବହାର କାହିଁକି କଲା ଜାଣ ? ଆମ ଘରେ ତା'ର ଖାଇବା ନେଇ କୌଣସି ପ୍ରତିଦ୍ୱନ୍ଦୀ ନାହାନ୍ତି । ସେଠାରେ ତାର ପ୍ରତିଦ୍ୱନ୍ଦି ଥିଲା । ତେଣୁ ସେ ଖାଇବାରେ ପ୍ରତିଯୋଗିତା କରୁଥିଲା । ଆଚ୍ଛା ତାଙ୍କ ପୁଅ ମଧ୍ୟ ସେମିତି ବ୍ୟବାହାର କରୁଥିଲାକି ନାହିଁ ? ସେ ମଧ୍ୟ ଆମ ପୁଅକୁ ତାର ପ୍ରତିଦ୍ୱନ୍ଦି ବୋଲି ଧରିନେଇଥିଲା । ଦୁଇ ପ୍ରତିଯୋଗିଙ୍କର ପ୍ରତିଯୋଗିତାକୁ ତମେ ମାନେ ଉପଭୋଗ ନ କରି ଏତେ ଉତ୍ କ୍ଷିପ୍ତ ହେବାର କିଛି କାରଣ ନାହିଁ ।

ପୁଷ୍ପା କ'ଣ ବୁଝିଲେ କେଜାଣି ଶାନ୍ତ ଅଥଚ ଦୃଢ଼ ଭାବରେ ପୁଅକୁ ଆଦେଶ ଦେଲେ ଯାହା - ମୋତେ ୱାନ୍ ଠାରୁ ହନ୍‌ଡ୍ରେଡ୍ ଯାଏଁ ଲେଖିକରି ଦେଖା - ଇନ୍ ୱାର୍ଡସ୍ । ମନେ ରଖ ଗୋଟିଏ ବି ଯେପରି ଭୁଲ୍ ନ ହୁଏ ।

ପୁଅର ପାଠପଢ଼ା ସହ ଅନ୍ୟ କରିକୁଲକ ଆକ୍ଟିଭିଟିଜ୍ ଉପରେ ତାଙ୍କର ନଜର ମଧ୍ୟ ଥିଲା ତୀବ୍ର । ଖେଳକୁଦ୍ କସରତ ଅପେକ୍ଷା ଡିବେଟ୍‌ରେ ଭାଗ ନେବାକୁ ତାକୁ ସେ ବିଶେଷ ଭାବରେ ଉତ୍ସାହ ଦେଉଥିଲେ । ଗୋପବନ୍ଧୁ ଜୟନ୍ତୀରେ ସବୁ ଶ୍ରେଣୀରେ ପିଲାଙ୍କ ପାଇଁ ତର୍କ ପ୍ରତିଯୋଗିତା ଥାଏ ।

ପୁଷ୍ପା ମୋତେ କହିଲେ - ପୁଅର ତର୍କ ପ୍ରତିଯୋଗିତା ଅଛି - ଗୋପବନ୍ଧୁଙ୍କ ଉପରେ ସେ ବୁଝିକରି କହିପାରିଲା ପରି ଅଳ୍ପ କିଛି ଲେଖିଦିଅତ ।

ମୁଁ କହିଲି ସେ ଛୋଟ ପିଲାଟା କ'ଣ କହିବ ? ତା'ପରେ ଛୋଟ ପିଲାଙ୍କ ପାଇଁ ତର୍କ ଲେଖିବା କଷ୍ଟକର । ତାଙ୍କ ପାଇଁ ଭାଷା ଓ ସମୟକୁ ଧ୍ୟାନ ଦେଇ ଲେଖିବାକୁ ହେବ । ମୁଁ ପାରିବିନି ବାବା - ତମେ ବରଂ ବହିଦେଖି ସରଳରେ ଅଳ୍ପ କିଛି ଲେଖି ଦିଅ ।

ପୁଷ୍ପା ଭାଷଣ ଲେଖିସାରି ତାକୁ ମୁଖସ୍ଥ କରାଇଲେ ପୁଅକୁ । ସେ ମୁଖସ୍ଥ କଲାପରେ ତାକୁ ରିତିମତ ଠିଆ କରାଇ କେମିତି ଠିଆହେବ, କେମିତି କହିବ, କେଉଁଠି ହାତ ହଲାଇବ ଇତ୍ୟାଦି ଶିଖାଇଲେ । ଏମିତିକି ଗୋଟିଏ ବାଡ଼ି ଆଣି ତା' ଦେହରେ ଧୂପ ଖୋଳର ନଳୀଟିଏ ବାନ୍ଧି ତାକୁ ମାଇକ୍ରୋଫୋନ୍ କରି ନିଜେ ଓ ମୋତେ ଦର୍ଶକ ଭାବରେ ଛିଡ଼ା କରି ପୁଅକୁ ଭାଷଣ ଦେବାକୁ କହିଲେ, ପୁଅବି ତାଙ୍କ ଇଚ୍ଛା ଓ ମନମୁତାବକ ଅଭ୍ୟାସ କରୁଥିଲା ଏବଂ କହି ମଧ ପାରୁଥିଲା । କାଳେ ସେ କହିବା ବେଳେ ନର୍ଭସ ହୋଇପଡ଼ିବ ତେଣୁ ସେ ସବୁବେଳେ ମନେ ପକାଇ ଦେଉଥିଲେ ତୁ ଭାବିବୁ ଯେ, ମୋ ବ୍ୟତୀତ ଆଉ କେହି ସେଠାରେ ନାହାନ୍ତି ।

ପୁଅ ପ୍ରଶ୍ନ କଲା - ସମସ୍ତେ ତ ମୋ ଆଗରେ ବସିଥିବେ ମୁଁ କେମତି ଭାବିବି କେହି ନାହାନ୍ତି ବୋଲି ?

ମୁଁ କ'ଣ କହୁଛି କେହି ନଥିବେ ବୋଲି - ମାତ୍ର ତୁ ମନେ ମନେ ଧରିନେବୁ କେହି ନାହାନ୍ତି । ତୁ କପିଳ ଦେବର ଆକସନ୍ ସୁଜ୍‌ର ଆର୍ଡଭାଟଇଜ୍‌ମେଣ୍ଟ ଦେଖୁଛୁନା ?

ହଁ - ହଁ ଯେଉଁଠି ତା ଯୋତାରୁ ଭକ୍‌ଭକ୍ ହୋଇ ପବନ ବାହାରୁଛିତ ?

ହଁ ହଁ ସେଇଟା ।

ମମି ତମେ ତ ଥରେ ମୋତେ କହିଥିଲ ପବନକୁ ଦେଖି ହୁଏନି କି ଛୁଇଁ ହୁଏନି । ମାତ୍ର ତା' ଯୋତାର ଯେଉଁ ପବନ ବାହାରୁଛି ତାକୁତ ଦେଖିହେଉଛି ?

ଧେତ୍ ବୋକା ସେଇଟା କେବଳ ବିଜ୍ଞାପନ ପାଇଁ ସେମିତି କରିଛନ୍ତି ନା । ହଉ ଅସଲ କଥା ଶୁଣ - ସେ ଯେମିତି ଗୋଟେ ଗୋଟେ ବିରାଟ ଷ୍ଟାଡ଼ିୟମରେ ଏକୁଟିଆ ବସିଛି କେହି ନାହାନ୍ତି ତୁ ସେମିତି ଭାବିବୁ ମୁଁ ଏଠି ଏକୁଟିଆ କହୁଛି କେହି ନାହାନ୍ତି ବୋଲି ।

ପୁଅ ଏ ଉଦାହରଣରୁ କ'ଣ ବୁଝିଲା କେଜାଣି ମୁଣ୍ଡ ଟୁଙ୍ଗାରୀ ଦେଲା । ମାତ୍ର ମୁଁ ମନେ ମନେ ହସୁଥାଏ ଏବଂ ଭାବୁଥାଏ ତର୍କ ପ୍ରତିଯୋଗିତାରେ ଭାଗ ନେଉଛି ପୁଅ ସମସ୍ତଙ୍କ ଆଗରେ କହି ପାରିଲେ ତା'ର ସାହସ ବଢ଼ିବ ବୋଲି - ସେଥିରେ ସେ କାହିଁକି ଭାବିବ ମୋ ଆଗରେ କେହି ନାହାନ୍ତି ବୋଲି ? ପ୍ରତିଯୋଗିତା ଦିନ ସମସ୍ତ ଅଭିଭାବକ ଓ ଅଭିଭାବିକାମାନଙ୍କୁ ଡକା ଯାଇଥିବାରୁ ପୁଷ୍ପା ମୋତେ ଏକରକମ ବାଧ୍ୟ କଲେ ପୁଅକୁ ଧରି ତା' ସ୍କୁଲକୁ ଯିବା ପାଇଁ । ମୁଁ ଯେତେ ଅନ୍ୟ କାମର ଆଳ ଦେଖାଇଲେ ମଧ ତାଙ୍କର ଏକା ଜିଦ୍ ଥିଲା ପୁଅ ଆମର ପ୍ରଥମ ଥର ପାଇଁ ଷ୍ଟେଜ୍‌ରେ କହିବ, ଆମେ ଦେଖିବା କଥା । ଯେତେ ହେଲେ ଘରେ କହିବା ଓ ଷ୍ଟେଜ୍‌ରେ କହିବାର ଫରକ୍ ଅଛିନା । ଅଗତ୍ୟା ବାଧ୍ୟ ହୋଇ ସେମାନଙ୍କୁ ଧରି କରିଗଲି ।

ବାଟରେ ସ୍କୁଟର ଉପରେ ଆହୁରି ଥରେ ଦୁଇଥର ରିହର୍ସାଲ କରାଇ ନେଲେ ସେ ଯେମିତି ପୁଅ ଆଇ.ଏ.ଏସ୍. ପରୀକ୍ଷାର ମୌଖିକ ଦେବାକୁ ଯାଉଛି । ସ୍କୁଲରେ ପହଞ୍ଚି ପେଣ୍ଡାଲ ଉପରେ ଥିବା ମାଇକ୍ ଷ୍ଟାଣ୍ଡକୁ ଦେଖାଇ କହିଲେ ଦେଖ୍ – ମାଇକ୍ରୋଫୋନ୍ ଆଗରେ ଏମିତି ଠିଆ ହେବୁ ଏ ପଟକୁ ଅନାଇବୁ ଇତ୍ୟାଦି ଇତ୍ୟାଦି... ।

ସବୁ ପ୍ରସ୍ତୁତି ପରେ ପୁଅର ନାଆ ଯେତେବେଳେ ଡକାଗଲା ତାକୁ ସେ ଶେଷ ଥରକ ପାଇଁ ମନେ ପକାଇ ଦେଲେ ଭୁଲିବୁନି । ଡରିବୁନି, ମୁଁ ଯେମିତି କହିଛି ସେମିତି କହିବୁ । ମାଆ ଆଗରେ ବୀର ଦର୍ପରେ ହଁ – ହଁ ମାରି ଚାଲିଯାଉଥିବା ପୁଅ ଷ୍ଟେଜ୍ ପାଖରେ ପହଞ୍ଚିବା ବେଳକୁ ମୁହଁ ପୋତିବା ଆରମ୍ଭ କରିଦେଇଥାଏ । ଛୋଟ ପିଲାଟାଏ ବୋଲି ତା'ର ଜଣେ ଶ୍ରେଣୀ ଶିକ୍ଷକ ତା ହାତ ଧରି ମାଇକ୍ରୋଫୋନ୍ ପାଖକୁ ନେଇ ଯାଇ ତା' ଉଚ୍ଚତା ଅନୁଯାୟୀ ମାଇକ୍ରୋଫୋନ୍‌କୁ ନୁଆଁଇ ଆଣି କହିଲେ- ଏବେ ଆରମ୍ଭ କର ।

ଆରମ୍ଭ କରିବାକୁ ଯାଇ ଥଥ – ମମ ହୋଇ ପୁଅ ଦୁଇ ଚାରିଥର ଏପଟ ସେପଟକୁ ଚାହିଁଲା । ବଡ଼ କଷ୍ଟରେ ତା'ର ସ୍ମୃତିକୋଷକୁ କୋରି କୋରି ଶବ୍ଦଟିଏ ବାହାର କଲା ମାନନୀୟ... ମାଆ ... ନ..ଅ..ଅ..ନୀ..ୟ... । ସେହି ଶବ୍ଦଟିକୁ ଦୁଇ ଚାରିଥର କହିବା ପରେ ବଡ଼ ଅସହାୟ ହୋଇ ତା' ଶ୍ରେଣୀ ଶିକ୍ଷକଙ୍କ ଆଡ଼କୁ ଚାହିଁଲା । ଶିକ୍ଷକ ଯେତେବେଳେ ଜାଣିଲେ ସେ ଆଉ କହି ପାରିବ ନାହିଁ । ସେତେବେଳେ କହିଲେ ଠିକ୍ ଅଛି ମନେ ପଡୁନି ଯଦି ଯାଆ । ଏତକ ଶୁଣି ସାରିବା ପରେ ସେ ଦୌଡ଼ି ଦୌଡ଼ି ପଳାଇ ଆସିଲା । ଷ୍ଟେଜ୍ ଉପରେ ତା'ର ଅବସ୍ଥା ଦେଖି ମୁଁ ଭାବୁଥିଲି ପୁଷ୍ପା ଏଇନେ ରାଗିକରି ଅଗ୍ନିଶର୍ମା ହେଉଥିବେ । ପୁଅର ଅନ୍ୟ କୌଣସି ପ୍ରତିଯୋଗି ଯଦି କହିପାରିଲେ ତେବେ ତାଙ୍କର ରାଗ ବଢ଼ିଯାଇପାରେ ତେଣୁ ତୁରନ୍ତ ଘରକୁ ଫେରିଯିବା ଉଚିତ ।

ବଡ଼ ଆଶ୍ଚର୍ଯ୍ୟର କଥା ଫେରିବା ସମୟରେ ସେ ବାଟସାରା ପୁଅକୁ କିଛି କହି ନଥିଲେ । ଘରେ ପହଞ୍ଚି ଶାଢ଼ୀ ନବଦଳାଇ ବିଛଣା ଉପରେ ରାଗରେ ଗଡ଼ିପଡ଼ି କହିଲେ ମୁଁ ଯେତେ କଲେ କ'ଣ ହେବେ ଯେମିତି ବାପ ସେମିତି ପୁଅତ ହେବ ।

ମୁଁ ଜାଣୁଥିଲି ଏବେ କିଛି କହିବା ଅର୍ଥ ଗୋଟିଏ ଝଡ଼ ବହିପାରେ, ତେଣୁ ମୁଁ ନିରବ ରହି ଜଣାଇଲି ଯେମିତି ପୁଅର ଏ ବିଫଳତାରେ ତାଙ୍କଠାରୁ ମୁଁ ଅଧିକ ମର୍ମାହତ ।

ତା'ପରେ ଆସୁଥିବା ବାର୍ଷିକ ପରୀକ୍ଷା ପାଇଁ ପୁଅକୁ ପ୍ରସ୍ତୁତ କରିବାରେ ଲାଗିପଡ଼ିଲେ । ପଢ଼ାଇବା ବେଳେ ତାକୁ ବାରମ୍ବାର କହୁଥିଲେ ତୋ ଦ୍ୱାରା ଶାଠତ କିଛି ହେବ ନାହିଁ ଅନ୍ତତଃ ପାଠରେ କରାମତି ଦେଖା ।

ପୁଅ ପରୀକ୍ଷା ଦେଲା । ପରୀକ୍ଷାରୁ ଫେରି ସେହି ପ୍ରଶ୍ନକୁ ପୁନଃ ପରୀକ୍ଷା ଦେଉଥିଲା ମମି ପାଖରେ । ତା'ର ଉତ୍ତର ଶୁଣି ସେ ଖୁସି ହେଉଥିଲେ ଯେ ପୁଅ ନିଶ୍ଚୟ କ୍ଲାସ୍‌ରେ ପୋଜିସନ୍ ରଖିବ । ପରୀକ୍ଷା ଫଳ ବାହାରିବା ଦିନ ସେ ନିଜେ ଯାଇଥିଲେ ସ୍କୁଲକୁ । ଫାଷ୍ଟ, ସେକେଣ୍ଡ, ଥାର୍ଡ ଭିତରେ ପୁଅର ନାଁ ନ ଦେଖି ରାଗରେ ଫାଟିପଡ଼ି ଲିଷ୍ଟକୁ ଦେଖିବା ବେଳେ ପୁଅ ଯାଇ ଥିଲା କାହିଁ କେତେ ପିଲାଙ୍କ ତଳେ । ଘରକୁ ଫେରିଲା ପରେ ମୁଁ ପଚାରିଲି କ'ଣ ହୋଇଛି ତା' ରେଜେଲଟ୍ ?

କ'ଣ ହେବ - ଚୋପା ? କୌଣସି ପୋଜିସନ୍ ନାହିଁ, କୁଆଡ଼େ ଗଲା ସିଏ ?

ପୁଅ ଷ୍ଟଡ଼ି କିଟ୍‌ସ ଧରି ତା' ପଢ଼ା ଘରେ ଖେଳୁଥିଲା । ତାକୁ ଘୋଷାଡ଼ି ଘୋଷାଡ଼ି ଆଣି ପଚାରିଲେ - କାହିଁ କ'ଣ ହୋଇଛୁ କ୍ଲାସରେ ? ତୋ ପଛରେ ଆଉ କେତେ ଲାଗିଥିଲେ ତୁ କ୍ଲାସ୍‌ରେ ପୋଜିସନ୍ ରଖିଥାନ୍ତୁ ?

ପୁଅକୁ ମାରିବା ପାଇଁ ବାଡ଼ି ଖୋଜିଲାବେଳେ ମୁଁ କହିଲି ଏମିତି କଲେ ପିଲାଙ୍କର ପାଠ ହୋଇଯିବନି ।

ଆଉ କ'ଣ କଲେ ଏ କୁଳାଙ୍ଗାର କରି ପାରିଥାନ୍ତା କୁହ ?

ମୁଁ ପୁଅକୁ କାଖେଇ ପକାଇ କହିଲି - ବାପା ! ତମେ ପୋଜିସନ୍ ରଖିପାରିଲନି ନା.. ?

ପୁଅ ଭୟ ମିଶ୍ରିତ ସ୍ୱରରେ କହିଲା - ସେମାନଙ୍କ ମମିମାନେ ମଧ୍ୟ ଚାହୁଁଥିଲେ ସେମାନେ ଫାଷ୍ଟ ହୁଅନ୍ତୁ ବୋଲି । ମୁଁ ଆଉ...

ମୁଁ ପୁଷ୍ପାଙ୍କୁ ଚାହିଁ କହିଲି ଏ ମମି ଡାଡିମାନଙ୍କ ପ୍ରତିଯୋଗିତାରେ ଜଣେ ତ କେହି ଫାଷ୍ଟ ହୋଇଥାଆନ୍ତା ପୁଅ ନ ହେଲା ନାହିଁ ।



# ଅଥଳ ଆଶ୍ରୟ

ନା – କିଛି ଗୋଟାଏ କରିବାକୁ ପଡ଼ିବ । ଏମିତି ବସି ରହିଲେ କିଛି ହେବନି । ମନେ ମନେ ଏକଥା କହିସାରି ହଠାତ୍ ଉଠିପଡ଼ି ଅଲଗୁଣିରେ ପଡ଼ିଥିବା ପ୍ୟାଣ୍ଟ୍ ସାର୍ଟକୁ ଗଳାଇ ପକାଇବ । ଅଲଗୁଣିରେ ପଡ଼ିଥିବା ହେତୁ ସାର୍ଟଟା ଟିକିଏ ଲୋଚାକୋଚା ହୋଇଯାଇଥିବ, ତାକୁ ହାତରେ ଟାଣି ପ୍ଲେନ୍ କରି ଇନ୍ କରିଦେବ । ବାରଣ୍ଡା କଡ଼ରେ ଥୁଆ ହୋଇଥିବା ସାଇକେଲ ଉପରୁ ଧୂଳି ଝାଡ଼ିବ ଏବଂ ଟାୟାରକୁ ଚିପି ପମ୍ପ ଅଛି କି ନାହିଁ ପରୀକ୍ଷା କରିବ । ପଛ ଚକର ପମ୍ପ ଲିକ୍ ହୋଇଯାଇଥିବ, ତେଣୁ ତାକୁ ନେବ କି ନ ନେବ ଚିନ୍ତା କରି ପକେଟ୍ ଉଣ୍ଡାଳିବ । କିଛି ମାତ୍ର ଟିକିର ପଇସା ପଡ଼ିଥିବ ପକେଟ୍‌ରେ । ତାକୁ ବାହାରକୁ ବାହାର କରି ଗଣିବା ପୂର୍ବରୁ ସେ ହିସାବ କରିନେଇସାରିଥିବ ଯେ ସେତିକି ପଇସାରେ ପ୍ୟାଚ୍ ବି ପକେଇ ହେବନି । ରାଗରେ ସାଇକେଲ୍‌କୁ ଗୋଇଠାଟିଏ ମାରିବ । ସାଇକେଲ୍ ସ୍ପୋକ୍ ଭିତରେ ଚପଲଟି ପଶିଯାଇ ଟେପ୍‌ଟି ଛିଣ୍ଡିଯିବ । ଶଃ.. ମହରଗରୁ ଯାଇ କାନ୍ତାରରେ ପଡ଼ିଲା । ଘର ଭିତରକୁ ଯାଇ ଏପଟ ସେପଟ ଗୋଟେ କ'ଣ ଖୋଜାଖୋଜି କଲାପରି ହେବ । ଅଲଗୁଣି ଉପରେ ପଡ଼ିଥିବା ତା' ସାନ ଭଉଣୀର ବ୍ଲାଉଜ୍‌ରୁ ସେପ୍‌ଟିପିନ୍‌ଟିଏ ବାହାର କରି ଚପଲରେ ଲଗାଇବ । ଘରୁ ବାହାରୁ ବାହାରୁ ବୋଉକୁ ଡାକି କହିବ – ବୋଉ ମୁଁ ଯାଉଛି । ଖଳା ପାଖରେ ଅଗାଡ଼ି ଓ ଗୋବର ମିଶାଇ ଘଷି ପାରୁଥିବା ତା ବୋଉ କ'ଣ କହୁଥିବ ଶୁଭୁନଥିବ ଅଥଚ ତାକୁ ଲାଗୁଥିବ ବୋଉ ସେମିତି କହୁଛି – ଆହା ଗଡ଼ ଜିଣିବାକୁ ରୋଜଗାରିଆଟା ବାହାରିଗଲା ପରା !

ତରତରରେ ଘରୁ ବାହାରି ଗଲେ ମଧ୍ୟ ସତର୍କତାର ସହ ପାଦ ପକାଉଥିବ କାଳେ ଚପଲରୁ ସେପ୍‌ଟିପିନ୍‌ଟି ବାହାରି ଯାଇପାରେ ! ଯୋଗକୁ ସେ ଝୁଣ୍ଟି ପଡ଼ିବ ଓ ସେପ୍‌ଟିପିନ୍‌ଟି ଚେପଟା ହୋଇ ବାହାରି ପଡ଼ିବ । ପରିସ୍ରା କରିବା ବାହାନାରେ ଗୋଟେ ଗଛ କଡ଼କୁ ଯାଇ ପୁଣିଥରେ ସେପ୍‌ଟିପିନ୍‌ଟିକୁ ସିଧା କରି ଲଗାଇବ, ତା'ପରେ ଧୀରେ ଧୀରେ ଯାଇ ଗାଁ ପାଖ ବସ୍ ଷ୍ଟପ୍‌ର ପାନ ଦୋକାନ ପାଖରେ ଅପେକ୍ଷା କରିବ

'ରଂଗଲତା' ବସ୍ ପାଇଁ । ଅପେକ୍ଷା କରିବା ଅବସରରେ ପାନ ଖଣ୍ଡେ ବରାଦକରି ପେପର ପଢ଼ିବ, ଗ୍ୟାଟ୍, ଡଙ୍କେଲ୍, କ୍ରାୟୋଜେନିକ୍ ଇଂଜିନ୍ କାରବାର, ଜେପିସି ରିପୋର୍ଟ, ଅର୍ଥନୈତିକ କ୍ଷେତ୍ରରେ ସଂସ୍କାର, ଗୁପ୍ତା କମିଟି କିମ୍ବା ମାଲହୋତ୍ରା କମିଟି ରିପୋର୍ଟ ପଢ଼ିବାକୁ ତା'ର ଧୈର୍ଯ୍ୟ ନ ଥିବ । ବରଂ ସେ ଆମୋଦିତ ହେଉଥିବ ବିଧାନ ସଭାରେ କବିତା, ବିଧାୟକଙ୍କର ବିଚିତ୍ର ବେଶ, କଟକରେ ବିଚିତ୍ର ଧରଣର ଠକାର ଇତ୍ୟାଦି ଦେଖି ସେ ଶିହରି ଉଠିବ, "କ୍ଷତ୍ରୀୟ ଖଣ୍ଡାୟତ ସଂରକ୍ଷଣ ନୁହେଁ ସମ୍ମାନ ଚାହାନ୍ତି" ଶୀର୍ଷକ ପତ୍ରକୁ ଦେଖି । ଶଃ ! ନିଜେ କେଉଁଠି ପ୍ରଫେସର ହୋଇ ଯାଇଛି ବୋଲି ଏବେ ନିଜ ଜାତି ପାଇଁ ସମ୍ମାନ ଚାହୁଁଛି, ଆଗେ ନିଜେ ବଞ୍ଚିଲେ ସିନା ସମ୍ମାନ ଆଶା କରିବ । ଜମି ବିକି ପାଠ ପଢ଼ିବ, ଘଷି ବିକିଲେ ଘର ସଉଦା କିଣାହେବ, ବାଦାମ ଓ ବିରି ବିକା ପଇସାରେ ଲାଭ କ୍ଷତି କେତେ ହେଲା ଝିଅ ବାହାଘର ଚିନ୍ତାରେ ହିସାବ କରି ହେଉନଥିବ, ସେଥିରେ କ'ଣ ନା ଆମେ ସମ୍ମାନ ଚାହୁଁ । ସମ୍ମାନ କ'ଣ ଆଳୁ ନା ବାଇଗଣ ତାକୁ ଅନ୍ୟମାନେ ତମକୁ ଦେବେ ?

କି ସମ୍ମାନ ? କେଉଁ ସମ୍ମାନ କଥା କହୁଛ ? ଧୋଇଆ ଜେନା ପୁଅ ଆମ ସାଙ୍ଗରେ ପଢୁଥିଲା । ବଡ଼ କଷ୍ଟରେ ତିନି ଚାରି ଥରରେ ମ୍ୟାଟ୍ରିକ୍ ପାଶ୍ କଲା । ମ୍ୟାଟ୍ରିକ ପାଶ୍ କରି ଏ.ଏସ.ଆଇ ହୋଇଗଲା । ଆମେ ପାଠ ପଢ଼ି ଏମ୍.ଏ.ପାଶ୍ କଲାବେଳକୁ ସେ ଏସ୍.ଆଇ । କେଉଁ ଗୋଟେ ଥାନାରେ ଏବେ ଓ.ଆଇ.ସି । ତା'ର କି ଥାଟ୍ ବାଟ୍ ଏବେ ! ଗାଁକୁ ଆସିଲେ ତା' ପାଖରେ ଭିଡ଼ । ଦିନ୍ ଯୁବକ ସଂଘ ଘରେ ଫିଷ୍ଟ କୁକୁଡ଼ା ଓ ମଦ । ରମା ଭାଇ, ରମା ଭାଇ ବୋଲି ଗାଁ ପିଲେ ହୁରି ପକାନ୍ତି । ସେ ତ ଏବେ ଖୁବ୍ ସମ୍ମାନ ପାଇଛି । ତା' ବାପାକୁ ଯେଉଁମାନେ ପିଣ୍ଡା ଉପରେ ଅଖାପଟେ ଦେଉଥିଲେ ବସିବା ପାଇଁ ଏଇନେ ରମାକୁ ଘରଭିତରେ ସୋଫାରେ ବସାଇ ଚ଼' ଦେଉଛନ୍ତି । ତା' ବାପାକୁ ରସ କଂସାରେ ଚା' ଦେଇ ଯେଉଁମାନେ ପାଣି ଟେକି ଦେଉଥିଲେ ଧୋଇବା ପାଇଁ, ସେମାନେ ଏବେ ରମା ପିଇଥିବା କପ୍ ପ୍ଲେଟ୍‌କୁ ତା'ରି ସାମ୍ନାରେ ନିଜ ଝିଅ ବୋହୂଙ୍କ ହାତରେ ଉଠାଉଛନ୍ତି । ତମର କେଉଁ ଜାତି ପାଇଁ ଏ ସମ୍ମାନ ମିଳୁଛି ? ସେହି ଏକ ଅଯଥା ଅହଂଭାବ ପାଇଁ ତ ଆଜି ଏତେ ପଛରେ । ଯୁଗ ଏତେ ଆଗେଇ ଗଲା ପରେ ମଧ୍ୟ ଆହୁରି ଜାତିକୁ ନେଇ ସମ୍ମାନ ଖୋଜୁଛ ?

ଟ୍ରେକରବାଲାଟିଏ ଡାକ ଛାଡୁଥିଲା – ଯାଜପୁର, ଯାଜପୁର । ପାନ ଦୋକାନୀ ପାନଟିଏ ବଢ଼ାଇ ଦେଉ ଦେଉ କହିଲା ଟାଉନ୍ ଯିବେ ପରା, ଯାଉନାହାନ୍ତି ଟ୍ରେକର

ଫାଙ୍କା ଅଛି । ପେପର ପଢୁ ପଢୁ ପାନ ଦୋକାନୀ କଥା ଶୁଣୁଥିଲେ ସୁଦ୍ଧା ସେ କିଛି କହୁନଥିଲା – କାରଣ ସେ ଜାଣେ ଏବେ ଟ୍ରେକରରେ ଯିବା ଅର୍ଥ ପାଞ୍ଚଟଙ୍କା, ଯାହାକି ତା' ପାଖରେ ନାହିଁ । 'ରଙ୍ଗଲତା' ବସ୍‌ରେ ତାଙ୍କ ଗାଁ ଗୋପାଳ କଣ୍ଡକ୍ଟର । ସେଥିରେ ଗଲେ ତାକୁ ପଇସା ଦେବାକୁ ପଡ଼ିବନି । କାରଣ ଗୋପାଳ ଜାଣେ ତା' ଅବସ୍ଥା । ଯଦି କେବେ ତା' ପାଖରେ ପଇସା ଥାଏ, ସେ ଦେଲେ ମଧ୍ୟ ଗୋପାଳ ରଖେନା । ଗାଁ ହିସାବରେ ବଡ଼ଭାଇ, ଠିକ୍ ବଡ଼ଭାଇର ବ୍ୟବହାର ଦେଖାଏ । ଥରେ ଥରେ ସେ ବସ୍‌ରୁ ଓହ୍ଲାଇବା ବେଳେ ତା' ହାତରେ ପାଞ୍ଚ ଦଶ ଗୁଞ୍ଜିଦେଇ କହେ – ରଖିଥା ପାନ ଚା' ଖାଇ ନେବୁ । ଅପେକ୍ଷା କରିଥିବୁ ମୁଁ ଫେରିଲେ ଯିବା । ତେଣୁ ଏବେ ପକେଟ୍‌ରେ ଟଙ୍କା ନ ଥିବା ଅବସ୍ଥାରେ ସେ ବା କାହିଁକି ଟ୍ରେକର୍‌ରେ ଯିବାକୁ ମନ ବଳାଇବ ?

ଠିକ୍ ସମୟରେ ରଙ୍ଗଲତା ବସ୍ ଆସିଲା । ମାତ୍ର ଗୋପାଳ କଣ୍ଡକ୍ଟର ନ ଥିଲା । ଜଣେ ନୂଆ କଣ୍ଡକ୍ଟରକୁ ଦେଖି ପଚାରିଲା ଆଜି ଗୋପାଳ ଭାଇ ନାହିଁକି ? ଟିକେଟ୍ କାଟୁ କାଟୁ କଣ୍ଡକ୍ଟର କହିଲା – ହଁ ସେ ଟାଉନ୍‌ରେ ରହିଛନ୍ତି, ସେଠାରୁ ଯିବେ । ପକେଟ୍‌ରେ ଟଙ୍କା ନାହିଁ । ଗଲେ ଯଦି ଏ କଣ୍ଡକ୍ଟର ଭଡ଼ା ମାଗେ ହୀନସ୍ତା ହେବ । ଯିବ କି ନ ଯିବ ଚିନ୍ତା କରୁଥିବାବେଳେ ତାଙ୍କ ଗାଁର ଆଉ ଜଣେ ଲୋକ ଭିଡ଼ ଠେଲି ଓହ୍ଲାଇ ଆସୁ ଆସୁ ତାକୁ ଦେଖି ପଚାରିଲେ – ତୁ ଟାଉନ୍ ଯାଇଛୁ କି ? ଏଠି ଫ୍ୟାରେକ୍ସ ମିଳୁନି, ଛୁଆଟା ଦୁଇଦିନ ହେଲା ହଇରାଣ ହେଉଛି । ମୁଁ ସେଥିପାଇଁ ଯାଉଥିଲି । ମାତ୍ର ଅରଜେଣ୍ଟ କାମଟିଏ ପଡ଼ିଯିବାରୁ ଯାଇପାରୁନି । ଏ ଟଙ୍କାଟା ରଖିଥା, ଯଦି ପାରୁ ଫେରିବା ବେଳେ ଗୋଟେ ଫ୍ୟାରେକ୍ସ ଧରି ଆସିବୁ । ତାଙ୍କ ହାତରୁ ଟଙ୍କା ନେବା ପରେ ତା' ଭିତରେ ସାହସ ହୋଇଗଲା, ଟଙ୍କା ତ ଅଛି ଟିକେଟ ପାଇଁ ଦେଇହେବ, ତେଣୁ ବସ୍ ଭିତରକୁ ଉଠିଯାଇ ଗୋଟିଏ ତିନି ଟିକିଆ ସିଟ୍ ସାଇଡ୍‌ରେ ବସିପଡ଼ିଲା ।

ସେ ସିଟ୍‌ରେ ଆଗରୁ ଯେଉଁ ଦୁଇଜଣ ବସିଥିଲେ ସେମାନେ ଖୁବ୍ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଲୋଚନା କରୁଥିଲା ପରି ତାକୁ ଲାଗିଲା । ଇଚ୍ଛା ନ ଥିଲେ ବି ତାଙ୍କ କଥା ତା' କାନରେ ବାଜି ଯାଉଥିଲା । ଜେ.ଆର.ୱାଇରେ ବାଟମାରଣା, ଅନାସ୍ଥା ପ୍ରସ୍ତାବ ଇତ୍ୟାଦି କିଛି କଥା, ଏପଟ ସିଟ୍‌ରୁ ଦୁଇଜଣ ଯୁବକ କଥା ହେଉଥିଲେ – ଆଗରୁ ଧରାଧରି ଚଳୁଥିଲା, ଏବେ ଆଉ ଧରାଧରି ନୁହଁ ନିଲାମ ଚାଲିଛି । ସେଲ୍‌ଟାକ୍ସ ଇନ୍‌ସ୍‌ପେକ୍ଟର ପାଇଁ ଏଥର ନିଲାମ ଉଠିଛି ଅଶୀ ହଜାର, ଏସ.ଆଇ ପାଇଁ ପଚାଶ ହଜାର । ଏଥିରେ ଆମ କଥା ପଚାରେ କିଏ ? ଏପରିକି ଆମ ଗାଁରେ ନୂଆ ଖୋଲିଥିବା

ଗୋଟେ କଲେଜ୍ ଯାହାର ଭୂତ ଭବିଷ୍ୟତରେ କିଛି ଠିକଣା ନାହିଁ, ସେଠି ରହିବାକୁ ଲେକ୍‌ଚରମାନେ ତ ପଇସା ଦେଲେ ଦେଲେ, କିରାଣୀ ପୋଷ୍ଟିଂ ପାଇଁ ନିଲାମ ଉଠିଲା ପଚିଶ ହଜାର ।

ସେସବୁ ଶୁଣୁଥିଲା ଅଥଚ କିଛି ବୁଝି ପାରୁ ନ ଥିଲା । ବୁଝି ପାରୁ ନ ଥିଲା ନୁହଁ ବରଂ କୌଣସି ଥଳକୂଳ ପାଉ ନ ଥିଲା । ତାକୁ ଲାଗୁଥିଲା ଏ ପଦ୍ଧତିର ସ୍ରୋତରେ ସେ ଭାସି ଯାଉଥିବା ପିମ୍ପୁଡ଼ିଟିଏ ଯାହାର କୌଣସି ସ୍ଥଳଭାଗରେ ଲାଗିବାର ଆଶା ଓ ବିଶ୍ୱାସ କ୍ଷୀଣ । ବସ୍‌ରୁ ଓହ୍ଲାଇବା ପରେ ତା' ମୁଣ୍ଡ ଏମିତି ଗୋଳମାଳିଆ ଧରି ଯାଇଥିଲା ଯେ ସେ କ'ଣ ପାଇଁ ଘରୁ ବାହାରି ଆସିଥିଲା ଚିନ୍ତା କରି ପାରୁନଥିଲା । ଏମିତି ଅନ୍ୟମନସ୍କ ଭାବରେ ସେ ପହଞ୍ଚି ଯାଇଥିଲା ନୂଆ କରି ଖୋଲିଥିବାଗୋଟେ କମ୍ପାନୀର ଅଫିସ୍ ପାଖରେ, ଯେଉଁ କମ୍ପାନୀର ଟାଇପିଷ୍ଟ ପଦବୀ ପାଇଁ ସେ ଦରଖାସ୍ତ କରି ଇଣ୍ଟରଭ୍ୟୁ ଦେଇଥିଲା । ଇଣ୍ଟରଭ୍ୟୁ ଓ ଟାଇପିଂ ଟେଷ୍ଟରେ ସେ ଖୁବ୍ ଭଲ କରିଥିଲା ଏବଂ ତା'ର ଆତ୍ମବିଶ୍ୱାସ ଥିଲା ଯେ ସେ ପାଇବ ନିଶ୍ଚୟ ।

ମାତ୍ର ବହୁଦିନ ଯାଏଁ ଅପେକ୍ଷା କଲାପରେ କିଛି ନ ପାଇବାରୁ ସେ ଧରି ନେଇଥିଲା ସବୁଥର ପରି ଏଟା ମଧ୍ୟ ହେଲାନି । ତଥାପି ଆସି ସାରିଛି ଯେତେବେଳେ ସେ କମ୍ପାନୀର ଡିଲିଂ ଆସିଷ୍ଟାଣ୍ଟକୁ ଇଣ୍ଟରଭ୍ୟୁ ବିଷୟରେ ପଚାରିଦେବାଟା ଭଲ ହେବ ଭାବି ଭିତରକୁ ଗଲା । ଭିତରକୁ ପଶିବାକ୍ଷଣି ଦେଖିଲା ଟାଇପ୍ ମେସିନ୍ ପାଖରେ ବସି ଜଣେ ଖଟ୍‌ଖାଟ୍ କରୁଛି । ଯେହେତୁ ସେ ପିଲାଟି ତା' ସହ ମଧ୍ୟ ଟାଇପିଂ ଟେଷ୍ଟ ଦେଉଥିଲା ତାକୁ ଚିହ୍ନିବାରେ ତା'ର କିଛି ଅସୁବିଧା ହେଲାନି । ତେଣୁ ସେ ଜାଣିନେଲା ସେ ସ୍ଥାନଟି ବି ପୂରଣ ହୋଇଗଲା । ଆଉ କ'ଣ ପଚାରିବ ଭାବି ଫେରି ଆସୁ ଆସୁ ଭିତରକୁ ଚାଲିଗଲା । ଡିଲିଂ ଆସିଷ୍ଟାଣ୍ଟଙ୍କ ଚେୟାର ପାଖରେ ଯାଇ ଠିଆ ହେଲା । ସେ ଫାଇଲ ନେଇ ମଗ୍ନ ଥିଲେ । ନିଜ ଉପସ୍ଥିତି ଜଣାଇବା ପାଇଁ ଫୋପାଡ଼ିଲା ଭଳି କହିଲା – ଆଜ୍ଞା ନମସ୍କାର !

କ'ଣ କାମ ଥିଲା ?

ହଁ, ମୁଁ ଟାଇପିଷ୍ଟ ପାଇଁ ଏଠାରେ ଇଣ୍ଟରଭ୍ୟୁ ଦେଇଥିଲି ।

ଆଚ୍ଛା ।

ସେ ଇଣ୍ଟରଭ୍ୟୁ କ'ଣ ହେଲା ?

ପୋଷ୍ଟିଂ ତ ସରିଲାଣି ।

ଜାଣେ ।

ତେବେ ?

ଏ ପୋଷ୍ଟିଂ କ'ଣ ମେରିଟ୍‌ରେ ହୋଇଛି ?

ମାନେ !

ଏ ଯେଉଁ ପିଲା ଟାଇପ୍ କରୁଛି ସେ ବି ମୋ ସହ ଇଣ୍ଟରଭ୍ୟୁ ଦେଇଥିଲା । ମୁଁ ଜାଣେ ସେ କ'ଣ କରିଥିଲା । ମୁଁ ଆଶ୍ଚର୍ଯ୍ୟ ହେଉଛି ସେ କେମିତି ପାଇଗଲା ।

ମୁଁ ବି ଆଶ୍ଚର୍ଯ୍ୟ ହେଉଛି !

ମାନେ !

ଏଇ ଦେଖ ତା'ର ଟାଇପ୍ । ମାତ୍ର, ଏମ୍.ଡି.ଙ୍କ ଇଚ୍ଛା, ଆମେ କିଏ ?

ମୁଁ ଏମ୍.ଡି.ଙ୍କୁ ଭେଟି ପାରିବି କି ?

କ'ଣ ପଚାରିବ ?

କେବଳ କହିବି ଗୋଟେ ରେଟ୍ ଚାର୍ଟ ଟାଙ୍ଗି ଦିଅନ୍ତୁ, ଯିଏ ସକ୍ଷମ ହେବ ସେ ଚାକିରି କରିବ ।

ଆଜି ଏମ୍.ଡି. ନାହାନ୍ତି ।

ଠିକ୍ ଅଛି, ମୁଁ ପରେ କେବେ ଆସିବି ।

ସେ ବାହାରକୁ ବାହାରିବା ବେଳେ ଡିଲିଂ ଆସିଷ୍ଟାଣ୍ଟ କହିଲେ ରୁହ ସାଙ୍ଗ ହୋଇ ବାହାରକୁ ଯିବା ।

ବାହାରକୁ ଆସିବା ପରେ ପଚାରିଲେ କ'ଣ ଆପଣଙ୍କ ନାଁଟା ତ ମୁଁ ଭୁଲିଯାଉଛି ।

ନାଁଟା ଶୁଣିବା ପରେ କହିଲେ ଖଣ୍ଡାୟତ ତା' ହେଲେ ?

ହଁ, କ'ଣ ହେଲାକି ?

ନାହିଁ ଯେ ମୁଁ ସାର୍ଟିଫିକେଟ ଭେରିଫିକେସନ୍ କଲାବେଳେ ଆପଣଙ୍କ ମେରିଟ୍ ଦେଖି ଖୁସି ହୋଇଥିଲି । ସବୁଥିରେଫାଷ୍ଟକ୍ଲାସ୍ ପାଇଛନ୍ତି ପୁଣି ଇକୋନୋମିକ୍ସ୍‌ରେ, ଏମ୍.ଏ. ଅଥଚ ଟାଇପିଷ୍ଟ ପାଇଁ ଆବେଦନ ! ସେଦିନ ମୋର ଅଭିଶାପ ଦେବାକୁ ଇଚ୍ଛା ହୋଇଥିଲା ଆମର ପ୍ରଚଳିତ ବ୍ୟବସ୍ଥାକୁ ।

ସେ ଭାବୁଥିଲା ତାକୁ ଏତେ ଟେକିବା ଭିତରେ ବୋଧେ ସେ ପଇସା ପତ୍ର ବିଷୟରେ କିଛି କଥାବାର୍ତ୍ତା କରିବେ । ତା' ହେଲେ ଟାଇପିଷ୍ଟ ପୋଷ୍ଟରେ ପରମାନେଣ୍ଟ ପୋଷ୍ଟିଂ ହୋଇନି । ହଉ, କ'ଣ କେତେ ଦବା ନବା ଚାଲିଛି ସେ ତାଙ୍କ ତରଫରୁ କୁହନ୍ତୁ ।

ଆସନ୍ତୁ ଟିକେ ଚା' ପିଇବା ।

ସେ ମନା କରୁ କରୁ ରାଜି ହୋଇଗଲା ତାଙ୍କର ଉଦ୍ଦେଶ୍ୟ କ'ଣ ଜାଣିବାକୁ ।

ଚା' ପିଇବା ଅବସରରେ ସେ ପଚାରିଲେ ଘରେ ଆଉ କିଏ କିଏ ସବୁ ଅଛନ୍ତି ?

ବାପା, ମାଆ, ସାନ ଭଉଣୀ ଓ ସାନ ଭାଇଟିଏ ।

ବାପା କ'ଣ କରନ୍ତି ?

ଚାଷ ।

ଜମିବାଡ଼ି କେତେ ଅଛି ?

ସେମିତି ବେଶି ନାହିଁ, ଦୁଇ ତିନି ଏକର ଧୋଇଆ ଜମି । ଭାଗ ଚାଷ କରନ୍ତି ।

ଭାଇ ଭଉଣୀ ପାଠ ପଢୁଛନ୍ତି ?

ଭଉଣୀ ମ୍ୟାଟ୍ରିକ୍ ପାଶ୍ କରି ଆଉ ପଢ଼ିଲାନି । ପଢ଼ିଲାନି ନୁହଁ ଭଲ ପଢୁଥିଲା; କିନ୍ତୁ ଆମେ ପଢ଼ାଇ ପାରିଲୁନି । ସାନଭାଇ ଏଥର ମ୍ୟାଟ୍ରିକ ପରୀକ୍ଷା ଦେବ ।

ଭଉଣୀର ବାହାଘର ବ୍ୟବସ୍ଥା...

ମୋର ଏମିତି ଅବସ୍ଥାରେ ସେ ବିଷୟରେ ଆମେ ଚିନ୍ତାକରି ପାରୁନୁ । ମୋର କିଛି ଗୋଟାଏ ହବାକୁ ଅପେକ୍ଷା ।

କିଛି ଯଦି ନ ଭାବନ୍ତି ତେବେ ଗୋଟେ କଥା କହିବି ?

କୁହନ୍ତୁ, ଖରାପ କାହିଁକି ଭାବିବି !

କଥା କ'ଣ କି ଆମ ଏମ୍.ଡି.ଙ୍କର ଗୋଟିଏ ଝିଅ ଅଛି । ତା' ବାହାଘର ପାଇଁ ସେ ଖୁବ୍ ବ୍ୟସ୍ତ ଓ ହଇରାଣ ହୋଇସାରିଲେଣି ।

ତାଙ୍କର ତ ଅଜସ୍ର ଟଙ୍କା – ବ୍ୟସ୍ତ ଓ ହଇରାଣ କାହିଁକି ?

ଟଙ୍କା ଥିଲେ ତ ସବୁ ହୋଇଯିବନି । ସବୁ ଅଛି, ଝିଅ ପାଠ ପଢ଼ିଛି, ସୁନ୍ଦରୀ, ସେ ସବୁ ଦବାକୁ ପ୍ରସ୍ତୁତ; କିନ୍ତୁ କିଏ ରାଜି ହେଲେ ତ !

ରାଜି ନ ହେବାର କାରଣ କ'ଣ ?

କଥା କ'ଣ ଝିଅଟା ଜନ୍ମରୁ ପୋଲିଓରେ ଆକ୍ରାନ୍ତ ହୋଇ ଛୋଟି ହୋଇଯାଇଛି । ଗୋଟିଏ ଗୋଡ଼ ସାମାନ୍ୟ ସରୁ, ଆଉ ସବୁ ଥାଇ ମଧ୍ୟ ସେଇଥିପାଇଁ ସବୁ ସମସ୍ୟା ହେଉଛି ।

ମୁଁ କ'ଣ କରିପାରିବି ଏଥିରେ ?

ଆପଣ ଯଦି ରାଜି ହେବେ ବାହା ହେବା ପାଇଁ ତେବେ ଆପଣଙ୍କୁ ଆମ କମ୍ପାନୀରେ ଏକ ପଦସ୍ଥ ଚାକିରି ସହ ଯାହା ମାଗିବେ ଯୌତୁକ ହିସାବରେ ଦିଆଯିବ ।

ଆପଣ ଏ ବିଷୟରେ ଏତେ ଚିନ୍ତିତ କାହିଁକି ?

ଏମ୍.ଡି. ମୋତେ ଏକ ସୁପାତ୍ର ଖୋଜିବାର ଦାୟିତ୍ୱ ଦେଇଥିଲେ । ଟାଇପିଷ୍ଟ ପାଇଁ ସାର୍ଟିଫିକେଟ ଭେରିଫିକେସନ୍ ବେଳେ ସେ ମୋତେ ଆପଣଙ୍କ କଥା କହିଥିଲେ - ଦେଖନ୍ତୁ ଏ ପିଲାକୁ, କିଛି ସମସ୍ୟା ନ ଥିଲେ ଏତେ ଏତେ ଶିକ୍ଷାଗତ ଯୋଗ୍ୟତା ଥାଉ ଥାଉ ଟାଇପିଷ୍ଟ ପାଇଁ ଆବେଦନ କରି ନଥାନ୍ତା । ଆପଣଙ୍କର ସମସ୍ୟା ଅଛି, ତାଙ୍କର ବି ସମସ୍ୟା ଅଛି । ଆପଣ ଯଦି ତାଙ୍କ ସମସ୍ୟାକୁ ସମାଧାନ କରିଦେଇ ପାରିବେ ତେବେ ଆପଣଙ୍କ ସମସ୍ୟା ମଧ୍ୟ ଦୂର ହୋଇଯିବ ।

ଦେଖନ୍ତୁ ଏ ବିଷୟରେ ଏମିତି ହଠାତ୍ ନିଷ୍ପତ୍ତି ନେଇ ହେବନି ।

ନା - ମୁଁ ଆପଣଙ୍କୁ ହଠାତ୍ ନିଷ୍ପତ୍ତି ନେବା ପାଇଁ ମଧ୍ୟ କହୁନି । ଆପଣ ଝିଅକୁ ଥରେ ଦେଖନ୍ତୁ ତା'ପରେ ଚିନ୍ତାକରି ମୋତେ କୁହନ୍ତୁ ।

ଠିକ୍ ଅଛି, ମୁଁ ଏ ବିଷୟରେ ଚିନ୍ତାକରି ଆପଣଙ୍କୁ କହିବି ।

ଘରକୁ ଫେରିବା ପରେ ଦେଖିଲା ତା' ବୋଉ ଓ ଭଉଣୀ ବାଦାମ ଗଛରୁ ବାଦାମ ଛିଡ଼ାଉଛନ୍ତି । ବାପା ଗୁହାଳରେ ଗାଈ ଦୁହୁଁଥିଲେ । କ୍ଷୀର ଦୁହିଁସାରି ଆସିବାପରେ ତାକୁ ଦେଖି କହିଲେ - ତୁ କେତେବେଳେ ଫେରିଲୁ ? କୁଆଡ଼େ ଯାଉଛୁ, କ'ଣ କରୁଛୁ କିଛି କହୁନୁ । ଟିକେ ଏ ପିଲାଟାକୁ ଦେଖିଲେ ହୁଅନ୍ତା ନାହିଁ ! ଏବର୍ଷ ମ୍ୟାଟ୍ରିକ ପରୀକ୍ଷା ଦେବ, ସବୁବେଳେ ଲଗାଇଛି ଟିଉସନ୍ ହେବା ପାଇଁ । ପଇସା କ'ଣ ଗଛରେ ଫଳୁଛି ଯେ ମାସକୁ ଶହେ ଟଙ୍କା ଦେଇହେବ ଟିଉସନ୍ ପାଇଁ ! ଦୁଆର ମାଡ଼ିକି ତ ଜଣେ ବସିଛି ଯେ ତା' ବାହାଘର ଚିନ୍ତା ମୋତେ ଖାଇ ଯାଉଛି । ଭାବିଥିଲି ତୋ'ର ଗୋଟାଏ କିଛି ହୋଇଗଲେ କିଛି କରି ହୋଇଥାଆନ୍ତା । ହେଲେ କିଛି ତ ଆଶା ଦେଖି ପାରୁନି ।

ବାପାଙ୍କ କଥା ଶୁଣି ନ ଶୁଣିଲା ପରି ସେ କୂଅ ମୂଳକୁ ଯାଇ ଗୋଡ଼ ହାତ ଧୋଇ ହେଲା । ଧୂଆଧୋଇ ହୋଇ ଘରକୁ ଫେରିବା ପରେ ସାନ ଭଉଣୀ ପଚାରିଲା - ଭାଇ ଜଳଖିଆ ଖାଇବ ନା ସଜପଖାଳ ?

ଯା' ଅଛି ଦେ ।

ଖାଇସାରି ସାନଭାଇ ଟୁଲୁର ପଢ଼ାଘରକୁ ଗଲା । ସେ ଲଣ୍ଠନଟିଏ ଲଗାଇ ସପ ଉପରେ ପେଟେଇ ପଡ଼ି କ'ଣ ପଢୁଥିଲା । ଭାଇକୁ ଦେଖି ରଖିଦେଇ ଉଠି ବସିଲା ।

କ'ଣ ସବୁ ପଢୁଛୁ ଟୁଲୁ ?

ପରୀକ୍ଷା ପାଇଁ ନୋଟ୍ ରିଭିଜନ୍ କରୁଛି ।

ଦେଖୁ ଦେଖୁ ଟୁଲୁର ନୋଟ୍ ଭିତରୁ ବାହାରି ପଡ଼ିଲା କମ୍ୟୁନିଷ୍ଟ ଲିଟରଚେରର ଲିଫ୍‌ଲେଟ୍ ଖଣ୍ଡେ ।

ନୋଟ୍ ଭିତରେ ଏସବୁ କ'ଣ ?

ଗୋଟେ ମିଟିଂ ଯାଇଥିଲି, ସେମାନେ ବାଣ୍ଟୁଥିଲେ ମୁଁ ନେଇ ଆସିଥିଲି ।

ପଢ଼ିଲୁ ?

ହଁ ।

କ'ଣ ଜାଣିଲୁ ?

ଏଇଟା ତ ଲିଫ୍‌ଲେଟ୍ ଖଣ୍ଡେ, ଏଥିରୁ କ'ଣ ଜାଣି ହେବ ? ମୋତେ ଜଣେ ଛାତ୍ରନେତା ଦୁଇଟି ବହି ଦେଇଥିଲେ, ମୁଁ ତାକୁ ପଢ଼ିଥିଲି ।

କି ବହି ?

କମ୍ୟୁନିଜିମ ଉପରେ । ସେ ବହିକୁ ପଢ଼ିବା ପରେ ମୁଁ ବିଶ୍ଳେଷଣ କରୁଥିଲି ।

କ'ଣ ?

ଆମ ଗରିବୀର କାରଣ ।

କ'ଣ ବୋଲି ଜାଣିଲୁ ?

ଆମେ ପ୍ରୋଲେଟାରିଏଟ୍ ଗ୍ରୁପ୍‌ରେ ଯାଉଛନ୍ତି ନା ?

ମୁଁ କେମିତି ଜାଣିବି ?

ମୁଁ ଜାଣେ ତମେ ଜାଣିଛି ।

କ'ଣ ଜାଣିଛ ?

ସବୁ । ଏଇ ତମେ କେମିତି ଏମ୍.ଏ.ପାଶ୍ କରି ମଧ୍ୟ ବେକାର । ବାପା ଦିନ ତମାମ୍ ଖଟି ଖଟି ମଧ୍ୟ ଠିକ୍ ଭାବରେ ମେଣ୍ଟିପାରୁନି ଆମର ଗୁଜୁରାଣ ।

ଆଗରେ ପରୀକ୍ଷା । ତୁ ପାଠ ପଢୁଛୁ ନା ଏ ବିଷୟରେ ଚିନ୍ତା କରୁଛୁ ?

କ'ଣ ହେବ ପରୀକ୍ଷା ଦେଇ ? ତମ ସାଙ୍ଗରେ ଆମ ଘରୁ ଆଉ ଜଣକ ନାଁ ଯୋଡ଼ା ହେବ ତ ବେକାରୀ ଖାତାରେ ।

ତୁ ବହୁତ କଥା ଶିଖିଗଲୁଣି ତ ?

ପରିସ୍ଥିତି ଶିଖାଇ ଦେଉଛି । ମୁଁ ଅନୁଭବ କରୁଛି ତମର ଚାକିରି ଓ ଦେଈର ବାହାଘର ଚିନ୍ତାରେ ଘରେ କେମିତି ବ୍ୟସ୍ତ । ଆଉ କିଛି ଦିନ ପରେ ମୋ ପାଇଁ ମଧ୍ୟ ସେମିତି ବ୍ୟସ୍ତ ହେବେ ।

ତେବେ ତୁ କ'ଣ କରିବୁ ?

କେବଳ ବିଦ୍ରୋହ ।

କାହା ସହ ?

ବୁର୍ଜୁଆମାନଙ୍କ ସହ

ପାରିବୁ ?

ଭାବୁଛି ।

ଧରିନେ ଆମର ଏକ ଆର୍ଥିକ ସମସ୍ୟାର ସମାଧାନ ହୋଇଗଲା, ତେବେ ବି ତୁ କ'ଣ ବିଦ୍ରୋହ କରିବାକୁ ଭଲ ପାଇବୁ ?

ନା - ଏ ବିଦ୍ରୋହ ମୋର ଆଦର୍ଶଗତ ନୁହଁ, ମୁଁ ଭଲଭାବରେ ଜାଣେ ଯେ କିଛି ଲୋକ ଯେତେ ହୋ - ହାଲ୍ଲା କଲେ ମଧ୍ୟ ଅର୍ଥନୈତିକ ବୈଷମ୍ୟ ରହିବାକୁ ବାଧ୍ୟ, ଯାହାର ପରିବର୍ତ୍ତନ ମଧ୍ୟ ଏତେ ଶୀଘ୍ର ଏବଂ ସହଜରେ ସମ୍ଭବ ନୁହଁ । ମାତ୍ର ମୁଁ ଯେତେବେଳେ ଚିନ୍ତା କରୁଛି ମୋ ଆଗରେ ଆଉ କୌଣସି ବିକଳ୍ପ ନାହିଁ ସେତେବେଳେ ଏ ରାସ୍ତାଟି ହିଁ ଭଲ । ତମେ ଏବେ କିଛି କରିପାରୁନ । ଆଉ କିଛି ଦିନ ପରେ ଅର୍ଥାଭାବରୁ ମୋ ପାଠପଢ଼ା ବନ୍ଦ ହେବ । ସେତେବେଳେ ମୁଁ ବି କିଛି କରିପାରିବି ନାହିଁ । ତେଣୁ ସେମିତି ଏକ ସ୍ଥିତିକୁ ଯିବା ପୂର୍ବରୁ ମୁଁ ଭାବୁଛି ଗୋଟିଏ ମାର୍ଗ ନିର୍ଣ୍ଣୟ କରିନେବା ଉଚିତ୍ ।

ଟୁଲୁ ପାଖରୁ ଉଠିଆସିବା ପରେ ସେ ଚିନ୍ତା କରୁଥିଲା ଟୁଲୁ ଯଦି ତାକୁ କେବଳ କହିଥାଆନ୍ତା ଏଇ ବିଦ୍ରୋହଟା ତା'ର ଆଦର୍ଶଗତ ବୋଲି ତେବେ ତା'ର ଚିନ୍ତା କରିବାର କିଛି ନ ଥିଲା । ଅଥଚ ଟୁଲୁ ବିଦ୍ରୋହକୁ ପସନ୍ଦ କରୁଛି ତା' ଅସହାୟତାକୁ ଲକ୍ଷ୍ୟ ରଖି । ତା'ର ଆତ୍ମବିଶ୍ୱାସ ତୁଟି ଯାଉଛି ଯେ ଆଗକୁ ଯାଇ ଭବିଷ୍ୟତରେ ମଧ୍ୟ ତା'ର ସେଇ ଦଶା ହେବ । ତା' ପାଇଁ ଭାଇ ବିଦ୍ରୋହୀ ହେବ, ଭଉଣୀର ବାହାଘର ହୋଇପାରୁନି, ବାପା, ବୋଉ ଚିନ୍ତାରେ କ୍ଷୀଣ ହେଉଛନ୍ତି, ଅଥଚ ସେ କିଛି କରିପାରୁନି ।

ନିଜର ଅସହାୟତାରେ ଅଣନିଃଶ୍ୱାସୀ ହୋଇପଡ଼ିବା ବେଳେ ସେ ଚିନ୍ତାକଲା ସେହି ଡିଲିଂ ଆସିଷ୍ଟାଣ୍ଟ ଦେଇଥିବା ପ୍ରସ୍ତାବକୁ ଗ୍ରହଣ କରିନେଲେ କେମିତି ହୁଅନ୍ତା ? ତା'ର ଗୋଟେ ପଦସ୍ଥ ଚାକିରି ସହ ଏକା ସମୟରେ ଏସବୁ ସମସ୍ୟା ସମାଧାନ ହୋଇଯାନ୍ତା । ସେ ଯଦି ରାଜି ନ ହୁଏ ତେବେ କେହି ତ ଜଣେ ରାଜି ହୋଇ ସେ ଝିଅକୁ ବାହାହେବ । ହୁଏତ ଅନ୍ୟ ଯିଏ ରାଜି ହେବ ଏକ ପ୍ରାଚୁର୍ଯ୍ୟ ଓ ବିଳାସପୂର୍ଣ୍ଣ ଜୀବନର ମୋହରେ, ମାତ୍ର ତା' ରାଜିହେବାଟା ଏକ ପାରିବାରିକ ଦାୟିତ୍ୱବୋଧ । ତା' ବେକାରୀ ଜୀବନ କେବଳ ତା' ପାଇଁ ନୁହଁ ସମଗ୍ର ପରିବାର ପାଇଁ ଆଣି ଦେଉଛି ଏକ ନିରାଶାବୋଧ । ତେଣୁ ସେହି ପ୍ରସ୍ତାବରେ ରାଜି ହୋଇଗଲେ କ୍ଷତି କ'ଣ ?

ରାତି ସାରା ସେ ଚିନ୍ତା କରିଛି, ଯୁକ୍ତି କରିଛି ମନେ ମନେ ପ୍ରସ୍ତାବର ସପକ୍ଷରେ ବିପକ୍ଷରେ । ହଁ – ନାଁ, ହଁ – ନାଁର ଦ୍ୱନ୍ଦ୍ୱ ମନରେ ଲାଗି ରହିଥିବା ବେଳେ କେତେବେଳେ ତା' ଆଖିକୁ ନିଦ ଚାଲି ଆସିଛି ସେ ଜାଣିପାରିନି । ସେ ସ୍ୱପ୍ନ ଦେଖୁଛି – ସେ ପାଲଟିଯାଇଛି ପିଲାଦିନେ ପଢ଼ିଥିବା ଗଳ୍ପର ପିମ୍ପୁଡ଼ି । ପ୍ରବଳ ସ୍ରୋତରେ ଘୂର୍ଣ୍ଣି ଭିତରେ ସେ ଭାସି ଚାଲିଛି । ସମସ୍ତ ଶକ୍ତି ଖଟାଇ ସେ ପହଁରି ଚାଲୁଛି ସ୍ଥଳଭାଗ ଉଦ୍ଦେଶ୍ୟରେ । ଅଥଚ ଯୁଆଡ଼େ ଚାହୁଁଛି ଅଥଳ ଜଳର ସ୍ରୋତ ଲମ୍ବି ଯାଇଛି ସୀମାହୀନ ଦିଗବଳୟ ପର୍ଯ୍ୟନ୍ତ । ଜୀବନ ମୋହରେ ସେ ପହଁରି ପହଁରି ଥକି ପଡ଼ି କୂଳରେ ଲାଗିବାର ଆଶା ଛାଡ଼ି ଦେବା ସମୟରେ କୁଆଡୁ ଭାସି ଆସିଛି ତା' ପାଖକୁ ପତ୍ରଟିଏ । ପତ୍ରଟି ଉପରକୁ ଚଢ଼ିଯାଇ ସେ ସ୍ୱସ୍ତିରେ ନିଃଶ୍ୱାସଟିଏ ମାରିଛି – ପାଦ ଥାପିବାକୁ ମୋର ପତ୍ରଟିଏ ଅଛି, ଚିନ୍ତା ନାହିଁ ।

ସକାଳକୁ ସାନ ଭଉଣୀ ତାକୁ ଯାଇ ଉଠାଇଲା – ଭାଇ ଉଠ, ବହୁତ ବେଳ ହେଲାଣି ।

ନିଦ ମଳ ମଳ ଆଖିରେ ସାନ ଭଉଣୀକୁ ଚାହିଁ ଦେଇ ଗୋଟାଏ ହାଇ ମାରି କହିଲା – ମୋ ଆଙ୍ଗୁଳି ସବୁ ଟିକିଏ ଫୁଟାଇ ଦେଲୁ, ମୁଁ ତୋତେ ଗୋଟେ ବଢ଼ିଆ ଜିନିଷ ଦେବି । ବଢ଼ିଆ ଜିନିଷ ନା ଚୋପା – କହି ଆଙ୍ଗୁଳି ଫୁଟାଇ ଦେବା ବେଳେ ସେ କହିଲା,'ଜାଣୁ ତୋ'ର କାଲି କ'ଣ ଗୋଟେ ଚୋରି ହୋଇଯାଇଛି ।'

କାହିଁ ନାଇ ତ !

ତୋ' ବ୍ଲାଉଜ୍‌ରୁ ମୁଁ ଗୋଟେ ସେଫ୍‌ଟିପିନ୍ ଚୋରି କରିଛି । ସେ ଲାଜରେ ମୁହଁ ଲୁଚାଇ ଚାଲିଗଲା ବେଳେ ତାକୁ କହିଲା – ଶୁଣ୍ ଶୁଣ୍ ମୁଁ ତୋ ପାଇଁ ଗୋଟେ ରାଜକୁମାର ଯୋଗାଡ଼ କରିଛି ।

ଉଠି ପଡ଼ି ମୁହଁ ଧୋଇସାରି ଟୁଲୁର ପଢ଼ାଘରକୁ ଗଲା । ଟୁଲୁ ପଢୁଥିଲା । ତାକୁ କହିଲା - ତୋ'ର ବିଦ୍ରୋହୀ ହେବା ଦରକାର ନାହିଁ । ତୋ' ଭାଇ ଉପରେ ବିଶ୍ୱାସ ରଖ, ଆମର ଅସୁବିଧା ଆଉ ବେଶିଦିନ ରହିବ ନାହିଁ । ତୁ ମନ ଲଗାଇ ପଢ଼ । ତୋର ଭବିଷ୍ୟତ ସମ୍ପର୍କରେ ଚିନ୍ତା କରିବା ଦରକାର ନାହିଁ ।

ଗୁହାଳରୁ ବଳଦ ବାହାର କରି ବାପା ବଳଦ କାନ୍ଧରେ ଜୁଆଳି ଯୋଚୁଥିଲେ ହଳକୁ ଯିବା ପାଇଁ । ତାଙ୍କୁ ପାଖକୁ ଯାଇ କହିଲା - ତମେ ସିଲୁର ବାହାଘର ପାଇଁ କେଉଁଠି ଗୋଟେ ଭଲ ପ୍ରସ୍ତାବ ଦେଖିଥିଲ ପରା ? ତମେ ତାଙ୍କର ସମସ୍ତ ଦାବିରେ ରାଜି ହୋଇଯାଅ, ମୁଁ ଟଙ୍କାର ବ୍ୟବସ୍ଥା କରିଦେବି । ବାପା ତା' ମୁହଁକୁ ଆଶ୍ଚର୍ଯ୍ୟ ହୋଇ ଚାହିଁବା ବେଳେ, ବୋଉ କୂଅ ମୂଳେ ବାସନ ମାଜୁ ମାଜୁ ତା' କଥା ଶୁଣି ଉଠିଆସିଲା । ବାପା ଓ ବୋଉ ଉଭୟଙ୍କର ବିସ୍ମୟ ମୁହଁକୁ ଚାହିଁ ସେ କହିଲା କ'ଣ ବିଶ୍ୱାସ ହେଉନି କି - ତମେ ସବୁ କେହି ଜାଣିନ ମୋର ଗୋଟେ ବଡ଼ ଲଟେରୀ ଉଠିଛି । ମୁଁ ଆଜି ଫେରିବା ପରେ ଜାଣିବ ।

ଗାଧୋଇ ସାରି ତରତରରେ ଘରୁ ସେଦିନ ବାହାରିଗଲାବେଳେ ଚପଲରେ ଲଗାଇଥିବା ସେଫ୍ଟିପିନ୍ ରଟ୍ କରି ପାଦରେ ଫୁଟିଗଲା । ତାକୁ ଆଉଥରେ ସିଧାକରି ଲଗାଇବା ବେଳେ କହିଲା - ରହ ଆଜିକ ବି ତୋ'ର ଶେଷଦିନ ।



# ଅଶ୍ୱଗନ୍ଧା

ଘରଟି ଖୁବ୍ ଛୋଟ ନ ହେଲେ ମଧ ବଡ଼ ନୁହେଁ । ଯଦିଓ ଆମ ପରିବାର ଏଇନେ ଆମ ସ୍ୱାମୀ ଓ ସ୍ତ୍ରୀଙ୍କୁ ନେଇ ସୀମିତ, ତେବେ ଆବଶ୍ୟକତାଠାରୁ ଅଧିକ ଅନାବନା ଜିନିଷ ଓ ବହିପତ୍ର ଥିବାରୁ, ଆଜିଯାଏ ଯେଉଁଠି ଘର ନେଇଛୁ, ବଡ଼ ଘର ହିଁ ନେଇଛୁ । ଯେହେତୁ ପତ୍ନୀଙ୍କର ଘରଟା ପସନ୍ଦ ହେଉନଥିଲା, ଏ ଛୋଟ ସହରରେ ଅନ୍ୟ କୌଣସି ବିକଳ୍ପ ପ୍ରସ୍ତାବ ସହଜରେ ମିଳୁନଥିବାରୁ ଘରଟିକୁ ଭଡ଼ାରେ ନେବା କି ନ ନେବା, ଏଥିପାଇଁ ସେ ଥିଲେ ଦ୍ୱନ୍ଦ୍ୱରେ । ମୋତେ କିନ୍ତୁ ପ୍ରଥମ ଦେଖାରେ ହିଁ ଘରଟି ଭଲ ଲାଗିଥିଲା । ଘର ଯେତେ ଭଲ ଲାଗିନଥିଲା ତା'ଠାରୁ ଢେର୍ ଭଲ ଲାଗିଥିଲା ତା'ର ଅବସ୍ଥିତି । ଘରଟି ଥିଲା ମହାନଦୀ କୂଳରେ । ଛାତ ଉପରେ ଠିଆ ହେଲେ ମହାନଦୀର ପାଣି ଓ ବିସ୍ତୀର୍ଣ୍ଣ ବାଲୁକା ଶଯ୍ୟା ଆସିବ ନଜରକୁ । ଘର ସାମ୍ନାରେ ଭଗ୍ନ ରାଜବାଟୀର ରାଣୀ ମହଲ । ରାଜବାଟୀର ପ୍ରାଚୀରକୁ ଲାଗି ଏକ ବିରାଟ ଡିମିରି ଗଛ ଓ ଝଙ୍କାଳିଆ ବବୁଲ୍ ଗଛ । ଡିମିରି ଗଛ ଡାଳରେ ଥିଲା ଅନେକ ପକ୍ଷୀଙ୍କର ବସା ଓ ଗଛଟି ସାରା ବାଦୁଡ଼ି ଓହଳିଲା ପରି ନଦି ହୋଇଥିଲା ଫଳ । ବବୁଲ୍ ଗଛର ଡାଳସାରା ବାୟା ଚଢ଼େଇଙ୍କ ବସା । ସେଠାକାର ପରିବେଶ ଓ ପରିବେଷ୍ଟନୀ ମୋତେ ଭଲ ଲାଗିଲା; ସବୁଠୁ ଭଲ ଲାଗିଲା ସ୍ଥାନର ନାଆଁ । ପତ୍ନୀଙ୍କୁ କହିଲି, ନେଇଯିବା ଏ ଘରକୁ ଭଡ଼ାରେ ।

ଅନ୍ୟ ସବୁ ସ୍ଥାନମାନଙ୍କର ଆଧୁନିକ ନାଁ ପରି ଏ ସ୍ଥାନରେ ନୂଆ କରି ଘର ବନାଇଥିବା ଲୋକମାନେ ହୁଏତ ଏ ସ୍ଥାନର ନାଆଁକୁ ପ୍ୟାଲେସ୍ ଗାର୍ଡେନ ଦେଇଥାଇପାରନ୍ତି ବୋଲି ମୁଁ ଭାବୁଥିଲି । ମାତ୍ର ମୋ ଭ୍ରମ ଅଚିରେ ଦୂର ହେଲା, ଯେତେବେଳେ ଜାଣିଲି ଯେ ରାଜବାଟୀର ପ୍ରମୋଦ ଉଦ୍ୟାନ ଥିଲା ଏ ସ୍ଥାନଟି ଏବଂ ରାଜପରିବାର ଲୋକେ ହିଁ ଏହାର ନାମ ଦେଇଥିଲେ ପ୍ୟାଲେସ୍ ଗାର୍ଡେନ୍ । ସମ୍ପ୍ରତି ଗଢ଼ି ଉଠିଥିବା ଘରଗୁଡ଼ିକ ସ୍ଥାନରେ ସେତେବେଳେ ଶୋଭା ପାଉଥିଲା ଜାତିଜାତିକା ଫୁଲର ବଗିଚା । ଫୁଲ ବଗିଚା

ଓ ନାନା ପ୍ରକାର ବୃକ୍ଷଲତାର ସମ୍ଭାର ଥିଲା ରାଜବାଟୀରୁ ରାଜଦରବାର ଯାଏଁ ଏବଂ ସମଗ୍ର ଅଞ୍ଚଳ ଥିଲା ପାଚେରି ଘେରା ।

ଇଏ ଏକ ବିଚିତ୍ର ସହର ଥିଲା । ଏକଦା ସମୃଦ୍ଧଶାଳୀ ଓ ଜନାକୀର୍ଣ୍ଣ ସହର ଥିବା ଏ ସ୍ଥାନଟିର ଲୋକସଂଖ୍ୟା ଜଣେ ରାଜାଙ୍କର ଶାସନର ଉତ୍ପୀଡ଼ନରେ କମିବାକୁ ଲାଗିଲା । ରାଜକର୍ମଚାରୀଙ୍କ ଶୋଷଣ ଓ ତାଡ଼ନାରେ ଲୋକେ ସେ ରାଜ୍ୟକୁ ଅନ୍ୟ ରାଜ୍ୟରୁ ଯାଇ ରହିବାକୁ ପସନ୍ଦ କଲେ । ରାଜୁଡ଼ା ଶାସନର ପରିସମାପ୍ତିର ବହୁ ପୂର୍ବରୁ ସେ ସହରଟି ସହରର ମାନ୍ୟତା ହରାଇ ଏକ ଜନପଦରେ କେବଳ ସୀମିତ ରହିଥିଲା । ଦୂରଦର୍ଶୀ ରାଜା ବୋଧହୁଏ ଏ କଥାକୁ ହୃଦୟଙ୍ଗମ କରି ରାଜତନ୍ତ୍ର ଲୋପହେବାର ବହୁ ପୂର୍ବରୁ ତାଙ୍କର ଆସ୍ଥାନ ଉଠାଇ ନେଇଥିଲେ ବଡ଼ ବଡ଼ ସହରମାନଙ୍କୁ ।

ଇତିହାସ ମୋଡ଼ ବଦଳାଏ । ମୋଡ଼ ବି ବଦଳାଇଛି ଏ ସହରର ଇତିହାସ । ପୁରୁଣା ଅପଖ୍ୟାତିରୁ ମୁକୁଳି ପୁରୁଣା କୀର୍ତ୍ତି ଓ କିମ୍ବଦନ୍ତୀକୁ ନେଇ ନୂଆକରି ଗଜୁରିବାକୁ ଯାଉଥିବା ସହରଟି ଏବେ ଜିଲ୍ଲାର ସଦର ମହକୁମା । ଗଢ଼ି ଉଠିଛି ନୂଆ ନୂଆ ଘର, ନୂଆ ନୂଆ ବସତି । ଏକଦା ଏ ସହରକୁ ମୁହଁମୋଡ଼ି ନେଇଥିବା ଭୂମିପୁତ୍ରମାନେ - ମନ୍ଦିର, ମଲ୍ଲୀ, ମାଛ, ମୁଗ ଓ ମଠାର ମୋହରେ ଫେରିବା ଆରମ୍ଭ କରିଛନ୍ତି । କିମ୍ବଦନ୍ତୀକୁ ସଜୀବ ଓ ସ୍ମରଣୀୟ କରିବାକୁ ଗଢ଼ା ଯାଇଛି କିମ୍ବଦନ୍ତୀର ନାୟକମାନଙ୍କର ମୂର୍ତ୍ତି । ପୌରାଣିକ ମହତ୍ତ୍ୱ ରଖୁଥିବା କିଛି ସ୍ଥାନକୁ ପୁନର୍ନ୍ୟାସ କରାଯାଇ ସ୍ଥାନର ବୈଶିଷ୍ଟ୍ୟକୁ ପ୍ରଚାର ଓ ପ୍ରସାର କରାଯାଇଅଛି ।

ମୁଁ ଏ ସ୍ଥାନର ପ୍ରଚାର ଓ ପ୍ରସାରରେ ନ ଗଲେ ମଧ୍ୟ, ଅନୁଭବ କରୁଥିଲି ଏ ସ୍ଥାନର କିଛି ମହତ୍ତ୍ୱ ଅଛି ନିଶ୍ଚୟ । ନହେଲେ ମାତୃହତ୍ୟା ପାପରୁ ମୋକ୍ଷ ପାଇଁ ବିଷ୍ଣୁ ଅବତାରୀ ପର୍ଶୁରାମଙ୍କୁ କାହିଁକି ଋଷି ପରାମର୍ଶ ଦେଇଥାଆନ୍ତେ, ଏ ସ୍ଥାନକୁ ଆସି ବାର ବର୍ଷ କାଳ ତପ କରିବାକୁ ? ଯେଉଁ ତପଶ୍ଚର୍ଯ୍ୟା ଓ ମନ୍ତ୍ରୋଚ୍ଚାରଣରେ ତାଙ୍କର ମାତୃହତ୍ୟା ଅପରାଧର ପାପକ୍ଷୟ ହୋଇ ସେ ମୋକ୍ଷ ପାଇଲେ, ସେ ମନ୍ତ୍ରୋଚ୍ଚାରଣର ଗୁଞ୍ଜରଣ ତ ରହିବ ନା ଏ ମାଟିରେ, ପାଣିରେ, ପବନରେ ଓ ଆକାଶରେ ! ତେଣୁ ଏ ମାଟି ମନ୍ତ୍ରସିଦ୍ଧ ମାଟି, ଏ ପବନ ମନ୍ତ୍ରମୁଗ୍ଧ ପବନ ଓ ଏ ପାଣି ମନ୍ତ୍ରସ୍ନିଗ୍ଧ ପାଣି ଏବଂ ଏ ଆକାଶ ମନ୍ତ୍ରାମ୍ବର ।

ମୋ ଭିତରେ କାହିଁକି କେଜାଣି ଏକ ଅନୁଭବ ଆସିଲା ଯେ ସେହି କିମ୍ବଦନ୍ତୀବର୍ଣ୍ଣିତ ସ୍ଥାନମାନଙ୍କୁ ନିରୋଳାରେ ଏକାକୀ ଗଲେ ମୋ ଉପରେ ପଡ଼ିପାରେ ସେ ମନ୍ତ୍ରୋଚାରଣର

ପ୍ରଭାବ । ଏପରିବି ହୋଇପାରେ, ସେମାନଙ୍କ ଅଶରୀରୀ ରୂପକୁ ସଶରୀରେ ଦେଖିପାରେ ମଧ୍ୟ । ଏକଥା ଭାବିବା ପଛରେ ଏକ ବଳିଷ୍ଠ କାରଣ ବି ଥିଲା । ଜଣେ ସମ୍ପୂର୍ଣ୍ଣ ନିରକ୍ଷରା ମହିଳା ଯଦି ସେ ଦିବ୍ୟରଷିମାନଙ୍କର ସଂସ୍ପର୍ଶରେ ଆସି ହାସଲ କରିପାରିଲେ ବିଚକ୍ଷଣ କବିତ୍ୱ, ମୁଁ କାହିଁକି ପାରିବି ନାହିଁ ସେଠାରେ କିଛି ଦିବ୍ୟଗୁଣ ହାସଲ କରି ।

କିଛି ଚମତ୍କାରିତାର ଆକାଂକ୍ଷା ନେଇ ବଡ଼ି ଭୋର୍‌ରୁ ଯାଇଛି, ସନ୍ଧ୍ୟାବେଳେ ଯାଇଛି ସେସବୁ ସ୍ଥାନକୁ ଏକଲା । ରାତିରେ ମଧ୍ୟ ଯାଇଛି ଯେ, ହେଲେ କେମିତିକା ଏକ ଅଜଣା ଭୟରେ ରୁଦ୍ଧ ହୋଇଯାଏ ଭିତର ଯେ, ପ୍ରାଣଭୟରେ ସ୍ୱଳ୍ପକାଳ ରହି ସେ ସ୍ଥାନ ପରିତ୍ୟାଗ କରି ଚାଲିଆସେ । ଭାବେ ଭୟଶୂନ୍ୟ ହେବାଭଳି ପ୍ରସ୍ତୁତି ମୋର ଆସିନାହିଁ । ଏଥିପାଇଁ ଆହୁରି ପ୍ରସ୍ତୁତି ଦରକାର । ଦିବ୍ୟ ବା ଅଲୌକିକ ଅନୁଭବ ପାଇଁ ସାଧକମାନଙ୍କର କୃଚ୍ଛ୍ର ଏବଂ ନିଃସଂଗ ସାଧନା କଥା ମନେ ପକାଏ । ସବୁ ସତ୍ତ୍ୱେ ମଧ୍ୟ ମୋ ଭିତରୁ ଦୂର ହୋଇ ପାରେନା ଭୟ କିମ୍ବା ନିଶାର୍ଦ୍ଧରେ ସାହସ କରିପାରେନା ସେସବୁ ସ୍ଥାନରେ ରହି ଭୌତିକ କିମ୍ବା ଅଲୌକିକ ଅନୁଭବକୁ ହାସଲ କରିବାକୁ ।

ଏ ସବୁ ସୌଭାଗ୍ୟ ମୋ ନିୟତିରେ ନାହିଁ ଭାବି ଦୂରେଇଗଲି ସେ ଅଭିଳାଷରୁ । ହେଲେ ଦୂରେଇ ପାରିଲିନି ନିଜକୁ ସେ ଇତିହାସ ଖୋଜିବାରୁ । ସେ ସ୍ଥାନର ଲିଖିତ ଇତିହାସଠାରୁ ଅଲିଖିତ ଇତିହାସ ଅଧିକ । ଲିଖିତ ଇତିହାସ ବି ବାଦ ବିସମ୍ବାଦଭରା । ବିଭିନ୍ନ ଦସ୍ତାବିଜ ଉପସ୍ଥାପନ କରି ଗୋଟିଏ ଗୋଷ୍ଠୀକୁ ଆଉ ଗୋଟିଏ ଗୋଷ୍ଠୀ ଭୁଲ ଏବଂ ଭ୍ରମାତ୍ମକ ତଥ୍ୟ ଉପସ୍ଥାପନକାରୀ ବୋଲି ଚିହ୍ନାଇବାରେ ବ୍ୟସ୍ତ । ଏ ସବୁ ବାଦ-ବିବାଦ ମଧ୍ୟରେ ନ ରହି ଅଲିଖିତ ଇତିହାସ, ଯାହା ଜନଶ୍ରୁତିରେ ଅଛି, ତାକୁ ଖୋଜିବାକୁ ବାହାରିଲି ।

ମୋର ଏ ନିଆରା ଖୋଜ୍‌ରେ ମୁଁ ସନ୍ଧାନ ପାଇଲି ଭରସାମୁଣ୍ଡାର ମାଗୁଣି ସୂପକାରଙ୍କର । ବଂଶାନୁକ୍ରମେ ତାଙ୍କ ପରିବାର ରାଜାଙ୍କର ଖାନ୍‌ସାମା ହିସାବରେ କାମ କରି ଆସୁଥିଲେ । ମାଗୁଣି ଥିଲେ ଶେଷ ରାଜାଙ୍କର ଶେଷ ଖାନ୍‌ସାମା । ବୟସ ନବେରୁ ଉର୍ଦ୍ଧ୍ୱ । କିନ୍ତୁ ଲାଗୁଥିଲା ବୟସ ଯେମିତି ଠିକଣା ଭୁଲିଛି ତାଙ୍କ ଦେହରେ । ତମ୍ବାଳିଆ ଗୋରା, ନହକା ଚେହେରା । ମୁଣ୍ଡରେ ବାଳ ବୋଲି କହିଲେ ଚାଣକ୍ୟ ଷ୍ଟାଇଲ୍‌ର ଚୁଟି କେରାଏ । ଦାନ୍ତ କିଛି ଝଡ଼ି ଯାଇଥିଲା । କିନ୍ତୁ ଆଖିର ଜ୍ୟୋତି ବଜାୟ ରହିଥିଲା । ମୁଁ ସକାଳୁ ସକାଳୁ ତାଙ୍କ ଘରେ ପହଞ୍ଚିବା ବେଳକୁ ସେ ସ୍ନାନ ସାରି ଗୀତା ପାଠ କରୁଥିଲେ । ତାଙ୍କ ବୋହୂ ମୋତେ ଆତିଥ୍ୟ ଦେଇ ମେଲା ଘରେ ବସାଇଲେ ।

ତାଙ୍କ ପୂଜା ସମୟରେ କୌଣସି ବିଘ୍ନକୁ ସେ ପସନ୍ଦ କରନ୍ତି ନାହିଁ; ତେଣୁ ପୂଜା ଶେଷ ଯାଏଁ ଅପେକ୍ଷା କରିବାକୁ କହିଲେ । ଏ କଥା ବି ସୂଚାଇ ଦେଲେ ଯେ ପୂଜା ପ୍ରାୟ ଶେଷ ହୋଇ ଆସିଲାଣି; ଆଉ ପାଞ୍ଚ ଦଶ ମିନିଟ୍‌ରେ ସରିଯିବ । ସେ ଜଳଖିଆ ଖାଇସାରିବା ପରେ ଆପଣ ତାଙ୍କୁ ଭେଟିବେ ।

ମୁଁ ଅପେକ୍ଷା କରି ବସିଥାଏ ତାଙ୍କ ମେଲା ଘରେ । ତାଙ୍କର ପୂଜା ସରିଲା । ସେ ଜଳଖିଆ ଖାଇ ବସିବା ପୂର୍ବରୁ ସୂଚନା ପାଇଲେ ଯେ କେହି ଜଣେ ଆଗନ୍ତୁକ ଆସିଛନ୍ତି ତାଙ୍କୁ ଭେଟିବା ପାଇଁ । ସେ ଭ୍ରୂକୁଂଚନ କରି କହିଲେ – ମୋ ପାଇଁ ଜଳଖିଆ ବାଢ଼ିଛ ଯେ, ହେଲେ ଅତିଥିଙ୍କ କଥା ବୁଝିଛ କି ନାହିଁ ? ତାଙ୍କ ବୋହୂ ସଂଗେ ସଂଗେ କହିଲେ – ହଁ, ଚାଉଳବରା ଛଣା ହେଉଛି, ଆମ୍ବିଳ ଓ ଚଟଣି ମଧ୍ୟ ହୋଇଛି । ଆମେ ଅତିଥିଙ୍କୁ ଦେବାର ବ୍ୟବସ୍ଥା କରୁଛୁ । ସଂଗେ ସଂଗେ ମୋ ପାଇଁ ଚାଉଳ ବରା, ଚଟଣି ଓ ଆମ୍ବିଳ ଗୋଟିଏ ଥାଳିରେ ଆସି ପହଞ୍ଚିଲା । ମୁଁ ଯେତେ ନାହିଁ ନାହିଁ କଲେ ବି, ତାଙ୍କ ବୋହୂ କହିଲେ ଅତିଥିଙ୍କୁ ଚର୍ଚ୍ଚା ନ କଲାଯାଏଁ ତାଙ୍କ ଶ୍ୱଶୁର ଜଳଖିଆ ଗ୍ରହଣ କରିପାରିବେ ନାହିଁ । ଅଗତ୍ୟା ମୁଁ ବାଧ୍ୟ ହୋଇ ଜଳଖିଆ ଗ୍ରହଣ କଲି ।

ମୁଁ ଜଳଖିଆ କରିସାରିବା ବେଳକୁ ଏକ ଲମ୍ବା ହାକୁଡ଼ି ମାରି ସେ ପହଞ୍ଚିଲେ ତାଙ୍କ ମେଲା ଘରେ । ନମସ୍କାରାନ୍ତେ ମୁଁ ମୋର ପରିଚୟ ଓ ଆସିବାର ଉଦ୍ଦେଶ୍ୟ କହିଲି । ମୋତେ ଲାଗିଲା, ସେ ମୋ ଉଦ୍ଦେଶ୍ୟ ଜାଣିବା ପରେ ସେତେଟା ଖୁସି ପ୍ରକଟ କଲେ ନାହିଁ । ସେ ବୋଧହୁଏ ଭାବୁଥିଲେ – ସେହି ଏକା କଥାକୁ କେତେଥର ଦୋହରାଉଥିବେ । ମୁଁ ତାଙ୍କର ବିଶ୍ୱାସଭାଜନ ହେବା ପାଇଁ କହିଲି – ଆପଣ ରାଜାଙ୍କର ସବୁଠୁ ନିକଟତମ ବ୍ୟକ୍ତି ଥିଲେ । କାରଣ ଭୋଜନପ୍ରିୟ ରାଜାଙ୍କର ପେଟ ଓ ପାଟି ସୁଆଦ କଥାର ଦାୟିତ୍ୱ ଆପଣଙ୍କ ଉପରେ ଥିଲା । ଯାହା ସମସ୍ତେ ଜାଣିଛନ୍ତି, ସେକଥା ମୁଁ ଆପଣଙ୍କଠାରୁ ଶୁଣିବାକୁ ଆସିନି, ଯାହାକୁ କେହି ଜାଣିନାହାନ୍ତି ଏବଂ ଯେଉଁ କଥା ରାଜବାଟୀର ପାଚେରି ଡେଇଁ ବାହାରକୁ ଆସିପାରିନାହିଁ, ସେକଥା ଜାଣିବାକୁ ଆସିଛି ।

– ରାଜା ଭୋଜନପ୍ରିୟ ବୋଲି ଜାଣିଲେ କେମିତି ?

– ହଁ, ଏମିତି ଶୁଣାଶୁଣିରେ । ତା' ଛଡ଼ା ସବୁ ରାଜାଙ୍କର ତ ଭୋଜନ ବିଳାସ ଥାଏ; ଏ ରାଜାଙ୍କର ବି ଥିବ ।

ନା – ଏ ରାଜାଙ୍କର ଭୋଜନ ବିଳାସ ନ ଥିଲା । ଶରୀରକୁ ପୁଷ୍ଟ, ଶକ୍ତିଶାଳୀ କରି ଶତ୍ରୁଙ୍କୁ ଭୟଭୀତ କରିବା ଉଦ୍ଦେଶ୍ୟରେ ସେ ଭୋଜନ ଗ୍ରହଣ କରୁଥିଲେ । ତାଙ୍କ

ଭୋଜନର ପରିମାଣ ଓ ଗୁଣାତ୍ମକ ମୂଲ୍ୟ ରହୁଥିଲା । ସେ ସୌଖୀନ ଓ ପାଟି ସୁଆଦିଆ ଖାଦ୍ୟ ଗ୍ରହଣ କରୁନଥିଲେ । ତାଙ୍କ ପ୍ରାତଃ ଭୋଜନକୁ ମଧ୍ୟ ଦଶଟା ପହିଲିମାନ ହଜମ କରିପାରିବେ ନାହିଁ ।

ମୁଁ ବିସ୍ମୟ ପ୍ରକାଶ କରି ଚାହିଁବାବେଳେ ସେ କହିଲେ, ମୁଁ ଯଦି ତାଙ୍କ ପ୍ରାତଃ ଭୋଜନର ତାଲିକା ଦିଏ, ତମେ କ'ଣ ତାକୁ ବିଶ୍ୱାସ କରିପାରିବ ଯେ ଜଣେ ଲୋକ ଏତେ ପରିମାଣର ଖାଦ୍ୟ ଜଳଖିଆ ଭାବେ ଗ୍ରହଣ କରିପାରୁଥିଲେ । ମାତ୍ର ଏ କଥା ସତ୍ୟ । ଶତ୍ରୁଙ୍କୁ ଦମନ କରିବାର ଭୋକ ଯେତେବେଳେ ପ୍ରବଳ ଥିଲା, ସେତେବେଳେ ପେଟଟା ତ ବଡ଼ ହୋଇଯିବ ନା ! ଜାଣ, ସେ କ'ଣ କ'ଣ ଖାଉଥିଲେ ସକାଳ ଜଳଖିଆରେ ? ଏକ କୁଟା ଚୁଡ଼ା, ତିନି ତାମ୍ବି ଝରାଗୁଡ଼, ଅଧାକାନ୍ଧି କଦଳୀ, ଅଧତାମ୍ବି ଗୁଆ ଘିଅ ଓ ଗୋଟିଏ ନଡ଼ିଆ । ଏବେକାର କେତେ ଟୋକା ଏକାଠି ହେଲେ ସେତକ ଖାଇପାରିବେ ? ହଁ, କେବଳ ଖାଦ୍ୟ ଖାଉନଥିଲେ, ତାକୁ ହଜମ କରୁଥିଲେ ମଧ୍ୟ । ସକାଳ ଭୋଜନ ପରି ମଧ୍ୟାହ୍ନଭୋଜନ ମଧ୍ୟ ଅତ୍ୟନ୍ତ ଗୁରୁ ଭୋଜନ । ହରିଣ ହେଉ, କୁଟୁରା ହେଉ କିମ୍ବା ଖାସି ମାଂସ । ବିଶୁଦ୍ଧ ଗୁଆ ଘିଅରେ ରନ୍ଧା ହେବ । ବଡ଼ ଶେଉଳ ମାଛର ପୋଡ଼ା । ସାଧା ବ୍ୟଞ୍ଜନ ମଧ୍ୟ ବହୁ ପ୍ରକାରର । ଏଥିସହ ବାସମତୀ ଚାଉଳର ଭାତ । ସଜା ହୋଇଥିବା ଟେବୁଲ ଉପରେ; ଲାଗୁଥିବ ଯେମିତି ଦଶଜଣଙ୍କର ଭୋଜନର ବ୍ୟବସ୍ଥା ହୋଇଛି ! ରାଜା ବସିବେ ମଣୋହିରେ । ସବୁ ଖାଦ୍ୟକୁ ଖାଇ ଶେଷ କଲାପରେ ହିଁ ଯାଇ ଉଠିବେ ।

ଖାଲି ଖାଉନଥିଲେ, ଶରୀର ମଧ୍ୟ ସେମିତି ରଖିଥିଲେ । ଅଶୀ ଚାଳନାଠୁ ତୀର ଚାଳନା, ସବୁଥିରେ ଥିଲେ ଧୁରନ୍ଧର । ସାଧାରଣ ଲୋକ ଟେକି ପାରୁନଥିବା ମୁଦ୍‌ଗରକୁ ସେ ଏପରି ବୁଲାଇବେ ଯେ ଯେମିତି ବାଡ଼ି ଖେଳ ଦେଖାନ୍ତି ବାଡ଼ିଆମାନେ । ନିଜ ଶରୀରର ଶକ୍ତି ଓ ମୁଣ୍ଡର ବୁଦ୍ଧି ବଳରେ ତ ସିଏ କନ୍ଧମେଳିକୁ ଦମନ କରିପାରିଥିଲେ । ତାଙ୍କ ପେଟର ମାଂସପେଶୀକୁ କନ୍ଧଙ୍କ ତୀର ଓ ବାହୁର ମାଂସପେଶୀକୁ ଖଣ୍ଡା ବି ଭେଦ କରିପାରୁନଥିଲା । ପିଲାବେଳୁ ମୁଁ ରାଜଦରବାରକୁ ଅତିଥି ହୋଇ ଆସୁଥିବା ଅନ୍ୟ ରାଜ୍ୟର ରାଜାମାନଙ୍କୁ ଦେଖିଥିଲି । ହେଲେ ଯାଙ୍କ ଭଳି ବପୁ, ଶକ୍ତି ଓ ସାମର୍ଥ୍ୟ ଥିବା ରାଜପୁରୁଷ ମୁଁ ଦେଖିନଥିଲି । ତାଙ୍କର ତ ଛାତି ନଥିଲା, ଥିଲା ପଟେ ଲୁହାର କବାଟ; ବାହୁ ଥିଲା ଲୌହର ମୁଦ୍‌ଗର । ସେଭଳି ଶରୀର ତିଆରି ଓ ପରିପୋଷଣ ପାଇଁ ସେ

ଯେଉଁସବୁ ଖାଦ୍ୟ ଖାଉଥିଲେ, ତାହା ଆମକୁ ଅସ୍ୱାଭାବିକ ଲାଗୁଥିଲେ ମଧ୍ୟ, ତାଙ୍କ ଶରୀରର ଦକ୍ଷତା ଦୃଷ୍ଟିରୁ ସ୍ୱାଭାବିକ ଥିଲା ।

ମୁଁ ରାଜାଙ୍କର ବୀରତ୍ୱ ପାଇଁ ତାଙ୍କୁ ସମ୍ମାନ କରୁଥିଲି । କିନ୍ତୁ ଏକଦା ଘଟିଥିବା ଗୋଟିଏ ଘଟଣା ମୋ ମନରୁ ତାଙ୍କ ପାଇଁ ସମ୍ମାନକୁ ଉଣା କରିଦେଲା । ଅବଶ୍ୟ ସେ ଘଟଣା କିଛି ବିଶ୍ୱସ୍ତ ପାରିଷଦଙ୍କ ବ୍ୟତୀତ ରାଜବାଟୀ ଡେଇଁ ବାହାରକୁ ଆସିନଥିଲା । ହେଲେ ଆମେ ଯେଉଁ କେତେଜଣ ସେ ଘଟଣାର ନିରବଦ୍ରଷ୍ଟା ଥିଲୁ, ଆମକୁ ମୃତ୍ୟୁ ପର୍ଯ୍ୟନ୍ତ ସେ ଦୃଶ୍ୟ ଦୁଃଖ ଦେଇ ଚାଲିଥିବ । ଅନ୍ୟ ସମସ୍ତେ ତ ଚାଲିଗଲେଣି, ହେଲେ ମୁଁ ବଞ୍ଚିଛି ସେ ଦୃଶ୍ୟର ଶେଷ ଦ୍ରଷ୍ଟା ଭାବେ । ରାଜଶକ୍ତି ନିକଟରେ ଭୟରେ ନିରବ ରହିଥିବାରୁ ଈଶ୍ୱରଙ୍କୁ ସବୁବେଳେ କ୍ଷମା ମାଗିଆସିଛି ।

ମୁଁ ଅନୁମାନ କଲି, କିଛି ଗୋଟାଏ ରହସ୍ୟ ଏବେ ଉନ୍‌ମୋଚିତ ହେବ । ମୁଁ ଆଗ୍ରହ ପ୍ରକାଶ କରି ପଚାରିଲି, କ'ଣ ଥିଲା ସେ ଘଟଣା ?

ହଁ, ଭାବିଥିଲି ସେ କଥାକୁ କେବେ କାହାରି ଆଗରେ ପ୍ରକାଶ ନକରିବା ପାଇଁ; ମାତ୍ର ଯଦି ପ୍ରକାଶ ନକରେ, ଅପ୍ରକାଶ୍ୟ ପାପର ବୋଝକୁ ଜନ୍ମ ଜନ୍ମାନ୍ତର ପାଇଁ ବୋହିବାକୁ ପଡ଼ିବ, ବୋଧେ । ତେଣୁ ତାକୁ ପ୍ରକାଶ କରି ମନକୁ ହାଲ୍‌କା କରିଦେବା ଦରକାର । କଥା କ'ଣ କି, ରାଜାଙ୍କର ଶାରୀରିକ ଦକ୍ଷତା ପରି ତାଙ୍କର ଯୌନ ଦକ୍ଷତା ବି ଅମାପ ଥିଲା । ସେ ଯେଉଁ ଖାଦ୍ୟ ଖାଉଥିଲେ, ସେଥିରେ ଯୌନ ଦକ୍ଷତା ଅସମ୍ଭବ ଭାବେ ବୃଦ୍ଧି ପାଇବା କିଛି ବିଚିତ୍ର କଥା ନ ଥିଲା । ରାଜାଙ୍କୁ କେଉଁ ରାଣୀଙ୍କର ଅଭାବ ଥିଲା ଯେ ! ବହୁ ରାଣୀଙ୍କୁ ସନ୍ତୁଷ୍ଟ କରିବାକୁ ତ ରାଜାମାନେ ବୈଦ୍ୟମାନଙ୍କର ସହାୟତାରେ ଯୌନ ଦକ୍ଷତା ବୃଦ୍ଧି କରାଉଥିଲେ; ହେଲେ ଏ ରାଜା ଥିଲେ ଏକ ବିରଳ ପ୍ରଜାତିର ପୁରୁଷ, ଯାହାକୁ କହନ୍ତି ଅଶ୍ୱଜାତୀୟ ପୁରୁଷ । ମାତ୍ର ଅଶ୍ୱଜାତୀୟ ପୁରୁଷ ଅତି ମାତ୍ରାରେ କାମାସକ୍ତ ହେଲେ, ସମସ୍ୟା ଦେଖାଦିଏ । ତାଙ୍କର ଚାରିଜଣଯାକ ରାଣୀ ଏପରି ତ୍ରସ୍ତା ଓ ଭୟଭୀତା ହୋଇପଡୁଥିଲେ ଯେ ରାଜା ରତିସୁଖରୁ ବଞ୍ଚିତ ରହୁଥିଲେ । ରାଜାଙ୍କ ସହ ସହବାସ ଅସମ୍ଭବ ମନେକରି ସେମାନେ ଏକ ବିକଳ୍ପ ବ୍ୟବସ୍ଥା କଲେ । ଏଥିପାଇଁ ସେମାନେ ଚୟନ କଲେ ଏକ କ୍ଷୀଣକଟି, ସୁନ୍ଦରୀ ଓ ଅଶ୍ୱଜାତୀୟ ପୁରୁଷଙ୍କୁ ସନ୍ତୁଷ୍ଟି ପ୍ରଦାନ କରିପାରୁଥିବା ପାରଙ୍ଗମା ବେଶ୍ୟାକୁ । ତାକୁ ଆମନ୍ତ୍ରଣ କରାଯାଇଥିଲା ରାଜବାଟୀକୁ । ଜଣାଇ ଦିଆଯାଇଥିଲା ଉଦ୍ଦେଶ୍ୟ ।

ସବୁ ଶୁଣିସାରି ବେଶ୍ୟା ଜଣକ କହିଥିଲା – ଅଶ୍ୱଜାତୀୟ ପୁରୁଷ କ'ଣ, ସ୍ୱୟଂ ଅଶ୍ୱ ବି ମୋ ସହ ରତିକ୍ରୀଡ଼ାରେ ହାର ମାନିବ । ତୁଚ୍ଛାକୁ କ'ଣ ମୋ ନାଆଁ ଅଶ୍ୱଗନ୍ଧା ! ମହାରାଜ ତ ଅଶ୍ୱଜାତୀୟ, ମାତ୍ର ଅଶ୍ୱ ନୁହଁନ୍ତି ।

ବେଶ୍ୟାଟିର ଦମ୍ଭୋକ୍ତି ପଡ଼ିଗଲା ରାଜାଙ୍କ କାନରେ । ତାଙ୍କର ଗର୍ବ ଓ ଗୌରବର ପୁରୁଷାକାରକୁ ଫୁତ୍କାରିଥିବା ବେଶ୍ୟାଟିକୁ ସେ ଡକାଇ ପଠାଇଲେ । ସେତେବେଳେ ତାଙ୍କ ପାର୍ଶ୍ୱରେ ଅତି ବିଶ୍ୱସ୍ତ ଓ ନିକଟତମ ପାରିଷଦ ମାତ୍ର ଚାରିଜଣ ଥିଲେ । ରାଜାଙ୍କ ଡାକରା ପାଇ ଉଲ୍ଲସିତା ହୋଇ ସେ ଉପସ୍ଥିତ ହେଲା ତାଙ୍କ ସାମ୍ନାରେ । ମହାରାଜ ତାଙ୍କୁ ପ୍ରଶ୍ନ କଲେ – ତମେ ତା' ହେଲେ ସେହି ରତିନିପୁଣା ଅଶ୍ୱଗନ୍ଧା ?

ମହାରାଜ ଚାହିଁଲେ ପରୀକ୍ଷା କରିପାରନ୍ତି । ଏ ଦାସୀ ସେଥିପାଇଁ ପ୍ରସ୍ତୁତ ।

: ମୁଁ ଶୁଣିଲି କେବଳ ଅଶ୍ୱଜାତୀୟ ପୁରୁଷ ନୁହନ୍ତି, ସ୍ୱୟଂ ଅଶ୍ୱକୁ ରତିରେ ପରାସ୍ତ କଲାଭଳି ଦକ୍ଷତା ତମର ଅଛି !

: ଅଶ୍ୱସହ ଏ କଳାର ପରୀକ୍ଷା ମୁଁ କରିପାରିନି ସତ, ହେଲେ ଅଶ୍ୱଜାତୀୟ ପୁରୁଷମାନଙ୍କ ଦକ୍ଷତାକୁ ଆକଳନ କରି ମୁଁ ନିଶ୍ଚିତ ଯେ ଅଶ୍ୱକୁ ରତିରେ ପରାସ୍ତ କଲାଭଳି ଦକ୍ଷତା ମୋର ଅଛି ।

ନିଜର ଯୌନ ଦକ୍ଷତାକୁ ନେଇ ଅସମ୍ଭବ ଅହଂକାର ରଖୁଥିବା ରାଜାଙ୍କୁ ବେଶ୍ୟାଟିର ଏ ଦମ୍ଭୋକ୍ତି ବୋଧହୁଏ ଅସମ୍ମାନଜନକ ଲାଗିଲା । ତେଣୁ ସେ କହିଲେ ମୋ ସହ ପରୀକ୍ଷା କରିବା ପୂର୍ବରୁ ମୁଁ ଚାହୁଁଛି ମୋର ପ୍ରିୟ ଅଶ୍ୱ ସହ ତୁମର ପରୀକ୍ଷା କରାଯାଉ ।

: ମହାରାଜ ! କ୍ଷମା କରିବେ; ଅଶ୍ୱଜାତୀୟ ଓ ଅଶ୍ୱ ଏକା କଥା ନୁହେଁ । ଏହା ସମ୍ପୂର୍ଣ୍ଣ ଅସମ୍ଭବ ।

: କିଛି ବି ଅସମ୍ଭବ ନୁହେଁ । ମୁଁ ଚାହେଁ, ତୁମର ପରୀକ୍ଷା ପ୍ରଥମେ ଅଶ୍ୱ ସହ ହେଉ । ବାସ୍ – ଏହାକୁ ରାଜାଙ୍କ ଆଦେଶ ବୋଲି ଗ୍ରହଣ କରିପାର ।

ଅଶ୍ୱଗନ୍ଧାର ସମସ୍ତ କାକୁତି, ମିନତି ବ୍ୟର୍ଥ ହୋଇଯାଇଥିଲା ରାଜାଙ୍କ ନିର୍ଦ୍ଦେଶରେ । କିଛି କର୍ମଚାରୀ ତାକୁ ନେଇଯାଇଥିଲେ ଅଶ୍ୱ ମିଳନର ପ୍ରସ୍ତୁତି ପାଇଁ । ଅଣାଯାଇଥିଲା ଚଇତି ଘୋଡ଼ାନାଚର ମୁଖା ଓ ଶରୀର । ରାଜବାଟୀର ବଳି ମଣ୍ଡପରେ ତିଆରି କରାଗଲା ତାକୁ ହାମୁଡ଼େଇ ରଖିବା ଭଳି ମଞ୍ଚ । ପୃଷ୍ଠଭାଗକୁ ଛାଡ଼ି ଅନ୍ୟ ସବୁକୁ ଦିଆଗଲା ଘୋଡ଼ୀର ରୂପ । ସବୁ ପ୍ରସ୍ତୁତି ପରେ ଅଣାଗଲା ରାଜାଙ୍କ ପ୍ରିୟ ଘୋଡ଼ାକୁ ।

ତାକୁ କାମୋତ୍ତେଜିତ କରିବା ପାଇଁ ରଜସ୍ୱଳା ନାରୀଙ୍କ ଅନ୍ତଃବସ୍ତ୍ର ଶୁଙ୍ଘାଇ ଦିଆଗଲା ତା' ନାକରେ । ଉତ୍ତେଜିତ ଘୋଡ଼ା ପ୍ରମତ୍ତ ହେଲା । ତା' ପରେ ଯାହା ଘଟିଲା, ତାହା କୌଣସି ଦେଖଣାହାରିର ଛାତିକୁ ବିଦାରି ଦେବା ପାଇଁ ଥିଲା ଯଥେଷ୍ଟ । ଘୋଡ଼ାଟିର ଅବରୋହଣ ସହ ଏକ ରକ୍ତର ପିଚକାରି ରକ୍ତାକ୍ତ କରିଦେଇଥିଲା ସମଗ୍ର ବଳି ମଣ୍ଡପକୁ । ଘୋଡ଼ାର ମୁଖା ଓ ଶରୀରର ଖୋଳ ଭିତରୁ ଅଶ୍ୱଗନ୍ଧାକୁ ବାହାର କଲାବେଳକୁ ତା'ର ଜିଭ ଓ ଆଖି ବାହାରି ପଡ଼ିଥିଲା ପଦାକୁ । ଶରୀର ହୋଇସାରିଥିଲା ଜଡ଼ । ଏ ଦୃଶ୍ୟକୁ ଯେଉଁ କେତେଜଣ ଦୁର୍ଭାଗ୍ୟବଶତଃ ଦେଖିଥିଲେ, ତା' ଭିତରେ ମୁଁ ଥିଲି ଜଣେ ।

ଏହାପରେ ରାଜବାଟୀ ମୋତେ ଲାଗିଥିଲା ପ୍ରେତପୁରୀ ପରି । ମୁଁ ଚାହୁଁଥିଲି ବଂଶ ପରମ୍ପରା କ୍ରମେ ଚାଲି ଆସିଥିବା ଏ ବୃତ୍ତିରୁ ମୁକ୍ତ ହେବାକୁ । ମାତ୍ର ରାଜୁଡ଼ା ଶାସନରେ ସେବକମାନଙ୍କ ଚାହିଁବା ନ ଚାହିଁବାରେ କିଛି ଗୁରୁତ୍ୱ ନଥାଏ । ଗୋଟେ ପୁରୁଷାକାରର ଅହଂ ଓ ଖିଆଲୀ ମନ ନେଇ ରାଜା ଯାହା କଲେ, ସେଥିପାଇଁ ସେ ପଶ୍ଚାତ୍ତାପ କଲେ । କେବଳ ପଶ୍ଚାତ୍ତାପ କଲେନି, ରାଜକୀୟ ଜୀବନ, ରାଜ୍ୟ ମୋହ ଓ ଶତ୍ରୁ ଦମନ, ସବୁ ଚିନ୍ତାକୁ ପଛ କରି ଯୁବାବସ୍ଥାରେ ବାନପ୍ରସ୍ଥ ଜୀବନ ସନ୍ଧାନରେ ସେ ଅରଣ୍ୟ ଗମନ କଲେ । ସେଇ ଗଲେ ଯେ ଗଲେ, ଆଉ କେବେ ରାଜବାଟୀର ଦୁଆର ମାଡ଼ିନାହାନ୍ତି । ଏଯାଏଁ ବି କେହି ଜାଣିନାହାନ୍ତି ରାଜା ଜୀବିତ ନା ମୃତ ।

ରାଜା ଚାଲିଯିବାର ଅଳ୍ପ ବର୍ଷ ପରେ ଲୋପ ହେଲା ରାଜତନ୍ତ୍ର । ରାଜତନ୍ତ୍ର ଲୋପ ହେବାକୁ ଯାଉଛି, ଏହାର ଆଭାସ ବୋଧହୁଏ ରାଣୀମାନେ ଆଗରୁ ପାଇ ଯାଇଥିଲେ । ସେଥିପାଇଁ ଏଠୁ ସେମାନଙ୍କ ଧନ ସମ୍ପତ୍ତି ବୋହି ନେଇ ବଡ଼ ବଡ଼ ସହରରେ ତୋଳୁଥିଲେ ଘର । ରାଜତନ୍ତ୍ର ଲୋପ ହେଉ ହେଉ ପରିତ୍ୟକ୍ତ ବି ହୋଇଗଲା ରାଜବାଟୀ । ବହୁଦିନ ଯାଏଁ ତ କେହି ସେ ପରିତ୍ୟକ୍ତ ରାଜବାଟୀର ଭିତରକୁ ପଶିବାକୁ ସାହସ କରୁନଥିଲେ । ଶୁଣାଯାଏ ଯେ ରାଜବାଟୀକୁ ସମ୍ପୂର୍ଣ୍ଣ ଛାଡ଼ିବା ପୂର୍ବରୁ ବିଖ୍ୟାତ ଗୁଣିଆମାନଙ୍କୁ ଡକାଇ ରାଣୀମାନେ ରାଜବାଟୀର ସୁରକ୍ଷା ପାଇଁ ସହସ୍ର ସଂଖ୍ୟାରେ ବିଷଧର ସର୍ପଙ୍କୁ ପ୍ରହରୀ ହେବା ପାଇଁ ଭଣ୍ଡାର ଘର, କୋଠଘର ଏବଂ ରାଜବାଟୀର ପରିସରରେ ଛାଡ଼ିଥିଲେ । ଏଥି ସହ ଯକ୍ଷ ଦେବତା ଓ ଭୂତପ୍ରେତମାନଙ୍କୁ ମଧ୍ୟ ମନ୍ତ୍ରବଳରେ ଏ ଦାୟିତ୍ୱ ଦେଇଥିଲେ ।

ଏମିତି କ'ଣ ସତରେ ହୋଇପାରେ ?

ମନ୍ତ୍ରଶକ୍ତି ଅଛି ଏହା ସତ୍ୟ,ମାତ୍ର ଏ କଥା ରାଣୀମାନେ ଯେ କରାଇଥିଲେ, ମୁଁ ଜାଣେନି । ଜାଣେନି ଏଥିପାଇଁ ଯେ ଏ ଘଟଣାର କିଛି ବର୍ଷ ପୂର୍ବରୁ ମୋର ଶାରୀରିକ ଅସୁସ୍ଥତା ପାଇଁ ମୁଁ ରାଜକର୍ମରୁ ଅବ୍ୟାହତି ନେଇ ଚାଲି ଆସିଥିଲି । ମାତ୍ର ମୋର ମଧ୍ୟ ବିଶ୍ୱାସ ଯେ ଏମିତି କିଛି ଘଟିଥାଇପାରେ । ପୁରୁଣା ସମ୍ପର୍କ ଓ ସ୍ମୃତିକୁ ନେଇ ମୁଁ ଯେତେଥର ରାଜବାଟୀକୁ ଯିବା ପାଇଁ ଚେଷ୍ଟା କରିଛି, ମୁଖ୍ୟଦ୍ୱାର ପାଖରେ ପହଞ୍ଚିଲା କ୍ଷଣି ଅନୁଭବ ହୋଇଛି, ଯେମିତି କୌଣସି ଅଦୃଶ୍ୟ ଶକ୍ତି ମୋତେ ପ୍ରତିରୋଧ କରୁଛି ଆଗକୁ ନ ବଢ଼ିବା ପାଇଁ । ରାଜବାଟୀ ପାଖରେ ବସ୍ତି କରି ରହିଥିବା ସେବାକାରୀମାନେ ମଧ୍ୟ କହନ୍ତି, ନିଶାର୍ଦ୍ଧରେ ରାଜବାଟୀ ମଧ୍ୟରୁ ଆସେ ସିଂହର ଗର୍ଜନ; କେବେ କେବେ ଘଣ୍ଟ, ଝାଞ୍ଜ, ମୃଦଙ୍ଗର ଶବ୍ଦ । ସମଗ୍ର ରାଜବାଟୀ ପରିସରରୁ ଶୁଭେ ସହସ୍ର ଫଣାର ଫଅଁ - ଫଅଁ ଶବ୍ଦ । ସେମିତି କିଛି ଅଲୌକିକକତା ନ ଥିଲେ, ରାଜପରିବାର ସେ ଉଆସ ଛାଡ଼ିବା ପରେ ପରେ ତ ସମ୍ପତ୍ତି ପାଇଁ ଲୋକେ ଖେଦାଳି ଦେଇଥାଆନ୍ତେ ତାକୁ । ପଚାଶ ଷାଠିଏ ବର୍ଷ ଲାଗିଥାଆନ୍ତା କି ସେ ପାଚେରି ଭାଙ୍ଗି ଏବେକାର ନୂଆ ନୂଆ ଘର କରିବାକୁ ?

ବୟସାଧିକ୍ୟ ପାଇଁ ମୁଁ ତ ବହୁବର୍ଷ ହେଲା ସିଆଡ଼େ ଯାଇନି । ଶୁଣିଛି, ରାଜାଙ୍କ ପୁଅ କ୍ଷମତା ପତ୍ର ଦେଇ ସବୁ ବିକ୍ରି କରିସାରିଲେଣି । ବହୁ ଲୋକ ବି ସେଠାରେ ଘର କରିସାରିଲେଣି । ରାଜ ଉଦ୍ୟାନ ଭିତରେ ଥିଲା ଏକ ରହସ୍ୟମୟୀ କୂଅ । ସେଇଟି ଅଛି କି ପୋତି ହୋଇଗଲାଣି ଜାଣିନି ।

ହଠାତ୍ ମୋ ପାଟିରୁ ବାହାରି ପଡ଼ିଲା - ଅଛି, ଅଛି ।

: ଅଛି ତା' ହେଲେ । ଅଛି ବୋଲି ଆପଣ କେମିତି ଜାଣିଲେ ?

ମୁଁ ଏବେ ଯେଉଁ ଘରେ ଭଡ଼ାରେ ରହୁଛି, ସେ ଘରର ପାଚେରିକୁ ଲାଗି ରହିଛି ଏକ ଖୋଲା ପ୍ଲଟ୍ । ସେ ପ୍ଲଟ୍‌ର ମଝିଆମଝି ରହିଛି ସେ କୂଅଟି । ମାତ୍ର ତାହା କୂଅ ବୋଲି ଜାଣିବା କଷ୍ଟ । ତା' ଭିତରୁ ଉଠିଛି ଗଛ ଓ ଚାରିପାଖ ବି ଗଛଭର୍ତ୍ତି । ଦେଖିଲେ ଲାଗୁଛି, ବିଭିନ୍ନ ଗଛର ଏକ ବଣୁଆ ବୁଦା ପରି ।

: ହଁ, ବଣର ଦେବୀ ଆସିଥିଲେ ରାଜବାଟୀକୁ । ସିଏ ଥିଲେ କନ୍ଧମାନଙ୍କର ଦେବୀ କନ୍ଧବୁଢ଼ୀ । କନ୍ଧମେଳି ଦମନ ପରେ ତାଙ୍କ ଶକ୍ତିକୁ ଚିରଦିନ ହରଣ କରିବା ପାଇଁ ରାଜା ନେଇ ଆସିଥିଲେ ତାଙ୍କର ଦେବୀଙ୍କୁ । ମନ୍ଦିର ଗଢ଼ାଇ ରଖିଲେ ରାଜବାଟୀରେ । ହେଲେ ପାହାଡ଼ ଖୋଲରେ, ଝରଣା ଜଳରେ ପୂଜା ପାଉଥିବା

ଦେବୀଙ୍କୁ ମନ୍ଦିରରେ ରହିବା ପସନ୍ଦ ହେଲାନି । ସେ ରାଜାଙ୍କୁ ସ୍ୱପ୍ନାଦେଶ ଦେଲେ – ତୁ ଆଣିଲୁ; ମୁଁ ମନା କଲିନି, ଆସିଲି । ମୋ ପାଇଁ ମନ୍ଦିର ନୁହଁ, ପାହାଡ଼ ଖୋଲ ଓ ଝରଣା ଦରକାର । ତୋ ରାଜବାଟୀରେ ପାହାଡ଼ ଓ ଝରଣା ବା ଆସିବ କୁଆଡୁ ! ତୁ ଗୋଟେ ବାମ୍ଫି ଖୋଳି ମୋତେ ତା' ଭିତରେ ରଖ । ବର୍ଷରେ ଥରେ ବଳି ଦେବୁ । ସ୍ୱପ୍ନାଦେଶ ପାଳନ ପାଇଁ ରାଜା ବାମ୍ଫି ଖୋଳେଇ ପ୍ରତିଷ୍ଠା କରାଇଥିଲେ କନ୍ଧବୁଢ଼ୀଙ୍କୁ । ବର୍ଷରେ ଥରେ ବଳି ପଡୁଥିଲା; ହେଲେ ସେ ଗୁପ୍ତ ବଳିକୁ ଜାଣିବାର ଚାରା ଆମର ନ ଥିଲା ।

ସେ କୂଅ ତା' ହେଲେ ଅଛି ଏ ଯାଏଁ? ଅଛି ସିନା, ହେଲେ ଶକ୍ତିହରଣ ହୋଇସାରିଥିବ ସେଥିରୁ । ବଳିଖିଆ ଦେବୀ, ବଳି ନ ପାଇ ସେଠାରେ ଆଉକ'ଣ ଥିବେ ?

: କୂଅଟି ଏକ ବଡ଼ ବୁଦା ପରି ଦିଶେ ଦୂରରୁ । ପୋତି ହୋଇଗଲାଣି ନା ଅଛି ଜାଣିବାର ଚାରା ନାହିଁ । ତେବେ ଯାହା ଲୋକଙ୍କଠାରୁ ଶୁଣିକି ଜାଣିଛି, ସେଠି ଗୋଟେ କୂଅ ଅଛି । ସେ କୂଅ ପାଇଁ ହିଁ ଏ ଯାଏଁ ବିକ୍ରି ହୋଇପାରିନି ସେ ପ୍ଲଟ ଖଣ୍ଡକ ।

: ସେ ଜାଗାକୁ କିଏ ବା କିଣି ଘର ବନାଇବ? ସେ କୂଅ ତ କେବଳ କନ୍ଧବୁଢ଼ୀ ଠାକୁରାଣୀଙ୍କ ଆସ୍ଥାନ ନ ଥିଲା, ବହୁ ରହସ୍ୟର ଗନ୍ତାଘର ଥିଲା ।

: ରହସ୍ୟ ! କିଭଳି ରହସ୍ୟ ?

: ରହସ୍ୟ ତ ଚିରକାଳ ଗୋପନୀୟ ! ସେ ଗୋପନୀୟ ରହସ୍ୟକୁ ଜାଣିବାକୁ ଆମର ଚାରା ନ ଥିଲା । କେବଳ ଶୁଣିଛୁ ରହସ୍ୟମୟୀ କୂଅ ବୋଲି । ରହସ୍ୟ, ରହସ୍ୟ ହୋଇଥାଉ; ତାକୁ ଆମେ ବା ଜାଣି ଲାଭ କ'ଣ ?

ମୁଁ ତାଙ୍କଠାରୁ ବିଦାୟ ନେଇ ଆସିଲି ସତ, ହେଲେ ସେ କୂଅର ରହସ୍ୟ ଜାଣିବା ନିଶା ମୋ ମୁଣ୍ଡରେ ସବାର ହୋଇଗଲା । ମୋ ପଢ଼ା ଟେବୁଲ୍ ସାମ୍ନାରେ ଝରକା ଖୋଲିଲେ ଦିଶେ ସେହି ବୁଦା ସଦୃଶ ଦେଖାଯାଉଥିବା ରହସ୍ୟମୟୀ କୂଅ । ଏକାନ୍ତରେ ବହୁ ସମୟ ଯାଏଁ ମୁଁ ନିରୀକ୍ଷଣ କରେ କୂଅକୁ; ହେଲେ କିଛି ବି ଜାଣିପାରେନା । କେବଳ ଯାହା ରାତିର ନିସ୍ତବ୍ଧତାକୁ ଭାଙ୍ଗି ସେଠାରେ ଭାସି ଆସୁଥିବା ଝିଂକାରୀମାନଙ୍କର ସ୍ୱରକୁ ସ୍ପଷ୍ଟରୁ ସ୍ପଷ୍ଟତର ଭାବେ ଶୁଣିପାରେ ।

ଦିନେ ସକାଳୁ ଉଠିଲା ବେଳକୁ ଦେଖିଲି ଦୁଇଟି ପ୍ରୋକ୍ଲିନ୍ ପ୍ରବେଶ କଲା ସେହି ଖାଲି ପ୍ଲଟ୍‌ଟି ଭିତରକୁ । ଚାରିପଟରେ ଥିବା ଘରଗୁଡ଼ିକର ଛାତରେ ଗୃହ

ମାଲିକମାନେ ଠିଆ ହୋଇଥିଲେ ଦେଖିବା ପାଇଁ କ'ଣ ହେବ ସେ ପ୍ଲଟରେ ବୋଲି । ପ୍ଲଟ୍‌ଟିକୁ କିଣିଥିବା ଠିକାଦାର ନିର୍ଦ୍ଦେଶ ଦେଲେ, "ପ୍ରଥମେ ଉଠାଇ ଆଣ କୂଅ ଭିତରୁ ଉପରକୁ ଉଠିଥିବା ସେ ଅନାବନା ଗଛ ସବୁକୁ । ତା'ପରେ ଉପର ମୁଣ୍ଡର ମାଟି କାଟି କାଟି ନେଇ ପୋତ ତାକୁ ।"

ଗଛଗୁଡ଼ିକୁ ଉଠାଇ ଆଣୁଥାଏ ସେ ଯାନ୍ତ୍ରିକ ହାତ । ଚାହୁଁ ଚାହୁଁ ଫାଙ୍କା ହୋଇଗଲେ ଗଛ ସବୁ । ଗୋଟେ ଟ୍ରାକ୍ଟର ଆସି ବୋହିନେଲା ସେସବୁକୁ । ଗଛଗୁଡିକ ଫାଙ୍କା ହୋଇଯିବା ପରେ କୂଅଟି ଦିଶିଲା ସଦ୍ୟ ସଦ୍ୟ ଦାଢ଼ି କଟା ହୋଇଥିବା ମୁହଁର ପାଟି ପରି । ଉପର ପଟୁ ମାଟି କାଟି ଗଡ଼ାଇ ନିଆଗଲା କୂଅ ମୁହଁକୁ । କିଛି ଘଣ୍ଟା ଭିତରେ ପୋତି ହୋଇଗଲା କୂଅ । ମୁଁ ମନେ ମନେ ଭାବିଲି, ଏ କୂଅ ସହ ବି ପୋତି ହୋଇଗଲା, ତା'ର ରହସ୍ୟ । ଆଉ କେହି କେବେ ବି ଚିନ୍ତା କରିବେ ନାହିଁ ଉନ୍‌ମୋଚିତ କରିବାକୁ ସେହି ଗୂଢ଼ ରହସ୍ୟକୁ ।

ଅପରାହ୍ନ ବେଳକୁ ସେ ଜାଗାଟି ପାଲଟି ଯାଇଥିଲା ଏକ ସମତଳ ଭୂମିରେ । ଦିନ ଯାଇ ରାତି ହେଲା । ସେ ରାତି ଥିଲା ପୂର୍ଣ୍ଣିମାର ପରବର୍ତ୍ତୀ ରାତି । ଜହ୍ନ ଆଲୁଅ ବିଛାଡ଼ି ହୋଇ ପଡ଼ିଥିଲା ସେ ଜାଗା ଉପରେ । ଆଗରୁ କେବେ ସେ ସ୍ଥାନରେ ଏମିତିକା ଜହ୍ନରାତି ମୁଁ ଦେଖିଥିଲି ବୋଲି ଭାବି ପାରୁନଥିଲି । ତୋଫା ଜହ୍ନ ଆଲୁଅ ଯୋଗୁ ଦିନ ଭ୍ରମରେ କେତେଟା କୁଆ ବି ବସା ଛାଡ଼ି କା – କା – କରି ଗୋଟେ ଯୋଡ଼େ ଚକ୍‌କର କାଟି ଫେରି ଯାଉଥିଲେ ନିଜ ନିଜ ବସାକୁ ।

କ୍ରମଶଃ ବଢ଼ିଲା ରାତି । ଜହ୍ନ ଆଲୁଅ ବି ଲାଗିଲା ଭୌତିକ ଭୌତିକ । ମୋତେ ଲାଗିଲା, ସେ ଜାଗା ଉପରେ ଯେମିତି ବସିଛି କିଛି ଛାୟା ନାରୀ ଓ ପୁରୁଷଙ୍କ ସମ୍ମିଳନୀ । ଝାପ୍‌ସା ଆଲୁଅରେ ଦେଖୁଥିଲି କୋଳାହଳକୁ, ମାତ୍ର ଶୁଣି ପାରୁନଥିଲି କିଛି । ଯାହା ଦେଖୁଥିଲି ମୁଁ, ତାହା କେବଳ ଥିଲା ଉଦ୍‌ବାସ୍ତୁ ଆତ୍ମାମାନଙ୍କର ବାସଚ୍ୟୁତ ହେବାର ବିଦ୍ରୋହ

ଇଏ ମୋ ମନର ଭ୍ରମ ବୋଲି ଭାବି ଆଖି ପିଛାଡ଼ିଲି । ଆଖି ପିଛାଡ଼ିବା କ୍ଷଣି ଅଦୃଶ୍ୟ ହୋଇଗଲା ଦୃଶ୍ୟ । ମୁଁ ସ୍ଥିର ନିଶ୍ଚିତ ହୋଇଗଲି ଯେ ଏହା ମୋର ଦୃଷ୍ଟିର ଭ୍ରମ । ଯେହେତୁ ସେ ସ୍ଥାନଟିକୁ ମୁଁ ଏକ ଭୌତିକ କୌତୂହଳରେ ଦେଖୁଛି, ଏମିତିକା ଦୃଶ୍ୟ ସବୁ ମୋ ଆଖି ଆଗରେ ନୁହେଁ, ମସ୍ତିଷ୍କରେ ଉତ୍ପନ୍ନ ହେଉଛନ୍ତି ବୋଲି ଭାବିଲି । ତେଣୁ ଝରକା ବନ୍ଦ କରି ମୁଁ ଚାଲିଗଲି ଶୋଇବା ପାଇଁ ।

ସେ ଦୃଶ୍ୟକୁ ମୁଁ ବହୁତ ସମୟ ଧରି ଦେଖିଥିବାରୁ, ସେ ଦୃଶ୍ୟର ହ୍ୟାଙ୍ଗ୍ ଓଭର ମୋ ଉପରେ ଏତେ ମାତ୍ରାରେ ପଡ଼ିଥିଲା ଯେ ବିଛଣା ଧରିବା ପରେ ମଧ ବହୁତ ସମୟ ଯାଏଁ ମୋ ଆଖିକୁ ନିଦ ଆସିନଥିଲା । ଏପଟ ସେପଟ ଗଡ଼େଇ ତଡ଼େଇ ହୋଇ ନାନା କଥା ଭାବୁ ଭାବୁ ପାହାନ୍ତିଆ ମୋତେ କେତେବେଳେ ନିଦ ଲାଗିଯାଇଛି ଜାଣେନା । ବିଳମ୍ବିତ ସକାଳଯାଏଁ ମୁଁ ଶୋଇ ରହିଥିଲି । ନିଦ ଭାଙ୍ଗିଲା ଯାଇ ପତ୍ନୀଙ୍କ ଡାକରେ । ମୁଁ ନିଦ ମଳମଳ ଆଖିରେ ତାଙ୍କୁ ଚାହିଁବା କ୍ଷଣି ସେ କହିଲେ – ଜାଣିଛ, ଯେଉଁ ଠିକାଦାର ଏ ଜାଗାଟାକୁ କିଣି କାଲି ସଫା କରାଉନଥିଲା, କାଲି ରାତିରେ ସାପ କାମୁଡ଼ାରେ ସେ ମରିଯାଇଛି ।

ଚେଙ୍କ ଖାଇବା ପରି ବିଛଣାରୁ ଉଠିପଡ଼ି ମୁଁ ଧାଇଁଗଲି ମୋ ପଢ଼ାଘରର ଝରକା ପାଖକୁ । ଝରକା ଖୋଲି ଚାହିଁଲି ସେଇ କୂଅ ଆଡ଼େ । ଦଳେ ବଣି ଖୁଣ୍ଟି ଚାଲିଥିଲେ ପୋକଜୋକ ଓ ଝିଣ୍ଟିକା । ମୋତେ ଲାଗିଲା, ସେମାନେ ବଣି ନୁହଁନ୍ତି; ଉଦ୍‌ବାସ୍ତୁ ଆତ୍ମାମାନେ ସଜାଡୁଛନ୍ତି ସେମାନଙ୍କ ଉଜୁଡ଼ା ଘର ।



# ଗାଆଁର ଡାକ

ରାତ୍ରି ସାହିର ଢିଙ୍କି ପାହାର ଶୁଣି ବିଛଣାରୁ ଉଠିପଡ଼ିବ ବୋଉ । ମୋତେ ହଲାଇ ହଲାଇ ନିଦରୁ ଉଠାଇ କହିବ - ପାହାନ୍ତିଆ ପଢ଼ିବୁ ବୋଲି କହୁଥିଲୁ ପରା । ଉଠ - ଉଠ । କମ୍ବଳ ତଳର ଉଷୁମ ଛାଡ଼ି ଉଠିବାକୁ ଇଚ୍ଛା ହେଉ ନଥିଲେ ମଧ ବୋଉର ବାଧ୍ୟରେ ଉଠିବାକୁ ହୁଏ । ମୁଁ ଉଠିପଡ଼ି ଘର କୋଣରେ ମିଞ୍ଜି ମିଞ୍ଜି ହୋଇ ଜଳୁଥିବା ଲଣ୍ଠନଟିକୁ ତେଜିବି । କଳା ପଡ଼ିଯାଇଥିବା ମହଳଣ କାଚରେ ସଫା ଦିଶୁ ନ ଥିବ ଲଣ୍ଠନର ଆଲୁଅ । ବୋଉ କହିବ ମୁହଁ ଧୋଇପକା ନିଦ ଛାଡ଼ିଯିବ । ବରଫ ପରି ଲାଗୁଥିବା ପାଣିରେ ମୁହଁ ଧୋଇପକାଇ ବିଛଣାରୁ କମ୍ବଳଟିକୁ ଟାଣି ନେଇ ମୁଁ ବସିଯିବି ପଢ଼ାରେ । ବୋଉ ଡିବିରିଟିଏ ଜଳାଇ ବାଡ଼ିପଟ ଚୁଲି ପାଖକୁ ଯିବ । କୁଟା ଓ ବାଉଁଶପତ୍ରରେ ଧରାଇବ ଚୁଲି । ଚୁଲିରେ ବସାଇବ ଧାନଉଁଷା ହାଣ୍ଡି । ମାଟି ନନ୍ଦାରେ ଗରମ ପାଣିରେ ବଙ୍ଗା ହୋଇଥିବା ଧାନକୁ ପାଛିଆରେ ଛାଣି ହାଣ୍ଡିରେ ପୂରାଇବ ଦୋଉଁଷା ପାଇଁ । ଗଉଣୀରେ ଧାନ ମାପିବା ପରି ଭର୍ତ୍ତି ହୋଇଥିବ ଧାନଉଁଷା ହାଣ୍ଡି । ଧୀରେ ଧୀରେ ଉଠୁଥିବ ବାମ୍ଫ । ସାରୁମୁଣ୍ଡା କିମ୍ବା ଓଲୁଅଟାଏ ପୋତି ଦେଇଥିବ ବୋଉ ବାମ୍ଫୁଆଣି ଧାନ ଭିତରେ । ବୋଉର ଚାଲିଥିବ ଧାନଉଁଷା ଓ ମୋର ପାହାନ୍ତିଆ ପଢ଼ା ।

ଆମ ବାଡ଼ିପଟ ବାଉଁଶ ବଣରେ କୁମ୍ଭାଟୁଆ ଡାକ ଛାଡ଼ିଲେ, ବୋଉ ସୂଚନା ପାଇବ ରାତି ପାହି ଆସିଲା । ହାତରେ ନଗି ଖଣ୍ଡେ ଧରି କଠଉଲଗା ଲମ୍ବା ଲମ୍ବା ପାହୁଣ୍ଡ ପକାଇ ବାହାରି ଆସିବେ ତଳ ସାହି ନୀଳା ସାଆନ୍ତ ଫୁଲ ତୋଳିବାକୁ । ବୋଉ ଗୋବର ହାଣ୍ଡିରୁ ପାଣିନେଇ ଗୋଟିଏ ମାଟି ଉହ୍ଲେଇରେ ପବିତ୍ର ପାଣି ପକାଇବ ଅଗଣା ଓ ଦାଣ୍ଡ ଦୁଆରେ । ପବିତ୍ର ପାଣି ପକାଇ ସାରି ସାନବୋଉମାନଙ୍କର ଶୋଇବା ଘରର ଶିକୁଳିକୁ ଝଣ - ଝଣ କରିଦେଇ ଡାକି ଦେବ ଲୋ ସର, ଲୋ ବିଳାସୀ, ଉଠ ରାତି ପାହିଲାଣି । ସେମାନଙ୍କ କବାଟ ଖୋଲାର ବିଳମ୍ବ ଦେଖି ଆଉଥରେ

ଜୋର୍‌ରେ ଡାକ ଛାଡ଼ିବ ବୋଉ – ସୂରୁଯ ଉଠିବାକୁ ବସିଲେଣି, ତମର ନିଦ ଭାଙ୍ଗୁନିନା ସାଆନ୍ତାଣୀମାନେ । ନିଦ ମଳମଳ ଆଖି ଓ ମୁହଁ ଫଣଫଣ କରି ଉଠିବେ ସେମାନେ । ବୋଉ ବରାଦ କରିଦେବ କାହାକୁ ଘର ଓଳାଇବା ପାଇଁ ତ, କାହାକୁ ବାସି ବାସନ ମାଜିବାକୁ ।

ମୋତେ କହିବ ଉଠ୍ – ତୋ' ପଢ଼ା ସେତିକି ଥାଉ । ଯା' କୁକୁଡ଼ା ଭାଡିଟା ଖୋଲିଦେ । ସେ ଗଞ୍ଜାଟା ରାତି ନ ପାହୁଣୁ କକ୍‌କକ୍‌ଅ କରି ମରୁଛି । ମୁଁ ଯାଇ କୁକୁଡ଼ା ଭାଡ଼ିର ପଟା ଟେକିଦେବି । ଭାଡ଼ି ଭିତରୁ ବାହାରି ଆସି ଗଞ୍ଜାଟା ପରକୁ ଝାଡ଼ି ପକାଇବ ଆଳସ୍ୟ ଭାଙ୍ଗିବା ଠାଣିରେ । ଆଉ ଦୁଇଥର କକ୍‌କକ୍‌ଅ –କକ୍‌କକ୍‌ଅ କରି ଚାଲିଯିବ ବାଡ଼ିପଟକୁ ।

ଆମ ବାଡ଼ିପଟ କରଞ୍ଜ ଗଛରୁ ଦାନ୍ତକାଠିଟାଏ ଭାଙ୍ଗି ମୁଁ ଦାନ୍ତ ଘଷିସାରିବା ବେଳକୁ ବାପାଙ୍କ ଶୋଇବାଘରୁ ଶୁଭିବ ପ୍ରଭାତ ବନ୍ଦନା – "ବନ୍ଦେ ମାତରଂ ସୁଜାଳଂ, ସୁଫଳାଂ, ଶସ୍ୟ ଶ୍ୟାମଳା ମାତରଂ ।" ସେ ଗୀତଟାକୁ ସେ ବୟସରେ ମୁଁ ସେତେ ଭଲ ପାଇପାରୁ ନଥିଲେ ମଧ୍ୟ ଜାଣୁଥିଲି ଏହା ରେଡିଓ ଖୋଲିବାର ପ୍ରଥମ କାର୍ଯ୍ୟକ୍ରମ । ଦିନେ ଦିନେ ତ ବାପା ରେଡିଓର କାର୍ଯ୍ୟକ୍ରମ ଆରମ୍ଭ ପୂର୍ବରୁ ଖୋଲିଦେଇଥାନ୍ତି, ରେଡ଼ିଓରେ ବଂଶୀ ଫୁଙ୍କିବା ପରି ଶବ୍ଦଟିଏ ବାଜୁଥାଏ ବହୁ ସମୟ ଯାଏଁ ।

ରେଡ଼ିଓର କାର୍ଯ୍ୟକ୍ରମ ଶୁଣିବା ବ୍ୟତୀତ ରେଡ଼ିଓକୁ ନେଇ ମଧ୍ୟ ବାପାଙ୍କ ଭିତରେ ଥିଲା ପ୍ରଚୁର ଅହଂଭାବ । ଆମ ଗାଆଁ ତଥା ପାଖ ଆଖ ଗାଁରେ ସେତେବେଳେ କାହାର ରେଡ଼ିଓ ନଥିଲା । କଲିକତାରୁ ଧରି ଆସିଥିଲେ ବାପା ହଲାଣ୍ଡ ଫିଲିପ୍‌ସ ରେଡ଼ିଓଟିଏ । ସେ ରେଡ଼ିଓଟି ଆମ ଘରେ ପହଞ୍ଚିବା ଦିନ ଗୋଟେ ଛୋଟକାଟର ମେଳଣ ହୋଇଯାଇଥିଲା ଆମ ଦାଣ୍ଡରେ । ଘର ଆଗରେ ଗୋଟିଏ ଉଚ୍ଚା ବାଉଁଶ ପୋତାଯାଇ ବନ୍ଧା ଯାଇଥିଲା ତାହାର ଏରିଏଲ୍ । ଘର ଭିତରେ ଛନ୍ଦା ଯାଇଥିଲା ସରୁ ସରୁ ତାରର ଲମ୍ୱା ଲମ୍ୱା ଜାଲି । ହାରମୋନିୟମ୍‌ର ରିଡ୍ ପରି ଗୋଟିଏ ସୁଇଚ୍‌କୁ ଦବାଇଲେ ଅନ୍ୟଟି ଉଠି ପଡୁଥିଲା । ଏରିଏଲ୍ ଲଗାଇ, ବ୍ୟାଟେରିରେ ତାର ଯୋଡ଼ି ଯେତେବେଳେ ରେଡ଼ିଓର ସୁଇଚ୍ ଅନ୍ ହେଲା ସେତେବେଳେକୁ ସରିଆସିଥିବା ଗୋଟେ ଭଜନର ଶେଷ ଧାଡ଼ିଟି କେବଳ ଶୁଣାଗଲା –

"ଜଗନ୍ନାଥ ହେ କିଛି ମାଗୁ ନାହିଁ ତୋତେ
ମାଗୁଛି ଶରଧା ବାଲିରୁ ହାତେ ।"

ମୋ ଜେଜୀମା' ସେ ଗୀତ ପଦକ ଶୁଣୁ ଶୁଣୁ ଭକ୍ତି ଗଦ୍‌ଗଦ ଚିତ୍ତରେ ଜଗନ୍ନାଥଙ୍କୁ ହାତ ଯୋଡ଼ିବା ବେଳକୁ ଆରମ୍ଭ ହୋଇଯାଇଥିଲା ଦିଲ୍ଲୀରୁ ଓଡ଼ିଆରେ ସମ୍ବାଦ । ଖବର ପଢୁଛନ୍ତି ଉପେନ୍ଦ୍ରନାଥ ପାହାଡ଼ସିଂହ ଶୁଣିପକାଇ ମୋ ଜେଜୀମା' ଚକିତ ହୋଇ ବାପାଙ୍କୁ ପଚାରିଲା - ଆରେ ଏଇନେ ଗୀତ ଶୁଣଉ ଶୁଣଉ ଇଏ କେତେବେଳେ ତା' ଭିତରେ ପଶିଗଲା ଯେ ଖବର ଶୁଣାଇଲାଣି ।

ବାପା କଲିକତାରୁ ଆହରଣ କରିଥିବା ତାଙ୍କର ବେତାର ବିଷୟକ ଜ୍ଞାନରେ କହିଲେ - ଏହା ଭିତରେ କେହି ପଶୁନାହାନ୍ତି ବୋଉ ! ଏହା ଭିତରେ କେବଳ କିଛି ଯନ୍ତ୍ର ଅଛି ଯିଏ କଟକ, କଲିକତା ଓ ଦିଲ୍ଲୀରୁ ଆସୁଥିବା ଶବ୍ଦକୁ ତା' ଭିତରକୁ ଟାଣି ଆଣୁଛି ।

ଆମ ଘରେ ରେଡ଼ିଓ ଲାଗିବା ବର୍ଷ ହିଁ ଭାରତ ଓ ଚୀନ୍ ମଧ୍ୟରେ ଯୁଦ୍ଧ ହୋଇଥିଲା । ଦେଶ ଦେଶ ମଧ୍ୟରେ ଯୁଦ୍ଧ କେମିତି ଓ କେଉଁଥିରେ ଲଢ଼ାଯାଏ ଯଦିଓ ଆମ ଗାଆଁ ଲୋକ ବୁଝିପାରୁ ନ ଥିଲେ, ତଥାପି କେବଳ ବୁଝୁଥିଲେ ଗୁଳିଗୋଳା ଓ ବନ୍ଧୁକରେ ଯୁଦ୍ଧ ଚାଲିଛି ସୀମାନ୍ତ ବୋଲି କେଉଁ ଗୋଟେ ଜାଗାରେ । ସନ୍ଧ୍ୟାରେ ରେଡିଓରୁ ଯୁଦ୍ଧ ଖବର ଶୁଣିବା ପାଇଁ ରୀତିମତ ଗୋଟେ ମେଳା ବସୁଥିଲା ଆମ ଦାଣ୍ଡ ପିଣ୍ଡାରେ । ଚୀନ୍ କେତେ ବଡ଼ ଦେଶ, ତାହାର କଳନା କରି ନ ଥିବା ଆମ ଗାଆଁର କିଛି କଲିକତିଆ ଯେଉଁମାନେ ଯୁଦ୍ଧ ଭୟରେ କଲିକତା ଛାଡ଼ି ଗାଆଁକୁ ଚାଲି ଆସିଥିଲେ ସେମାନେ ଖବର ଶୁଣୁ ଶୁଣୁ କଥା କଥାକେ କହୁଥିବେ ଭାରତ ପାଖରେ ଯେତିକି ବୋମା ଅଛି, ତାକୁ ପକାଇଦେଲେ ଚୀନ୍ କୁଆଡ଼େ ଚିନି ପରି ମିଳାଇଯିବ । ନେହେରୁ ତାଙ୍କୁ ଖେଳାଉଛନ୍ତି ଏଇନେ, ବାଘ ଶିକାର ପୂର୍ବରୁ ଆହାରକୁ ଖେଳାଇବା ପରି । ଖେଳାଇ ଖେଳାଇ ମାରିବେ ସିଏ - ଦେଖ ଆଉ ଦିନ କେତେଟା ଯାଉ ।

ଦିନେ ଦିନେ ହଠାତ୍ ଆମ ଗାଆଁ ଉପରେ ଗୋଟିଏ ଯୋଡ଼ିଏ ଉଡ଼ାଜାହଜ ଦୌଡ଼ାଦୌଡ଼ି ହେଲା ପରି ଉଡ଼ିଯାଆନ୍ତି । ଆମେ ସବୁ ପିଲାଏ ଉଡ଼ାଜାହଜ ଦେଖିବୁ ବୋଲି ଘରୁ ବାହାରକୁ ଦୌଡ଼ି ଆସୁଥିବା ବେଳେ ବଡ଼ମାନେ ତାଗିଦ୍ କରୁଥିବେ - ଯୁଦ୍ଧ ଚାଲିଛି, କେତେବେଳେ ବିମାନରୁ ବୋମା ପଡ଼ିବ କିଏ ଜାଣେ - କାହିଁକି ବାହାରକୁ ବାହାରୁଛ ? ଯାଆ - ଘରକୁ ଯାଆ । ଆମେ ଶୁଣୁ ନ ଥିବୁ କାହାରି ବାରଣ, ମାନୁ ନ ଥିବୁ ଆକଟ । ପିଣ୍ଡା ଉପରୁ କୁଦାମାରି ଦାଣ୍ଡକୁ ଆସିଲା ବେଳକୁ ଉଡ଼ାଜାହଜ ଚାଲିଯାଇଥିବ ଦୂରକୁ । ଆମେ କେବଳ ଚାହିଁ ରହିଥିବୁ ତା'ର ଉଡ଼ିଯିବାକୁ ।

ଯେଉଁଦିନ ଗୋଟେ ଯୋଡ଼େ ଉଡ଼ାଜାହାଜ ଉଡ଼ିଯାଇଥାଆନ୍ତି ଗାଆଁ ଉପରେ, ସେଦିନ ସନ୍ଧ୍ୟାରେ ବେଶି ଭିଡ଼ ଜମେ ଆମ ପିଣ୍ଡାରେ ରେଡ଼ିଓରୁ ଖବର ଶୁଣିବାକୁ। ଥରେ ତ ଗୋଟେ ଅଜବ ଘଟଣା ଘଟିଲା। ଆମ ଗାଆଁଠାରୁ ପାଞ୍ଚକୋଶ ଦୂରରୁ ଜଣେ ଅଜଣା ବ୍ୟକ୍ତି ଆସି ପହଞ୍ଚିଲେ ଆମ ଘରେ ରେଡ଼ିଓରୁ ଖବର ଶୁଣିବା ପାଇଁ। ସେ ଯେତେବେଳେ ଆସି ପହଞ୍ଚିଲେ, ସେତେବେଳେ କୌଣସି ଖବରର ସମୟ ନ ଥିଲା। ଖବର ସମୟକୁ ଅପେକ୍ଷା କରି ସେ ବସି ରହିଥାଆନ୍ତି ଦାଣ୍ଡ ପିଣ୍ଡାରେ।

ସତରେ କ'ଣ ଯୁଦ୍ଧ ଖବର ଶୁଣିବାରେ ତାଙ୍କର ଏତେ ସଉକ ? ଏହି ଉତ୍ସୁକତା ନେଇ ତାଙ୍କୁ ବହୁତ ପଚରାଉଚରା କରାଗଲା। ବହୁତ ପଚରା ପଚରି ପରେ ସେ କହିଲେ – ତାଙ୍କର ଗୋଟିଏ ବୋଲି ପୁଅ। ଘରୁ ରାଗିକରି ଚାଲିଗଲା ଗୋଟେ ଛୋଟିଆ କଥାରେ। କଥାଟା ଥିଲା ପଢୁଆଁ ଅଷ୍ଟମୀରେ ତା' ପାଇଁ ଜାମାପ୍ୟାଣ୍ଟ ନ କରି ଆମେ ଗୋଟେ ଲୁଙ୍ଗି ଓ ଗଞ୍ଜି କିଣି ଆଣିଥିଲୁ। ଚଣ୍ଡାଳଟା ସେତିକି କଥାରେ ରାଗିକରି ଘରୁ ଚାଲିଗଲା। ରାଗିକରି ଗଲା ତ ଗଲା କେଉଁଠି ଗୋଟେ ସୈନ୍ୟବାହିନୀରେ ଭର୍ତ୍ତି ପାଇଁ ଡକରା ଚାଲିଥିଲା, ରାଗର ମାଡ଼େ ସେଠି ଯାଇ ଠିଆ ହୋଇଗଲା ପଡ଼ିଆରେ। ଇଏତ ଶାଳଗଜା ପରି ହଟାକଟା ଭେଣ୍ଡିଆଟାଏ। ତାକୁ କୁଆଡ଼େ ବିନା ଦୌଡ଼ାଦୌଡ଼ିରେ ସିଲେକ୍ଟ କରି ସଙ୍ଗେ ସଙ୍ଗେ ଦେଇଦେଲେ ସୈନିକର ପୋଷାକ। ଦିନେ ଦୁଇଦିନ ବନ୍ଧୁକ ଚାଳନା ଶିଖାଇ ପଠାଇଦେଲେ ଯୁଦ୍ଧ ଜାଗାକୁ। ଯୁଦ୍ଧକ୍ଷେତ୍ରରେ ପହଞ୍ଚିବା ପରେ ଯାଇ ହିଁ ତା'ର ରାଗ ଶାନ୍ତ ହେଲା। ତା' ମାଆ ପାଖକୁ ଚିଠିଟିଏ ଲେଖିଲା। ସେ ଚିଠି ପାଇବା ପରେ ତ ତା' ମାଆ କାନ୍ଦି କାନ୍ଦି ବେହୋସ୍। ପୁଅ କଥା ଭାଳି ଭାଳି ଘଡ଼ିକୁ ଘଡ଼ି ମୂର୍ଚ୍ଛା ଯାଉଛି। ମୁଁ ଖବର ପାଇଲି ଯେ ରେଡ଼ିଓରେ ଯୁଦ୍ଧ ଖବର ଦେଉଛି। ତେଣୁ ତା' ମାଆକୁ ବୁଝାଇ ଶୁଝାଇ ଆସିଛି ଯେ ରେଡ଼ିଓରୁ ପୁଅ ଖବର ବୁଝି ତାକୁ ଯାଇ କହିବି। କହିଦେଲି ସିନା ରେଡ଼ିଓରୁ ଖବର ବୁଝି କହିବି ବୋଲି, ହେଲେ ରେଡ଼ିଓ କାହିଁ? ଅନେକ ଲୋକଙ୍କୁ ପଚରା ଉଚୁରା କଲାପରେ ଯାଇ ଖବର ପାଇଲି ଏଠି ଗୋଟେ ରେଡ଼ିଓ ଅଛି ବୋଲି। ତେଣୁ ଚାଲି ଆସିଲି।

ତାଙ୍କ କଥା ଶୁଣି ବାପାଙ୍କ ଛାତି ଗର୍ବରେ ଫୁଲି ଉଠିଲା। ଏଥିପାଇଁ ଯେ ଅନ୍ତତଃ ପାଞ୍ଚ କୋଶ ଯାଏଁ ଲୋକ ତ ଜାଣିଗଲେଣି ଯେ ଆମର ଗୋଟେ ରେଡ଼ିଓ ଅଛି ବୋଲି। ତାଙ୍କ ପାଇଁ ଚା' ଜଳଖିଆ ବରାଦ କରି ତାଙ୍କୁ ଦାଣ୍ଡ ଚୌକିରେ

ବସିବାକୁ କହିଲେ, ତାଙ୍କୁ ଆଶ୍ୱାସନା ଦେଲା ପରି କହିଲେ - ଆଉ ଘଣ୍ଟାଏ ପରେ ଖବର ଦେବ, ଆପଣ ଶୁଣିବେ । ଖବର ଶୁଣିସାରି ଏ ଅବେଳରେ ଆପଣ କ'ଣ ଏତେ ଦୂରବାଟ ଯାଇପାରିବେ, ନଚେତ୍ ରାତିରେ ରହିଯିବେ, ସକାଳୁ ସକାଳୁ ଚାଲିଯିବେ ।

ନାଇଁ ବାବୁ! ଯେତେ ରାତି ହେଲେ ବି ମୁଁ ଚାଲିଯିବି । ଆଜି ତ ଜହ୍ନରାତି, ଯିବାକୁ ଅସୁବିଧା ନାହିଁ । ବୁଢ଼ୀଟା ସେପଟେ ଏକୁଟିଆ । ସେଥିକୁ ପୁଅ ପାଇଁ ଘଡ଼ିକୁ ଘଡ଼ି ମୂର୍ଚ୍ଛା ଯାଉଛି । ମୋ ନ ଯିବା ଦେଖି ସେ କ'ଣ ରାତି ଭରି ଥୟ ଧରିବ ।

ରେଡ଼ିଓରେ ଖବର ଆରମ୍ଭ ହେଲା । ସମ୍ପୂର୍ଣ୍ଣ ଖବର ଥିଲା ଯୁଦ୍ଧ ସମ୍ପର୍କିତ ଖବର । ଗ୍ରାମାଞ୍ଚଳର ସରହଦ ଡେଇଁ ଆଦୌ ସହର ଦେଖି ନଥିବା ସେ ଲୋକଜଣକ ସିଆଚୀନ କ'ଣ, ସିକିମ୍ କ'ଣ, ଲଦାଖ କ'ଣ ଆଦୌ ବୁଝିପାରୁ ନଥିଲେ । ବୋମା ମାଡରେ ଦେଶମାତୃକା ପାଇଁ ସହିଦ ହୋଇଥିବା ଅମକ ରେଜିମେଣ୍ଟ, ସମକ ରାଇଫଲର ସୈନ୍ୟମାନଙ୍କର ନାଆଁ ଶୁଣି ସେ କେବଳ କାନ ପାତୁଥିଲେ ତାଙ୍କର ପୁଅ ନାଆଁ ଶୁଣିବା ପାଇଁ । ଖବର ଶେଷ ହେଲା ପରେ ସେ ଖୁବ୍ ବିମର୍ଷ ହୋଇ କହିଲେ - ମୋ ପୁଅ ତ ଯୁଦ୍ଧ କରୁଛି, କାହିଁ ତା' କଥାତ କିଛି କହିଲା ନାହିଁ ରେଡ଼ିଓ ?

ବାପା ତାଙ୍କର ସରଳତାକୁ ହୃଦୟଙ୍ଗମ କରି କହିଲେ - ସମସ୍ତ ସୈନିକମାନଙ୍କ ଭଲମନ୍ଦ କଥା ତ ଅଳ୍ପ ସମୟର ଖବରରେ କହିହେବ ନାହିଁ । ଯେଉଁମାନେ ଦେଶ ପାଇଁ ଯୁଦ୍ଧ କରି ସହିଦ୍ ହୋଇଛନ୍ତି, କେବଳ ତାଙ୍କରି କଥା କହିଲା ।

ସେ ସହିଦର ଅର୍ଥ କିଛି ବୁଝିପାରୁନଥିଲେ - ମାତ୍ର ଭରସି ପାରୁ ନ ଥିଲେ ପଚାରିବାକୁ ସହିଦ୍ କ'ଣ ? ଖବର ସରିଗଲା ପରେ ଗୋଟେ ଅପ୍ରାପ୍ତିର ଅବସୋସ୍ ନେଇ ସେ ବାହାରି ପଡ଼ିଲେ ତାଙ୍କ ଗାଆଁକୁ ।

ବାପାଙ୍କର ରେଡ଼ିଓ ସଉକ ଯେମିତି ଥିଲା, ଆମମାନଙ୍କର ପାଠପଢ଼ା ପ୍ରତି ଧ୍ୟାନ ମଧ୍ୟ ସେମିତି ଥିଲା । କୋଡ଼ ପୋଛା ପିଲା ହୋଇଥିବାରୁ ଗେହ୍ଲାରେ କିଛି ବର୍ଷଯାଏଁ ମୋ ପାଠପଢ଼ା ପ୍ରତି କେହି ଗୁରୁତ୍ୱ ଦେଇ ନଥିଲେ । ସାତ - ଆଠ ବର୍ଷ ଯାଏଁ ମୁଁ ବୁଲୁଥିଲି ଶ୍ରୀଅକ୍ଷର ବିବର୍ଜିତ ହୋଇ । ହଠାତ୍ ସରସ୍ୱତୀ ପୂଜା ଦିନ ବାପା ଘୋଷଣା କଲେ - ଆଜିଠୁଁ ଆରମ୍ଭ ହେବ ତୋର ଖଡ଼ିଛୁଆଁ । ସମସ୍ତ ପ୍ରସ୍ତୁତି ପରେ ଆମ କୁଳ ପୁରୋହିତ ଆଚାର୍ଯ୍ୟ ବିଷ୍ଣୁଦାସଙ୍କୁ ପୂଜା କରିବା ପାଇଁ ସେ ଡାକିଲେ । ତାଙ୍କୁ ଆଚାର୍ଯ୍ୟ ଏଇଥିପାଇଁ କୁହାଯାଉଥିଲା ଯେ ସେ ଗୋଟେ ଚାଟଶାଳୀ ଖୋଲି

ପିଲାମାନଙ୍କୁ ବର୍ଣ୍ଣମାଳା ଶିକ୍ଷା ଦେଉଥିଲେ । ପୂଜା ପାଠ ପରେ ସରସ୍ୱତୀ ବନ୍ଦନା ଗାଇ ମୋର ଖଡ଼ିଛୁଆଁ ଆରମ୍ଭ ହେଲା । ଖଡ଼ିଛୁଆଁ ପର୍ବ ସରିବା ପରେ ବାପା ଆଚାର୍ଯ୍ୟଙ୍କୁ କହିଲେ - ଏହାର ଶିକ୍ଷା ତମ ଚାଟଶାଳୀରେ ନୁହଁ ଆମ ଘରେ ଆରମ୍ଭ କରିବ । ବର୍ଣ୍ଣମାଳାର ପ୍ରତ୍ୟେକ ଅକ୍ଷର ପାଇଁ ମୁଁ ଅଧୁଲିଏ ଦେବି । ସେତେବେଳେ ଅଧୁଲିର ମୂଲ୍ୟ ଢେର ଥିଲା । ଅକ୍ଷର ପିଛା ଅଧୁଲିଏ - ଚକିତ ହେବା ସହ ଆଗ୍ରହରେ ମୋର ପଢ଼ା ଦାୟିତ୍ୱ ସେ ନେଲେ ।

ଯେହେତୁ ବର୍ଣ୍ଣମାଳାର ଶିକ୍ଷାର ବୟସରୁ ମୁଁ ଟିକିଏ ଅଧିକ ବର୍ଷର ହୋଇଯାଇଥିଲି, ତେଣୁ ମୋତେ ବର୍ଣ୍ଣମାଳା ଶିଖାଇବାକୁ ତାଙ୍କୁ ସେମିତି କିଛି ବିଶେଷ କଷ୍ଟ କରିବାକୁ ପଡ଼ି ନଥିଲା । ସେ ଆକଳନ କରିଥିବା ସମୟର ଯଥେଷ୍ଟ ପୂର୍ବରୁ ମୁଁ ଶିଖିଯାଇଥିଲି ବର୍ଣ୍ଣମାଳା । ବର୍ଣ୍ଣମାଳା ପରେ ଯୁକ୍ତାକ୍ଷର, ଯୋଗ, ବିଯୋଗ, ପଣକିଆ, ଗୁଣନ, ହରଣ ଇତ୍ୟାଦି ଖୁବ୍ ଜଲ୍‌ଦି ଜଲ୍‌ଦି ଶିଖି ମୋର ପୁସ୍ତକ ପ୍ରବେଶ ହୋଇଗଲା ଅଳ୍ପ କେତେଟା ମାସ ମଧ୍ୟରେ । ବର୍ଷକ ମଧ୍ୟରେ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ପାଠ ସମାପ୍ତ ହେବାରୁ ଏକାଥରକେ ମୋର ନାଆଁ ଲେଖାଗଲା ତୃତୀୟ ଶ୍ରେଣୀରେ ।

ତୃତୀୟ ଶ୍ରେଣୀର ଶିକ୍ଷାଦାନ ନିମନ୍ତେ ବିଷ୍ଣୁସାର୍‌ଙ୍କର ଯୋଗ୍ୟତା ବୋଧହୁଏ ନ ଥିଲା । ଏକଥାକୁ ହୃଦୟଙ୍ଗମ କରି ବାପା ଶ୍ରୀରାମ ବେହେରାଙ୍କୁ ମୋର ଗୃହଶିକ୍ଷକ ଭାବେ ନିଯୁକ୍ତ କଲେ । ସେତେବେଳେ ଗଣିତରେ ପଟୁ ବୋଲି ଶ୍ରୀରାମ ବେହେରାଙ୍କର ଯଥେଷ୍ଟ ନାଆଁ ଥିଲା । ଯଦିଓ ମୋତେ ପଢ଼ାଇବା ବେଳକୁ ସେ ମ୍ୟାଟ୍ରିକ୍‌ରେ ତିନିଥର ଫେଲ ହୋଇସାରିଥିଲେ, ତଥାପି ତାଙ୍କର ବିଶେଷ ଯୋଗ୍ୟତା ଥିଲା ଯେ ସେ ମ୍ୟାଟ୍ରିକରେ କେବଳ ଇଂରାଜୀରେ ଫେଲ୍ ହେଉଥିଲେ ଏବଂ ଫେଲ୍ ହୋଇଥିବା ତିନିଥର ଯାକ ଗଣିତର ଦୁଇଟିଯାକ ପତ୍ରରେ ସେ ଶତକଡା ଶହେରୁ ଶହେ ମାର୍କ ରଖିଥିଲେ ।

ସେ ମୋତେ ପଢ଼ାଇବା ଦିନଠାରୁ ହିଁ ମୋର ଶନିଦଶା ଆରମ୍ଭ ହୋଇଯାଇଥିଲା ଜାଣ । ଏମିତି ଗୋଟିଏ ଦିନ ନ ଥିଲା ଯେଉଁଦିନ ତାଙ୍କର ବେତ୍ରାଘାତରେ ପିଠିରେ ନୋଳା ଫାଟୁ ନଥିଲା । ବିଷ୍ଣୁସାର୍‌ଙ୍କ ପାଖରେ ଘୋଷିଥିବା ଓ ଅନର୍ଗଳ କହିପାରୁଥିବା ପଣକିଆ ହଠାତ୍ ଯେମିତି ବାଟଭାଙ୍ଗି ମୋ'ଠାରୁ ଦୂରେଇ ଯାଇଥିଲେ । ବିଷ୍ଣୁସାର୍ ଗୋଟିଏ ପଣକିଆକୁ ମୂଳରୁ ଶେଷଯାଏଁ କହିବାକୁ କହୁଥିଲେ, ମାତ୍ର ଇଏ ଥିବେ ଥିବେ ହଠାତ୍ ପଚାରିଦେବେ ଅଠର ଶୋ କେତେ ? ମନେ ମନେ ମୂଳରୁ ଡାକି ହାକି ଯିବାକୁ

ସମୟ ଦେବେନି । କହ କହ କହି ଅତର୍ଛିଆ କରୁଥିବେ । ସେହି ଅତର୍ଛିଆରେ ମୋର ଭୁଲ୍ ହୋଇଯାଏ ସବୁ । ଆରମ୍ଭ ହୋଇଯାଏ ମାଡ଼ ।

ମାରିବେ ତ ମାରିବେ, ସେଥିରେ ପାଟିକରି କାନ୍ଦିଲେ ଆହୁରି ମାଡ଼ । ପାଟିକୁ ବନ୍ଦ କରି ନିଜ ଭିତରେ ହିଁ ଚିପୁଡ଼ି ହୋଇ କାନ୍ଦୁଥିବି । ଥରେ ଥରେ ତ ତାଙ୍କର ମାଡ଼ ଦେବାର ଢଙ୍ଗକୁ ସମ୍ଭାଳି ନ ପାରି ମୋର ଜେଜୀମା, ଆସି କହିବ - ଆରେ ଶ୍ରୀରାମ ତୁ ତ ପିଲାଟାକୁ ଯେମିତି ପିଟୁଛୁ, ସେ ତ ଚିଙ୍ଗୁଡ଼ି ମାଛ ପରି ଡେଉଁଛି, ସେଥିରେ ତା'ର ପାଠ କ'ଣ ମନରେ ରହିବ ନା ସେ ତୋ' ପ୍ରଶ୍ନର ଉତ୍ତର କ'ଣ ଦେବ । ଜେଜୀମା'ର ସେହି କଥା ମୋର ମନୋବଳକୁ ବଢ଼ାଉଥିଲା ସତ, ମାତ୍ର ତା'ର କୌଣସି ପ୍ରଭାବ ପଡୁ ନ ଥିଲା ତାଙ୍କ ଉପରେ । ଯେ ଯଥା ପୂର୍ବଂ ତଥା ପରଂ ନୀତିରେ ମାଡ଼ ଦେଇ ଚାଲୁଥିଲେ ।

ଥରେ ସିଏ ମୋତେ ଗୋଟେ ଗଣିତ ଦେଲେ - ତିନିଜଣ ଲୋକ ଗୋଟିଏ କାମକୁ ତିନିଦିନରେ କଲେ, ଜଣେ ଲୋକ ସେହି କାମଟିକୁ କେତେ ଦିନରେ କରିବ ? ଗଣିତଟି ଦେବା ପରେ କ'ଣ ଗୋଟେ କାମ ପଡ଼ିଲା । ସେ ମୋତେ କହିଲେ, ତୁ ଗଣିତଟି କରୁଥାଆ, ମୁଁ ଆସୁଛି । ସେ ଗଲାପରେ ମୁଁ ଗଣିତଟିକୁ ଖୁବ୍ ଗଭୀର ଭାବରେ ଚିନ୍ତା କରୁଥାଏ । ମାତ୍ର ମୁଁ ଯେତେ ଗଭୀର ଭାବରେ ତାକୁ ଚିନ୍ତା କରୁଥାଏ, ଗଣିତଟି ମୋତେ ସେତେ ସେତେ ଦୁର୍ବୋଧ ଲାଗୁଥାଏ । ଏହି ସମୟରେ ଆମ ବାରିପଟେ ଚାଲିଥାଏ କାଠ ଚିରା । ମୁଁ ପରିସ୍ରା କରିବା ପାଇଁ ଯାଇସେଠି ଘଡ଼ିଏ ଛିଡ଼ା ହୋଇ କରତିଆଙ୍କ କାଠ ଚିରା ଦେଖିଲି । ଭାବୁଥାଏ ସାର୍ ଯଦି ପଳାଇ ଆସିବେ ନା ମାରି ପକାଇବେ । ଆସିବାକୁ ବାହାରୁଛି, ସାର୍‌ଙ୍କ ସେହି ଗଣିତ କଥା ମନେପଡ଼ିଲା । ଏଠି ବି ତ ସେହି ତିନିଜଣ । ଜଣେ ଉପରେ ଓ ଦୁଇଜଣ ତଳେ ଠିଆ ହୋଇ କରତ ଟାଣୁଛନ୍ତି । ଭାବିଲି ଏମାନଙ୍କୁ ପଚାରିଦେଲେ ତ ମୋ ଗଣିତର ଉତ୍ତର ମିଳିଯିବ । ତାଙ୍କୁ ପଚାରିଲି - ଏଇ କାଠ ଚିରା କାମ କେତେଦିନ ଲାଗିବ ?

ଜଣେ କହିଲେ - ଦୁଇତିନି ଦିନ ଲାଗିଯିବ ।

- କ'ଣ ତିନିଜଣଙ୍କୁ ?

- ହଁ ।

- ଯଦି ତିନିଜଣଙ୍କୁ ତିନି ଦିନ ଲାଗିବ, ତେବେ ଜଣେ କଲେ କେତେଦିନ ଲାଗିବ ?

– ଇଏ କ'ଣ ଜଣିକିଆ କାମ ହୋଇଛି କି, [illegible] ହେବ ନାହିଁ ।

ବାସ୍ ମୋ ଗଣିତର ଉତ୍ତର ମୋତେ ମିଳିଗଲା । ଗଣିତ ଖାତାରେ ଅଙ୍କି ଲେଖିଦେଲି – ତିନିଜଣ ଲୋକ ଯେଉଁ କାର୍ଯ୍ୟକୁ ତିନିଦିନରେ କରନ୍ତି, ଜଣେ ଲୋକ ସେ କାର୍ଯ୍ୟଟିକୁ ଆଦୌ କରିପାରିବ ନାହିଁ ।

ସେଦିନ ସାର୍ ଆଉ କାମ ସାରି ଫେରି ନଥିଲେ ପଢ଼ାଇବାକୁ । ତା' ପରଦିନ ସେ ବୋଧହୁଏ ଭୁଲିଯାଇଥିଲେ ଦେଇଥିବା ଗଣିତ କଥା । ଅନେକ ବର୍ଷ ପରେ ଥରେ ସେ ଗଣିତର ସମ୍ମୁଖୀନ ହୋଇ ମୁଁ ହସିଥିଲି ଅନେକ ବେଳଯାଏଁ ।

ମୋର ଟିଉସନ୍ ପଢ଼ା ସରି ନଥିବ ରମା, ରାଧୁଆ, ଅନନ୍ତ ଇତ୍ୟାଦି ଆସି ପଇଁତରା ମାରୁଥିବେ ଆମ ଦାଣ୍ଡରେ ଗାଧୋଇଯିବା ପାଇଁ । ସାର୍ ଉଠିବା କ୍ଷଣି ମୋ ବହିବସ୍ତାନି ସେଇଠି ପଡ଼ିଥିବ ମୁଁ ଧାଇଁବି ତେଲ ଶିଶି ପାଖକୁ । ମୁଣ୍ଡରେ, ପିଠିରେ, ଆଙ୍ଗୁଠି ଅଗରେ ତେଲଟିକେ ମାରିଦେଇ ଆମେ ହାଜର ହୋଇଯାଉଥିଲୁ କାଣୀ ନଈ କୂଳରେ । କୂଳ ଉପରୁ ଗଣ୍ଡକୁ ମାରିବୁ ଖେପା । ଚଉଭାଙ୍ଗ ହେଉଥିବ ପାଣି । ଆଖି ସବୁ କୋଚିଆ ଆଖି ପରି ଲାଲ୍ ଦିଶିବା ଯାଏଁ ଆମେ ବୁଡୁଥିବୁ । ସ୍କୁଲ ବେଳ ହେଲା ବୋଲି ଅନୁମାନ କରିବୁ ଜଗାସାଆନ୍ତର – ଗାଈ ଫିଟା ହୋ ଡାକରେ, ତେବେ ଯାଇ ନଈ ଛାଡ଼ି ଘରକୁ ଫେରିବୁ ।

ପୋଇଗୁଳ ଶୁଖୁଆ ତରକାରି କିମ୍ବା ବଡ଼ିଚୂରା, ଆଳୁଭର୍ତ୍ତା ସହ ପଖାଳ ଭାତକୁ ଠୁଙ୍କି ଦେଇ ବରଡ଼ାପତ୍ରର ଚଟ ଓ ବସ୍ତାନି ଧରି ଆମେ ବାହାରି ପଡ଼ିବୁ ସ୍କୁଲ । ଗୋଟିଏ ଲମ୍ବା ହଲ୍‌ରେ ପାଞ୍ଚଟି ଶ୍ରେଣୀ ଓ ସେଥିପାଇଁ ଦୁଇଜଣ ମାତ୍ର ଶିକ୍ଷକ । ହୋ – ହାଲ୍ଲା ଭିତରେ ଚାଲିଥିବ ପଢ଼ା, ପରସ୍ପର ଭିତରେ ହୁମାଦୁମା, ଚୁଟିଟଣା ଓ ସାର୍‌ଙ୍କ ନିକଟରେ ଅଭିଯୋଗ । ନଈ ପାରି ହୋଇ କଲ୍ୟାଣପୁରରୁ ଆସୁଥିବା ସର୍ବେଶ୍ୱର ସାର୍ ଟିକିଏ ସ୍ନେହୀ ଥିଲେ । ସେ ପିଟାପିଟି ଆଦୌ କରନ୍ତି ନାହିଁ । ତେଣୁ ରସା ସାର୍ ଯେଉଁଦିନ ନ ଥାନ୍ତି ସେଦିନ ଆମର ହୋ – ହାଲ୍ଲା ଓ ପିଟାପିଟି ଚରମ ସୀମାରେ ପହଞ୍ଚେ ।

ସେତେବେଳେ ଆଜିକାଲିର ମିଡ୍‌ଡେ' ମିଲ୍ ଭଳି ବ୍ୟବସ୍ଥା ନ ଥିଲା ସତ, ମାତ୍ର ଆମେରିକା ସରକାରଙ୍କଠାରୁ ସ୍କୁଲ୍ ପିଲାଙ୍କ ପାଇଁ ଆସୁଥିଲା କେୟାର ଫିଡିଂ । ସେଥିରେ ରହୁଥିଲା ମକ୍‌କା ଗୁଣ୍ଡ, ଖଣ୍ଡି ଖଣ୍ଡି ଗହମ, ମିଲ୍‌କ ପାଉଡର ଓ ସୋୟାବିନ୍

ତେଲ । ଗହମକୁ ଭାତ ଭଳି ଶିଝା ଯାଉଥିଲା, ମକ୍‌କା ଗୁଣ୍ଡରେ ଉପମା ହେଉଥିଲା । ମିଲ୍‌କ ପାଉଡରକୁ କ୍ଷୀର କରି ଦିଆଯାଉଥିଲା । ଯେହେତୁ ସେ ଖାଦ୍ୟସବୁ ଗରିବ ଛାତ୍ରଙ୍କ ପାଇଁ ଉଦ୍ଦିଷ୍ଟ ଥିଲା,ତେଣୁ ତାହା ମୋତେ ଓ ମୋ ଭଳି ଅନ୍ୟ କିଛି ଛାତ୍ରଙ୍କୁ ଦିଆଯାଉ ନ ଥିଲା । ମୋର କିନ୍ତୁ ସେ ମକ୍‌କା ଗୁଣ୍ଡ ଖାଇବାରେ ଖୁବ୍ ସଉକ ଥିଲା । କୁର୍ଣ୍ଣିଆ ଅଜା ଯିଏକି ସେସବୁର ରୋଷେଇ ଦାୟିତ୍ୱରେ ଥିଲା, ତାକୁ ପଟାଇ ମୁଁ ବେଳେବେଳେ ମୋ ଖାତାର କାଗଜ ଚିରି ସେଥିରୁ କିଛି ଧରି ପରିସ୍ରା କରିବା ବାହାନାରେ ଯାଇ ଖାଏ । ମକ୍‌କା ଗୁଣ୍ଡ ସହ ସେଥିରେ ଆଉ କିଛି ମିଶୁଥିଲା ନିଶ୍ଚୟ । କାରଣ ତାହା ଟିକେ ଟିକେ ଲୁଣିଆ ଓ ଟିକେ ଟିକେ ମିଠା ଲାଗୁଥିଲା । ତାହାର ସ୍ୱାଦ ଓ ବାସ୍ନା ଆଜିଯାଏ ବି ମୋ ପାଟି ଓ ନାକରେ ରହିଛି ।

ସ୍କୁଲରେ ପଢ଼ିବା ସମୟରୁ ହିଁ ମୋର ଯାତ୍ରା ଓ ପାଲା ଦେଖିବାର ବହୁତ ସଉକ ଥିଲା । ବସନ୍ତ ବଗିଚାଠାରୁ ଆରମ୍ଭ କରି ବାରମାଣିଆ, ପ୍ରୀତିପୁର, ଉତ୍ତରକୁଳଠାରୁ ମଇନ୍ଦା ମେଳଣ ଯାଏ ମୁଁ, ରମା, ରାଧୁଆ, ଅନନ୍ତ ଓ ଶୈଳେନ୍ଦ୍ର ଇତ୍ୟାଦି ଖେପୁଥିଲୁ ରାତାରାତି । କେତେବେଳେ ଘରୁ ଅନୁମତି ନେଇ ତ କେବେବେଳେ ଲୁଚିକରି । ଯାତ୍ରା ଦେଖାଦେଖି ଆମ ବାଡ଼ିପଟ ବାଉଁଶ ବଣରେ ଆରମ୍ଭ ହେଉଥିଲା ଯାତ୍ରା । ବାଉଁଶର ଖଣ୍ଡା ଓ ଧନୁ, ଘଷି ପାଉଁଶ ଓ କାଠ ଅଙ୍ଗାର ଥିଲା ଆମର ମେକ୍‌ଅପ୍ ସାମଗ୍ରୀ । ସେତେବେଳେ ଯାତ୍ରାର କଳାକାରମାନେ ଥିଲେ ମୋ ଦୃଷ୍ଟିରେ ସବୁଠାରୁ ଭାଗ୍ୟବାନ୍ ଲୋକ । ମନେ ମନେ ଗୋଟେ ଯାତ୍ରା କଳାକାର ହେବାର ଅଭୀପ୍ସା ମୋତେ ପ୍ରେରିତ କରୁଥିଲା ବାଉଁଶ ବଣରେ ଅଭିନୟ କରିବା ପାଇଁ । ସେ ଅଭିନୟ ହୁଏତ ଚାଲିଥାଆନ୍ତା ବହୁବର୍ଷ ଯାଏଁ ଯଦି ରମାଭାଇର ବାଉଁଶ ଖଣ୍ଡାରେ ମୋ ନାକ ଉପରେ ଆଜୀବନ ସାଇତି ରଖିବା ଭଳି କ୍ଷତଟିଏ ହୋଇ ନଥାନ୍ତା ।

ଯାତ୍ରା ଦେଖାର ସଉକ ଭଳି ପାଲା ଦେଖିବାର ସଉକ ମଧ୍ୟ ମୋର ଥିଲା ଅଦମ୍ୟ । ସେତେବେଳେ ହରିନାଥ, କ୍ଷେତ୍ରବାସୀ କର, ଜଗନ୍ନାଥ ବେହେରା ଇତ୍ୟାଦିଙ୍କ ପାଲା ଦେଖିବାରେ ମୋର କେତେ ଯେ ରାତି କଟିଛି, ତା'ର ହିସାବ ନାହିଁ । ପାଲାଗାୟକମାନଙ୍କର ସ୍ମରଣଶକ୍ତି ଓ ଶାସ୍ତ୍ରଜ୍ଞାନ ଦେଖି ମୁଁ ଆଶ୍ଚର୍ଯ୍ୟ ହେଉଥିଲି । ମୋର ଗୋଟେ ଗାୟକ ହୋଇପାରିବା ଭଳି ସ୍ୱର ଓ ଶକ୍ତି ନ ଥିଲା ବୋଲି ମୁଁ ପିଲାଦିନୁ ଆକଳନ କରିଥିଲି । ମାତ୍ର ପାଲାଗାୟକମାନେ ଯେଉଁସବୁ ପଦ, ଉପମା ଓ ଛାନ୍ଦ ଗାଉଥିଲେ ସେସବୁ ଲେଖିପାରିବି ବୋଲି ମୋର ଭରସା ଥିଲା । ସେଥିରେ ଯେ

ମୁଁ ହାତ ଆଜ୍‌ମାଇ ନାହିଁ, ସେକଥା ନୁହଁ । ପାଲା ଦେଖି ଦେଖି ଓ ସେଥିରୁ ଗୀତ ଶୁଣି ଶୁଣି ମୁଁ ପ୍ରକୃତି ବର୍ଣ୍ଣନା ଓ ରୂପସୀ ରମଣୀର ରୂପ ବର୍ଣ୍ଣନା କରି କିଛି କିଛି କବିତା ଲେଖି ପକାଇଲି । ମାତ୍ର ତାକୁ ଗାଇବ କିଏ – ଏଇ ଚିନ୍ତାରେ ମନ ଖଲବଲ ହେଉଥାଏ ।

ପାଲା ଦେଖିବାବେଳେ କିଛି ଦର୍ଶକ ପାଲାରେ ପ୍ରୀତ ହୋଇ ହେଉ କିମ୍ବା ବହୁ ଦର୍ଶକଙ୍କ ସାମ୍ନାରେ ନିଜ ନାମ ପ୍ରଚାର ପାଇଁ ହେଉ କିଛି ପୁରସ୍କାର ଦେଉଥିଲେ । ସେହିପୁରସ୍କାର ଦେବା ପାଇଁ ଖୋଜା ପଡୁଥିଲେ କିଛି ପିଲା, ଯିଏକି ମଞ୍ଚ ଉପରକୁ ଯାଇ ଦୁଇପଦ କହି ପୁରସ୍କାର ଦେଇପାରିବେ । ସେତେବେଳେ ସେଥି ନିମିତ୍ତ ମୁଁ ଥିଲି ସବୁଠୁଁ ଯୋଗ୍ୟତମ ପିଲା । ମତର୍ଣ୍ଣ, ଅଲଟ୍ରା ମଡର୍ଣ୍ଣ, ବିଂଶ ଶତାବ୍ଦୀ, ରସଗ୍ରାହୀ, କଳପ୍ରେମୀ ଇତ୍ୟାଦି କିଛି ଶବ୍ଦ ଲଗାଇ ମୁଁ ପୁରସ୍କାରଟି ଗଳାଇ ଦେଉଥିଲି ଗାୟକଙ୍କ ଗଳାରେ । ଏଭଳି ବାରମ୍ବାର ପୁରସ୍କାର ଦେବାକୁ ଯିବା ଦ୍ୱାରା ଗାୟକ କ୍ଷେତ୍ରବାସୀ କରଙ୍କ ସହ ମୋର ମୁହଁ ଚିହ୍ନା ହୋଇଯାଇଥିଲା । ସେହି ଭରସାରେ ଦିନେ ପାଲା ଶେଷ ପରେ ମୁଁ ଯାଇ ପହଞ୍ଚିଲି ସେ ରହୁଥିବା ଜାଗାରେ । ମୋତେ ଦେଖିପକାଇ ସେ ପଚାରିଲେ – କ'ଣ ବାବା, କୁଆଡ଼େ ଆସିଲ ?

ମୁଁ ତାଙ୍କୁ ପଚାରିଲି – ଆଜି କେଉଁ ବିଷୟରେ ପାଲା ହେବ ?

– ସେଇଟା କ'ଣ ଏବେରୁ ନିଷତ୍ତି ନେଲେଣି ।

– ଆପଣ ଯେଉଁ ବିଷୟରେ ପାଲା କରିବେ ସେଥିରେ କ'ଣ ସୁନ୍ଦରୀ ରୂପସୀଙ୍କ ରୂପ ବର୍ଣ୍ଣନା ରହିବ ?

– ମାନେ !

– ଏଇ ଯେମିତି ଗତରାତିରେ ଆପଣ ଗାଉଥିଲେ – 'ଏ ଯୋଷାଚରଣ ଘଷା ପଥରକୁ ନ ହୋଇବେ କେହି ସରି' ।

– ଓହୋ – ହଁ, ରହିପାରେ, କ'ଣ ହେଲାକି ?

– ମୁଁ ବି ସେମିତି ଏକ କବିତା ଲେଖିଛି ।

– ତମେ ଲେଖିଛ – ଦେଖା, ଦେଖା ତ ।

ସେ ମୋ କବିତା ନେଇ ପଢ଼ିଲେ । ପଢ଼ିସାରି କହିଲେ, ବେଶ୍ ବଢ଼ିଆ ଲେଖିଛ ତ ?

– ମୋର ଏ କବିତାକୁ ଆପଣ ଗାଇପାରିବେ ପାଲାରେ ?

– ହଉ ଦେଖିବା...

ତାଙ୍କ ହାତକୁ କବିତାଟି ଦେବା ପୂର୍ବରୁ ମୁଁ କହିଲି – ଏହା ତଳେ ମୁଁ ମୋର ନାଆଁ ଲେଖି ଦେଉଛି । ନାଆଁ ଲେଖିସାରି ମୁଁ କବିତାଟି ତାଙ୍କ ହାତକୁ ବଢ଼ାଇଦେଲି । ସେ ତାକୁ ଗୋଟେ ଡାଏରୀ ଭିତରେ ରଖିଲେ । ସେ ବୋଧେ ଭାବୁଥିଲେ କବିତାଟି ଦେଇସାରି ମୁଁ ସଙ୍ଗେ ସଙ୍ଗେ ଚାଲିଆସିବି ବୋଲି । ମାତ୍ର ମୋର ନ ଯିବା ଲକ୍ଷ୍ୟ କରି ସେ ପଚାରିଲେ, ଆଉ କ'ଣ କହିବ ?

– ହଁ – ଆଉ ଗୋଟେ କଥା, ଆପଣ ଯେମିତି କୌଣସି କବିଙ୍କର କବିତା ଉଦ୍ଧୃତି ପୂର୍ବରୁ ତାଙ୍କୁ କବି ସମ୍ରାଟ, କବିସୂର୍ଯ୍ୟ କିମ୍ବା କବିବର କହୁଛନ୍ତି, ମୋ ନାଆଁ ପୂର୍ବରୁ କେବଳ କହିବେ ବାଲ୍ୟ କବି ବୋଲି ।

ସେ ମୋ କଥା ଶୁଣି ହସିଲେ ଟିକିଏ । ମୋର ଆଉ କିଛି କହିବାର ନ ଥିଲା । ମୁଁ ଫେରି ଆସିଲି । ସେଦିନ ରାତିରେ ପାଲା ଦେଖିବାବେଳେ ଥାଏ ମୋ ଭିତରେ ଅଦ୍ଭୁତ ପୁଲକ । ମୋ କବିତାକୁ ଆଜି ପାଲାରେ ଗାଇବେ ଗାୟକ । ଇଚ୍ଛା ହେଉଥିଲା ଏ କଥାର ପୂର୍ବ ସୂଚନା ମୋ ସାଙ୍ଗମାନଙ୍କୁ ଦେଇଦେବି । ପୁଣି ଭାବୁଥାଏ – ନା, ସେମାନେ ଗାୟକଙ୍କଠାରୁ ମୋ ନାଆଁ ଶୁଣି ଚମକନ୍ତୁ । ବଳେ ସେମାନେ ଜାଣିବେ ମୁଁ କବି ବୋଲି ।

ପାଲା ଚାଲିଥାଏ । ମୋର କିନ୍ତୁ ପାଲାରେ ନ ଥାଏ ମନ । ମୁଁ କେବଳ ଭାବୁଥାଏ କେତେବେଳେ କେଉଁ ପରିବେଶରେ ଗାୟକ ମୋ କବିତାକୁ ଖାପ୍ ଖୁଆଇ ଗାଇବେ । ବେଳ ଯେତେ ଅଧିକ ହେଉଥାଏ, ମୋର ଉତ୍କଣ୍ଠା ସେତେ ଅଧିକ ବଢୁଥାଏ । ଅପେକ୍ଷା କରି କରି ପାଲା ସରିଗଲା, ଅଥଚ ଗାୟକ ଗାଇଲେନି ମୋର କବିତା । ସେଦିନ ତାଙ୍କ ବିରୋଧରେ ମୋର ଯଥେଷ୍ଟ କ୍ଷୋଭ ହେଲା । ଭାବୁଥାଏ ଯଦି ନ ଗାଇବାର ଥିଲା ମୋତେ ତ ସିଧା ସିଧା ମନା କରିଦେଇ ଥାଆନ୍ତେ । କିନ୍ତୁ ମୋ କବିତା ରଖିଲେ ଗାଇବା ପାଇଁ, ଅଥଚ ଗାଇଲେ ନାହିଁ । ଇଏତ ରୀତିମତ ଧୋକା । ସେଇ ରାଗରେ ଆଉ ଗଲିନି ତାଙ୍କ ପାଖକୁ ମୋ କବିତା ଆଣିବାକୁ । ହେଲେ ମନେ ମନେ ପ୍ରତିଜ୍ଞା କଲି – ରୁହ ଦେଖିବ ମୁଁ କବି ହେବି ଏବଂ ତମେ ଆସିବ କବିତା ମାଗିବାକୁ ମୋ ପାଖକୁ ।

ଆଘାତଟି ଛୋଟ ଓ ଗୋପନୀୟ ଥିଲା, କିନ୍ତୁ ମୋତେ ଲାଗିଥିଲା ଖୁବ୍ ଗଭୀର ଭାବରେ । କିଛିଦିନ ପରେ ମୁଣ୍ଡରୁ ଖସାଇଦେଲି ରାଧାମୋହନ ଗଡନାୟକଙ୍କ ଭାବନା – "କବି ହେବା ପାଇଁ ବାସନା ମୋର ପ୍ରବଳ ଭାରିରେ ପ୍ରବଳ ଭାରି ।"

ଧ୍ୟାନ ଦେଲି ପଢ଼ାପଢ଼ିରେ । ମୋ ପଢ଼ାପଢ଼ି ଠିକ୍ ଲାଇନ୍‌କୁ ଆସୁଥିବାବେଳେ ଆମ କ୍ଲାସ୍‌ରେ ଆସି ନୂଆ ଝିଅଟିଏ ନାମ ଲେଖାଇଲା । ତାଙ୍କ ଗାଆଁରେ ରହି ପଢ଼ିବାକୁ ସୁବିଧା ନ ଥିବାରୁ ମାମୁ ଘରେ ରହି ପଢ଼ିବ ବୋଲି ଆସିଥିଲା ଆମ ଗାଆଁକୁ । ଚନ୍ଦ୍ରିକା – ତା' ନାଆଁଟି ଯେପରି ଥିଲା, ରୂପ ମଧ୍ୟ ସେହିପରି ଥିଲା । ତାକୁ ଦେଖିବା ପରେ ମୋର ପୁଣି ମନେ ପଡ଼ିଲା ରାଧାନାଥଙ୍କର ସେହି କବିତା – "ଏ ଯୋଷା ଚରଣ ଘଷା ପଥରକୁ ନ ହୋଇବେ କେହି ସରି ।"

ମୁଁ ଖୋଜିଲି ମୋର ସେହି ପୁରୁଣା କବିତାକୁ । ଅନେକ ଖୋଜା ଖୋଜି ପରେ ତାକୁ ପାଇଲି ମୋର ପୁରୁଣା ବହି ଭିତରୁ । ପୁଣିଥରେ ସଜାଡ଼ିଲି ସେ କବିତାକୁ । ଯେତେବେଳେ ଉପଲବ୍ଧି କଲି ଚନ୍ଦ୍ରିକାର ରୂପ ବର୍ଣ୍ଣନା ପାଇଁ ମୋର କବିତାଟି ଉପଯୁକ୍ତ ହୋଇଛି ସେତେବେଳେ ଲୋଭ ସମ୍ବରଣ କରି ନ ପାରି ଦେଖାଇଦେଲି ମୋର ଜଣେ ଘନିଷ୍ଠ ସାଙ୍ଗକୁ । ବାଲ୍ୟଚପଳତାରେ ଲେଖିଥିବା କବିତାଟି ଯେ ଏମିତି ଏକ ସାଂଘାତିକ ପରିସ୍ଥିତିକୁ ଡାକି ଆଣିପାରେ, ତାହା ମୋର କଳ୍ପନାର ବାହାରେ ଥିଲା । ମୋର ସେ ସାଙ୍ଗଟି ସେ କବିତାଟିକୁ କେବଳ ପଢ଼ିଲାନି, ପଢ଼ିବା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ଦେଖାଇଦେଲା ଏବଂ ମୁଁ କାହା ଉଦ୍ଦେଶ୍ୟରେ କବିତାଟି ଲେଖିଛି ବଖାଣିଲା । କଥା କାନରୁ କାନ ହୋଇ ଯାଇ ପହଞ୍ଚିଲା ହେଡ୍‌ମାଷ୍ଟ୍ରଙ୍କ ପାଖରେ ।

ଖେଳଛୁଟିରେ ମୋତେ ଡକାଇ ପଠାଇଲେ ହେଡ୍‌ମାଷ୍ଟ୍ର । ତାଙ୍କ ଡାକରା ପାଇ ମୋ ଦେହରୁ ଶୁଖିଗଲା ରକ୍ତ । ମାଡ ପାଇଁ ଭୟ ଯେତିକି ନ ଥିଲା, ନୂଆ ଆସିଥିବା ଝିଅଟି ଆଗରେ ବେଇଜ୍ଜତ ହେବାର ଭୟ ମୋତେ ଅଧିକ ଖାଉଥିଲା । ଭାବି ପାରୁ ନ ଥାଏ କେମିତି ସାମ୍ନା କରିବି ହେଡ୍‌ମାଷ୍ଟ୍ରଙ୍କୁ । ସେ ଦଣ୍ଡଦେବାରେ ଯେମିତି ନିର୍ଦ୍ଦୟ, ଗାଳଗୁଲଜ କରିବାରେ ମଧ୍ୟ ସେପରି ନିଷ୍କରୁଣ । କ'ଣ ଦଣ୍ଡ ଦେବେ ଓ କି କି ଗାଳି କରିବେ ଭାବି ଭାବି ହାଣ ମୁହଁକୁ ଯିବା ପରି ମୁଁ ଯାଇ ପହଞ୍ଚିଲି ତାଙ୍କ ପାଖରେ । ମୁଁ ପହଞ୍ଚିବା ବେଳକୁ ସେ କାର୍ଯ୍ୟବ୍ୟସ୍ତ ଥିଲେ । ମୋ ଆଡ଼େ ଥରେ ଚାହିଁ ଦେଇ ସେ ତାଙ୍କର ଅସମ୍ପୂର୍ଣ୍ଣ କାର୍ଯ୍ୟଟିକୁ କରିବାରେ ମନଦେଲେ । ମୁଁ ଛିଡ଼ା ହୋଇ ରହିଥାଏ ବଳି ପଡ଼ିବାକୁ ଅପେକ୍ଷା କରିଥିବା ଛେଳି ପରି । ସେ ସମୟରେ ଯେତେ ସବୁ ଦୁଷ୍ଟ ଚିନ୍ତା ଆସି ପହଞ୍ଚୁଥାଏ ମୁଣ୍ଡ ଭିତରେ । ଭାବୁଥାଏ ସିଧା ସିଧା ମନା କରିଦେବି – ମୁଁ ଲେଖିନି ସେ କବିତା । ଅନ୍ୟ କେହି ସେ କବିତା ଲେଖି ମୋ ମୁଣ୍ଡରେ ଅଠା ବୋଳିବାର ପ୍ରୟାସ କରୁଛି । ପୁଣି ଭାବୁଥାଏ କହିବି – ହଁ, ମୁଁ ଲେଖିଛି ସେ କବିତା । ହେଲେ ମୁଁ

ଯେଉଁ ଚନ୍ଦ୍ରିକା କଥା ଲେଖିଛି ସେ ଆମ କ୍ଲାସ୍‌ର ଚନ୍ଦ୍ରିକା ନୁହଁ । କବି କଳ୍ପନାର ଚନ୍ଦ୍ରିକା । ଏ ବିଶ୍ୱରେ ଏତେ ଲୋକ ଥାଉଁ ଥାଉଁ ନାମର ସାମଞ୍ଜସ୍ୟ ଚାଲି ଆସିବା ସ୍ୱାଭାବିକ । ଏସବୁ ସତ୍ତ୍ୱେ ସେ ଯଦି ଦଣ୍ଡବିଧାନ କରନ୍ତି, ତେବେ ମୁଁ ବିଦ୍ରୋହ କରି ଦଣ୍ଡ ସ୍ୱୀକାର କରିବିନି । ଦରକାର ପଡ଼ିଲେ ଏଠୁ ସାର୍ଟିଫିକେଟ୍ ନେଇ ଚାଲିଯିବି ଅନ୍ୟ ସ୍କୁଲକୁ ।

ମୁଁ ସାର୍‌ଙ୍କ ଟେବୁଲ୍ ସାମ୍ନାରେ ଛିଡ଼ା ହୋଇଥାଏ । ମୋତେ କ'ଣ ଦଣ୍ଡ ମିଳୁଛି ଜାଣିବାର ଉତ୍ସୁକତା ନେଇ ଆମ କ୍ଲାସ୍‌ର କିଛି ପିଲା ହେଡ୍‌ମାଷ୍ଟ୍ରଙ୍କ ଅଫିସ୍ ଝରକାଠାରୁ ନିରାପଦ ଦୂରତା ରକ୍ଷା କରି କଣେଇ କଣେଇ ଚାହିଁ ରହିଥାଆନ୍ତି ।

ପ୍ରଧାନଶିକ୍ଷକ ତାଙ୍କ କାମ ସାରିବା ପରେ ମୋ ଆଡ଼କୁ ଚାହିଁଲେ । ମୋତେ ଚାହିଁ ସାରି ତାଙ୍କ ଚେୟାରର ପଛକୁ ଆଉଜି ହାତ ଦୁଇଟି ଉପରକୁ କରି ଜୋର୍‌ରେ ଭିଡ଼ିହେଲେ । ମୁଁ ଭାବୁଥାଏ ମାଡ଼ ଦେବା ପାଇଁ ଏହା ବୋଧେ ତାଙ୍କର ପ୍ରାରମ୍ଭିକ ପ୍ରସ୍ତୁତି । ମାତ୍ର ପରମୁହୂର୍ତ୍ତରେ ସେ ମୋତେ ଆଶ୍ଚର୍ଯ୍ୟ କରିଦେଇ କହିଲେ – "ଆରେ ତୋ' ଭିତରେ ଏତେ ଚମତ୍କାର କବି ପ୍ରତିଭାଟିଏ ଅଛି ମୁଁ ଜାଣିନଥିଲି ।" ସେ ପ୍ରତିଭାକୁ ସତ୍‌ମାର୍ଗରେ ବିନିଯୋଗ କର । ତୁ ବୋଧେ ଜାଣିନୁ କବିତାରେ ଅନେକ ଶକ୍ତି ରହିଛି । କବିତା କେବଳ ଶବ୍ଦର ସମାହାର ନୁହଁ – ସେଥିରେ ପ୍ରତ୍ୟେକ ଶବ୍ଦ ମନ୍ତ୍ରସିକ୍ତ । କବିତା ଲେଖି କବିମାନେ ଜାତୀୟ ଚେତନା ସୃଷ୍ଟି କରିଥିଲେ । ବିଦ୍ରୋହର ବହ୍ନି ଜାଳିଥିଲେ ସାରା ଦେଶର ଲୋକଙ୍କ ମନରେ । ତେଣୁ କବିତାକୁ କେତେବେଳେ ଶକ୍ତିହୀନ ମନେ କରିବୁ ନାହିଁ । ପ୍ରତ୍ୟେକ କବିର ଧ୍ୟେୟ ହେବା ଉଚିତ ଯେ କବିତା ବ୍ୟକ୍ତିର ଅନିଷ୍ଟ ନ କରି ହିତସାଧନ କରୁ । ତୁ ଏ ଯେଉଁ କବିତାଟି ଲେଖିଛୁ, ସେଥିରେ ଥିବା ତୋ' କବିପ୍ରତିଭା ଦେଖି ମୁଁ ତୋତେ ବଧାଇ ଜଣାଉଛି । ମାତ୍ର ତୋ' କବିତାଟି ଜଣେ ବ୍ୟକ୍ତି ଉଦ୍ଦେଶ୍ୟରେ ଲେଖାଯାଇଛି, ଯାହା ତା'ର ମାନସିକ ଓ ସାମାଜିକ ସ୍ଥିତି ପ୍ରତି ବିପଦ ସୃଷ୍ଟି କରୁଛି । ତେଣୁ ସେଭଳି କାର୍ଯ୍ୟରୁ ତୋର କ୍ଷାନ୍ତ ରହିବା କଥା । ମନେରଖ ଜଣେ ଡାକ୍ତରଙ୍କ ହାତରେ ଥିବା ଛୁରି ଜଣେ ରୋଗୀର ଜୀବନ ରକ୍ଷା କରେ, ମାତ୍ର ସେହି ଛୁରି ଯଦି ଘାତକ ହାତରେ ପଡ଼େ ତେବେ ସେ ଲୋକଙ୍କର ଜୀବନ ନିଏ । ତେଣୁ ତୋ କବିତା ଜଣେ ଡାକ୍ତର ହାତର ଛୁରି ହେବ କି ଘାତକ ହାତର ଛୁରି ହେବ, ତୁ ନିର୍ଣ୍ଣୟ କର ।

ମୁଁ କେବଳ ନିରବରେ ଶୁଣୁଥିଲି ହେଡ୍‌ମାଷ୍ଟ୍ରଙ୍କ ଉପଦେଶ । ସେ ମୋର ନିରବତାକୁ ଲକ୍ଷ୍ୟ କରି କହିଲେ - ତୁ ଯେତେବେଳେ ଏତେ ଚମତ୍କାର କବିତା ଲେଖି ପାରୁଛୁ, ମୋ କଥାର ଅର୍ଥ ନିଶ୍ଚୟ ବୁଝି ପାରୁଥିବୁ । ହଉ ଯାଆ - ପଢ଼ାପଢ଼ିରେ ମନ ଦେ ।

ସେଠାରୁ ଫେରିବାବେଳେ ମୋତେ ଲାଗୁଥିଲା ଫାଶୀ ପାଇବାକୁ ଅପେକ୍ଷା କରିଥିବା କଏଦୀଟିଏ ନିର୍ଦ୍ଦୋଷରେ ଖଲାସ୍ ହୋଇଗଲା ପରି । ମୁଁ ବୁଝିପାରୁନଥିଲି ଏତେ ବଦ୍‌ରାଗୀ ପ୍ରଧାନଶିକ୍ଷକ ମୋତେ ଦଣ୍ଡ ଦେବାରୁ ନିବୃତ୍ତ ହେଲେ କିପରି ? କ'ଣ କବିତାଟି ତାଙ୍କୁ ସତରେ ଭଲ ଲାଗିଛି ନା ଆଉ କିଛି ? ମୋର କବିପ୍ରତିଭାକୁ ଈର୍ଷା କରୁଥିବା ମୋର କିଛି ସହପାଠୀ ଯେଉଁମାନେ ଆନ୍ତରିକ ଭାବେ ଚାହୁଁଥିଲେ ମୁଁ ଦଣ୍ଡିତ ହୋଇ ଚନ୍ଦ୍ରିକା ସମ୍ମୁଖରେ ଲଜ୍ଜିତ ହୁଏ ବୋଲି, ସେମାନେ ନିରାଶ ହୋଇଥିଲେ - ମୁଁ ବିନା ଦଣ୍ଡରେ ଫେରି ଆସିବା ଦେଖି ।

ଏହାପରେ ଧୀରେ ଧୀରେ ବଦଳି ଯାଇଥିଲା ମୋର କବିପଣ ଏବଂ କବି ଭାବରେ ନିମଗ୍ନ ରହିବା ସ୍ୱଭାବ । ଚନ୍ଦ୍ରିକାକୁ ମନେ ମନେ ଭଲ ପାଇବା ଭଳି ଏକ କଠୋର କର୍ମରୁ ନିବୃତ୍ତ ହୋଇ ମୁଁ ପଢ଼ାପଢ଼ିରେ ମନଦେଲି ଏବଂ ପଣ କଲି ଜୀବନରେ କେବେ ଯଦି କବିତା ଲେଖେ ତେବେ କେବଳ ମାନବ ହିତପାଇଁ ଲେଖିବି । ମାତ୍ର ପରବର୍ତ୍ତୀ ଜୀବନରେ - ମୁଁ କେବଳ ଭୁଲିଯାଇ ନ ଥିଲି କବିତା ଲେଖା, ହଜାଇ ଦେଇଥିଲି ମଧ୍ୟ କବିତା ଲେଖିବାର କଳା ।

ହାଇସ୍କୁଲ ପଢ଼ା ସାରି ମୁଁ ଗାଆଁ ଛାଡ଼ି ଆସିଲି ସହର । ଆଇ.ଏସ୍.ସି ପଢ଼ା ସରିବା ପରେ ଯାନ୍ତ୍ରିକ ବିଦ୍ୟା ଅଧ୍ୟୟନ । ପଢ଼ା ସରୁ ସରୁ ଏକ ବହୁରାଷ୍ଟ୍ରୀୟ କମ୍ପାନୀରେ ଯନ୍ତ୍ରୀ ଭାବରେ ଯୋଗଦାନ ପର୍ଯ୍ୟନ୍ତ ମୋ ଭିତରେ ଏକ ସୁକୁମାର କବିପଣ ଥିବାର ଅନୁଭବ କେବେ ଆସି ନଥିଲା । ପଦ, ପଦବୀ, ପଦୋନ୍ନତି, ଗବେଷଣା ଏବଂ ଉଚ୍ଚତର ଗବେଷଣା ମଧ୍ୟରେ ପ୍ରେମ କିମ୍ବା ପ୍ରେମକୁ ନେଇ ଚିତ୍ତଚଞ୍ଚଳ ହେବାର ବିରଳ ମୁହୂର୍ତ୍ତଟିଏ କେବେ ଜୁଟି ନଥିଲା ଭାଗ୍ୟରେ । ଧୀରେ ଧୀରେ ମୁଁ ଯନ୍ତ୍ରୀରୁ ଯନ୍ତ୍ର ପାଲଟି ଯାଉଥିଲି, ନିଜ ପାଖରେ ମାନବିକ ଆବେଗ କିମ୍ବା ହୃଦୟ ଭଳି କିଛି ଜିନିଷ ଥିବାର ସୁରାକ୍ ମୁଁ ପାଉ ନ ଥିଲି । ମୁଁ କେବଳ ଅନୁଭବ କରୁଥିଲି - ମୁଁ ଯନ୍ତ୍ରଟିଏ, ଯେଉଁ ଯନ୍ତ୍ରର ଗତି ଅଛି, ପ୍ରଗତି ଅଛି ଅଥଚ ସ୍ପନ୍ଦନ ନାହିଁ ।

ଅର୍ଥ, କ୍ଷମତା, ପ୍ରତିପତ୍ତି ଓ ପ୍ରାଚୁର୍ଯ୍ୟରେ ମୁଁ ଆକ୍ରାମାକ୍ତ ହୋଇ ପଡୁଥିଲି । ସମସ୍ତ ପାର୍ଥିବ ସୁଖର ସମୁଦ୍ର ଭିତରେ ଲାଗୁଥିଲା ମୁଁ ଯେମିତି ନିଃସଙ୍ଗ ନାବିକଟିଏ

ଗୋଟେ ହୁଲି ଡଙ୍ଗାରେ ବସି ଧାଉଁଛି କେବଳ ରତ୍ନଦ୍ୱୀପର ସନ୍ଧାନରେ, ପାଉଛି ବି ରତ୍ନଦ୍ୱୀପ, ଅଥଚ ବୋହିପାରୁନି ସେ ରତ୍ନର ଭାର । କ୍ରମେ କ୍ରମେ ଜୀବନ ଲାଗିଲା ଦୁର୍ବିସହ । ମନ ଚାହିଁଲା ମୁକ୍ତି । ଖୋଜିଲା ହଜିଲା ଶୈଶବ ।

ଧୀରେ ଧୀରେ ଶୈଶବର ହ୍ୟାଙ୍ଗଓଭର୍ ମୋ ଭିତରେ ଏତେ ମାତ୍ରାରେ ବଢ଼ିଲା ଯେ ମୁଁ ଆଉ କୌଣସି କାର୍ଯ୍ୟରେ ମନଦେଇ ପାରିଲି ନାହିଁ । ମୋର ଏଭଳି ବିଚଳିତତାକୁ ଲକ୍ଷ୍ୟ କରି ମୋର ବିଦେଶିନୀ ପତ୍ନୀ ଥରେ ମୋତେ ପଚାରିଲେ - କ'ଣ ହୋଇଛି ତମର, ତମେ ଭିତରେ ଭିତରେ ଖୁବ୍ ଅସ୍ଥିର ଥିଲା ପରି ମନେ ହେଉଛ ? ମୁଁ ତାଙ୍କୁ ମୋ ମନର କଥା କହିଲି । ସେ ତାଙ୍କର ଭେଷଜ ବିଦ୍ୟାଲବ୍ଧ ଜ୍ଞାନରେ କହିଲେ - ଏସବୁ ହେଉଛି ନଷ୍ଟାଲଜିକ୍ ଡିପ୍ରେସନ୍ । ଏହା ବହୁ ଲୋକଙ୍କ ମଧ୍ୟରେ ଥରେ ଥରେ ଆସେ ଏବଂ ବିବ୍ରତ କରେ । ମାତ୍ର ସେ ସମୟକୁ କର୍ମମୁଖରତା ଭିତରେ କଟାଇଦେଲେ ସେ ପୁଣି ଆପେ ଆପେ ଦୂରେଇ ଯାଏ । ଏବେ ତୁମର ଦାୟିତ୍ୱ ହେଉଛି, ଅଫିସ୍ କାମରେ ନିଜକୁ ଯେତେ ବେଶିପାରୁଛ ନିୟୋଜିତ କର, ଯେମିତି କୌଣସି ଅବସର ସମୟ ନ ଆସେ ଏସବୁ ଚିନ୍ତାକୁ ସ୍ଥାନ ଦେବା ପାଇଁ ।

- ନଷ୍ଟାଲଜିକ୍ ହେବା କ'ଣ ଏକ ରୋଗ ?

- ନା - ଏଇଟା ଠିକ୍ ଗୋଟେ ରୋଗ ନୁହଁ । ମାତ୍ର ଅତୀତ କିମ୍ବା ଶୈଶବର ସ୍ମୃତିରେ ସବୁବେଳେ ବୁଡ଼ିରହି ବର୍ତ୍ତମାନକୁ ଅସାର ମନେ କରିବା ହେଉଛି ଏକ ପ୍ରକାର ଡିପ୍ରେସନ୍‌ର ଲକ୍ଷଣ । ଯାହାର ପ୍ରାରମ୍ଭିକ ଅବସ୍ଥା ତୁମ ପାଖରେ ଦେଖା ଦେଉଛି ।

- ତମ ଭେଷଜ ବିଜ୍ଞାନ 'ମନ'କୁ କ'ଣ ବୁଝେ ? ମୁଁ ଭାବୁଛି ବୁଝୁ ନ ଥିବ ଆଦୌ କିମ୍ବା ଯଦି ବୁଝୁଥାଏ ତାକୁ ଶରୀରର ଅନ୍ୟ ଏକ ଅଂଶ ରୂପେ ଧରି ନେଇଥିବ ।

- ଶରୀର ଓ ଶରୀରର ବିଭିନ୍ନ ରୋଗକୁ ନେଇ ଆମର ପାଠ । ସେଠି ମନକୁ ଆମେ କେବେ ତର୍ଜମା କରି ନାହୁଁ ।

- ହଁ - ସେଥିପାଇଁ ତମେ ମୋତେ କହିପାରିଲ ନଷ୍ଟାଲଜିଆରୁ ରକ୍ଷା ପାଇବାକୁ ୱାର୍କହୋଲିକ୍ ହେବା ପାଇଁ । ଏହା ଠିକ୍ ମୂଷାଙ୍କ ଉପଦ୍ରବ ବଢ଼ିଲେ ଘରପୋଡ଼ି ଦେବାର ଉପେଦେଶ ପରି ।

- ହଉ ବାବା - ତମେ ତମର ନଷ୍ଟାଲଜିଆକୁ ନେଇ ରୁହ । ମୋତେ ମୋର କାମ କରିବାକୁ ଦିଅ ।

– ହଁ – ତାହା ତ ଠିକ୍ କଥା । ହେଲେ ମୁଁ ଗୋଟିଏ କଥା ଚିନ୍ତା କରିଛି, ତାକୁ ତୁମକୁ କହିଦେବା ଠିକ୍ ହେବ ।

– କ'ଣ ଚିନ୍ତା କରିଛ ?

– ମୁଁ ଭାବୁଛି ଥରେ ଭାରତ ଯାଇ ମୁଁ ମୋର ଗାଆଁକୁ ଦେଖି ଆସିବି ।

– ଗାଆଁକୁ ଯିବ ! ଏବେ ତିରିଶ ବର୍ଷ ପରେ ? ସେଠାରେ ତୁମର ନିଜର କିଏ ଅଛନ୍ତି ଯେ କାହା ପାଖକୁ ଯିବ ?

– ଗାଆଁ ଗୋଟେ ଏମିତି ଜାଗା, ସେଠି ସମ୍ପର୍କ କହିଲେ କେବଳ ନିଜ ପରିବାର, ଯଥା – ବାପା, ମାଆ, ଭାଇ,ଭଉଣୀ କିମ୍ବା ପୁଅ – ଝିଅଙ୍କୁ ବୁଝାଏନା । ଗାଆଁ ନିଜେ ହିଁ ଗୋଟେ ସମ୍ପୂର୍ଣ୍ଣ ପରିବାର । ସେଠାରେ ଥାଏ ସମସ୍ତ ପ୍ରକାର ସମ୍ପର୍କ ଏବଂ ପରସ୍ପରକୁ ନିଃସ୍ୱାର୍ଥପର ଭାବେ ଭଲ ପାଇବାର ପୁଲକ । ଗାଆଁ ଏଠାରେ ଦେଖୁଥିବା ନ୍ୟୁକ୍ଲିୟସ୍ ପରିବାର ପରି ନୁହଁ, ବରଂ ଏକ ବିଶ୍ୱ ପରିବାରର ପ୍ରତିଭୂ । ତମର ଗାଆଁ ଜୀବନର ଅନୁଭୂତି ନାହିଁ ତ, ତେଣୁ ତମେ ଏପରି କଥା କହିଲ ।

– କ'ଣ କହିଲ ଗାଆଁ ଏକ ପରିବାର – ଆଉ ସେଠି ସମସ୍ତେ ସମସ୍ତଙ୍କୁ ଭଲ ପାଆନ୍ତି ?

– ହଁ – କେବଳ ଭଲପାଆନ୍ତି ନାହିଁ; ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ସେଠି ସମସ୍ତେ ଗୋଟେ ସମ୍ପର୍କର ରଜ୍ଜୁରେ ବନ୍ଧା ।

–ମୋର ପରିବାର, ପାରିବାରିକ ସମ୍ପର୍କ କିମ୍ବା ଗାଆଁର ଅନୁଭବ ନାହିଁ, ତେଣୁ ମୁଁ ତୁମର ଭାବପ୍ରବଣତାକୁ ଠିକ୍ ଭାବେ ବୁଝିପାରିନାହିଁ ବୋଧେ । ତେବେ ସେମାନେ କ'ଣ ମୋତେ ବି ତମ ପରି ଭଲ ପାଇପାରିବେ ?

– ସେମାନେ କେବଳ ତମକୁ ଭଲ ପାଇବେନି – ବୋହୂର ସମ୍ମାନ ମଧ୍ୟ ଦେବେ ।

– ତମେ ମୋତେ ତମ ସାଙ୍ଗରେ ନେଇପାରିବ ତୁମର ଗାଆଁକୁ ?

– ତମେ ଯଦି ଯିବାକୁ ରାଜି ହେବ, ତା' ହେଲେ ତ ଇଏ ମୋର ପରମ ସୌଭାଗ୍ୟ ହେବ । ଏବେ ତ ଆମ ପିଲାମାନେ ବଡ଼ ହୋଇ ନିଜ ନିଜ ଜୀବିକା ନେଇ ବ୍ୟସ୍ତ । ବିଳମ୍ବରେ ହେଲେ ମଧ୍ୟ ଚାଲ ଥରେ ବୁଲି ଆସିବ ତୁମର ଶାଶୂଘର ଏବଂ ଶାଶୂଘର ଗାଆଁ । ସେଠିକୁ ଗଲେ ତମେ ଅନୁଭବ କରିବ ସମ୍ପର୍କର ବିବିଧତା ଓ ଭଲ ପାଇବାର ପୁଲକ । ସେଠି ଦେଖିବ ଗୀତା ପରି ପବିତ୍ର ସକାଳ ଏବଂ

ବାଇବେଲ୍ ପରି ପବିତ୍ର ସାୟଂକାଳ । ବିଗ୍‌ବେନ୍ ବେଲ୍ ନୁହଁ, କୁମ୍ଭାଟୁଆ ଡାକରେ କିପରି ସକାଳ ଆସେ ଏବଂ ମନ୍ଦିରର ଆଳତିରେ ସନ୍ଧ୍ୟା, ନଈକୂଳର କାଶତଣ୍ଡୀ ଫୁଲରେ କେମିତି ଖେଳି ବୁଲୁଥାଏ ଶାରଦୀୟ ମହୋତ୍ସବ ଏବଂ ତାରାଭର୍ତ୍ତି ଆକାଶ କିପରି ଚାନ୍ଦୁଆ ହୋଇ ଢ଼ାଙ୍କିଥାଏ ଆମ ଗାଆଁକୁ । ଏଠିକା ସୁଇମିଂ ପୁଲ ଓ ଆମଗାଆଁ ପୋଖରୀର ଫରକ୍ କ'ଣ ତମେ ଦେଖିବ । ଅନୁଭବ କରିବ ଗାଆଁର ପଖାଳ ବଡ଼ିଚୂରା, ଶାଗଭଜାକୁ ସରିହେବ କେଉଁ କଣ୍ଟିନେଣ୍ଟାଲ ଫୁଡ୍ ।

– ହଉ – ତୁମ ସହ ମୁଁ ମଧ୍ୟ ଯିବି ତମ ଗାଆଁ ।

ଗାଆଁକୁ ଯିବାକୁ ଆମେ ପ୍ରସ୍ତୁତ ହେଲୁ । ମୋର ଦାଦାପୁଅ ଭାଇ, ଯିଏକି ମୋ ସମବୟସ୍କ ଥିଲେ, ତାଙ୍କୁ ଫୋନ୍ କରି ଜଣାଇଲି ମୋର ଗାଆଁକୁ ଯିବା କଥା ବାସ୍ – ଏତିକି ଖବର ହିଁ ଯଥେଷ୍ଟ ଥିଲା । ଆମେ ଭୁବନେଶ୍ୱର ଏୟାରପୋର୍ଟରେ ପହଞ୍ଚିବା ବେଳକୁ ଦୁଇଟି ପ୍ଲା, କାର୍ଡଧରି ଆମକୁ ସ୍ୱାଗତ କରିବାକୁ ଠିଆ ହୋଇଥିଲେ ଦୁଇଜଣ ଯୁବକ । ଆମେ ସେଠାରେ ପହଞ୍ଚିବା କ୍ଷଣି ରକ୍ତ ରକ୍ତକୁ ଚିହ୍ନିବା ପରି ସେ ଦୁଇଜଣ ଟାଣି ହୋଇ ଆସିଲେ ଆମ ପାଖକୁ । ଆମ ପାଦଛୁଇଁ ପ୍ରଣାମ କରି ପାଛୋଟି ନେଲେ ଗାଡ଼ି ପାଖକୁ । ସେମାନେ ଆମ ଦୁଇଜଣଙ୍କୁ ଦେଖି ଏମିତି କୃତକୃତ୍ୟ ହେଉଥିଲେ ଯେ ତାଙ୍କର ଖୁସିକୁ ଜାହିର କରିବାକୁ ପାଉ ନଥିଲେ ଭାଷା । ମୁଁ ଗାଡ଼ିରେ ପହଞ୍ଚିବା ପୂର୍ବରୁ ସେ ଉଭୟଙ୍କ ନାମ ଓ ପରିଚୟ ପଚାରିଲି । ପରିଚୟ ଜାଣିବା ପରେ ନିଜକୁ ବହୁତ ସଙ୍କୋଚ ଲାଗିଲା ଯେ ବିଦେଶରେ ରହିବା ପରେ କେତେ ସଙ୍କୁଚିତ ହୋଇଯାଇଛି ଆମର ସମ୍ପର୍କର ପରିସର । ଏପରିକି ନିଜ ବଂଶର ପୁତୁରା ମାନଙ୍କୁ ଚିହ୍ନି ପାରୁନାହିଁ ।

ଗାଡ଼ି ଚାଲିଲା ସିଧା ଆମ ଗାଆଁ ଅଭିମୁଖେ । ମୋର ଧାରଣା ଥିଲା ଯେ ଆମ ଗାଆଁ ନଈ ପାଖରେ ଅଟକିବ ଗାଡ଼ି । ସେଠାରୁ ଡଙ୍ଗା ପାର ହୋଇ ଆମେ ଚାଲି ଚାଲି ଘରକୁ ଯିବୁ । ମାତ୍ର ମୁଁ ଆଶ୍ଚର୍ଯ୍ୟ ହୋଇଗଲି ଯେତେବେଳେ ଦେଖିଲି ନଈ ଉପରେ ସୁଦୃଶ ସେତୁ ଏବଂ ଗାଡ଼ି ଯାଇ ସିଧା ପହଞ୍ଚିଲା ଆମ ଘର ଦାଣ୍ଡରେ । ଗାଆଁ ମୁଣ୍ଡରେ ପହଞ୍ଚିବା ବେଳକୁ ଆମ ପାଇଁ ସ୍ୱାଗତ ତୋରଣ ସହ ଗାଆଁ ଲୋକଙ୍କର ଭିଡ଼ । ସେଠାରୁ ଆମକୁ ଓହ୍ଲାଇଦେଇ ବାଜା ପଟୁଆରରେ ସ୍ୱାଗତ କରି ନେଇଗଲେ ଆମ ଘର ଦୁଆରଯାଏଁ । ଆମ ଘରକୁ ମଧ୍ୟ ସଜା ଯାଇଥିଲା ସଦ୍ୟ ବିବାହ ହେବାକୁ ଥିବା ଘର ପରି । ଘର ଆଗରେ ଫୁଲର ତୋରଣ ସହ ଶୁଭ କଳସ । ଆମେ ଘରର ପିଣ୍ଡାକୁ ଉଠିବାକ୍ଷଣି ମୋ ଦାଦାପୁଅ ଭାଇ କହିଲା – ୱେଟ୍, ୱେଟ୍ ପ୍ଲିଜ୍ । ଆରେ ବଜାଅ

ଶଙ୍ଖ, ଦିଅ ହୁଳହୁଳି । ଶଙ୍ଖ ହୁଳହୁଳି ସହ ଦୁଇଜଣ ଗୋଟେ ଚାଦରକୁ ଚାନ୍ଦୁଆ କରି ଆମ ମୁଣ୍ଡ ଉପରେ ଧରିଲେ ।

ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି – ଏସବୁ କ'ଣ ହେଉଛି ? କିଛି ନୁହଁ ତ, ଆମ ବଂଶର ପରମ୍ପରାକୁ କ'ଣ ଭୁଲିଗଲଣି ଭାଇ ? ଭାଉଜ, ବୋହୂ ହିସାବରେ ପ୍ରଥମଥର ପାଇଁ ପାଦ ରଖୁଛନ୍ତି ଏ ଘରେ । ତେଣୁ ତାଙ୍କୁ ତ ବୋହୂର ମର୍ଯ୍ୟାଦା ଦେବା ଦରକାର ।

ମୋ ସ୍ତ୍ରୀ ଏଲିନା ଏସବୁ କିଛି ବୁଝିପାରୁ ନ ଥିଲେ । ସେ କେବଳ ବିସ୍ମୟାଭିଭୂତା ହୋଇ ଦେଖି ଚାଲୁଥିଲେ ଏସବୁ ଉତ୍ସବ ।

ଆମକୁ ଦେଖିବାର ଭିଡ଼ କମୁ ନ ଥିଲା ଘରୁ । ସେହି ଭିଡ଼ ଭିତରେ ଆମକୁ ଫ୍ରେସ୍ ହେବା ପାଇଁ ନିଆଗଲା ବାଥ୍‌ରୁମ୍‌କୁ । ତା' ପରେ ପରଷା ହୋଇଗଲା ବିଭିନ୍ନ ପ୍ରକାରର ଖାଦ୍ୟ । ଯେଉଁ ଖାଦ୍ୟର ରୂପ, ରଙ୍ଗ, ସ୍ୱାଦ ଓ ଖାଇବା ପ୍ରଣାଳୀ ସମ୍ପର୍କରେ ମୋ ସ୍ତ୍ରୀଙ୍କର ସମ୍ୟକ ଧାରଣା ନ ଥିଲା । ମାତ୍ର ସେ ତାଙ୍କର ଉପସ୍ଥିତି ବୁଦ୍ଧି ଖଟାଇ ମୁଁ ଖାଉଥିବା ପ୍ରଣାଳୀରେ ଖାଇବା ଆରମ୍ଭ କଲେ । ଖାଇସାରିବା ପରେ କେବଳ କହିଲେ – ହାଓ ଫାଇନ୍ !

ମୋ ଆସିବା ଖବର ପାଇ ମୋର ପୁରୁଣା ସାଙ୍ଗସାଥୀମାନେ ଜଣକ ପରେ ଜଣେ ଆସି ପହଞ୍ଚି ଯାଉଥିଲେ । ଚାଲିଥିଲା ମିଳନର ପର୍ବ ଓ ଗପସପର ଆସର । ସେହି ଗପସପ ଭିତରେ କେତେବେଳେ ଦିନ ଯାଇ ସନ୍ଧ୍ୟା ଆସି ପହଞ୍ଚିଲା ଆମକୁ ଜଣା ନ ଥିଲା । ମନ୍ଦିରର ସନ୍ଧ୍ୟା ଆଳତି ଘଣ୍ଟା ଧ୍ୱନିରୁ ଜାଣିଲି ସନ୍ଧ୍ୟା ଆସିଲା । ମୁଁ ହାତ ଯୋଡ଼ି ଠାକୁରଙ୍କୁ ପ୍ରଣାମ କଲି ।

ସନ୍ଧ୍ୟା ହେଉ ହେଉ କୁଆଁର ପୁନେଇଁ ଗୀତର ଲହରୀରେ କମ୍ପିଲା ଗାଆଁ ଦାଣ୍ଡ । ଏଲିନା ମୋତେ ପଚାରିଲେ – କ'ଣ କରୁଛନ୍ତି ଏ ଝିଅମାନେ ?

ମୁଁ ତାଙ୍କୁ ବୁଝାଇଲି – ଭାଇମାନଙ୍କର ମଙ୍ଗଳ କାମନା କରି ଏ ଝିଅମାନେ ଚନ୍ଦ୍ରଙ୍କୁ ପୂଜା କରୁଛନ୍ତି ।

ସେ ଆଶ୍ଚର୍ଯ୍ୟ ହୋଇ ମୋ ମୁହଁକୁ ଚାହିଁଲେ ।

ମୁଁ ତାଙ୍କର ମନୋଭାବ ଠିକ୍ ବୁଝିପାରି କହିଲି – ଚନ୍ଦ୍ର ସମଗ୍ର ବିଶ୍ୱର ବିଶ୍ୱାସରେ ଏକ ଉପଗ୍ରହ ହୋଇପାରେ, ମାତ୍ର ଆମ ଭାରତୀୟଙ୍କ ବିଶ୍ୱାସରେ ସେ ଏକ ଦେବତା । ଆମ ମନ ଓ ଜୀବନ ଉପରେ ତାଙ୍କର ଗଭୀର ପ୍ରଭାବ ରହିଛି ।

ମୋର ଭୟ ଥିଲା ଏଲିନାଙ୍କୁ ହୁଏତ ରାତିଟା ଭାରି କଷ୍ଟ ଲାଗିପାରେ । କାରଣ ଗାଆଁରେ ଏ.ସି. ନଥିଲା । ମାତ୍ର ଝରକା ଫାଙ୍କରେ ପଡ଼ିଥିବା ଜହ୍ନ ଆଲୁଅ, ଆଶ୍ୱିନର ଶୀତ ଓ ଝରକା କଡ଼ର ମଲ୍ଲିଫୁଲର ବାସ୍ନା ତାଙ୍କୁ ତନ୍ଦ୍ରାଚ୍ଛନ୍ନ କରିଦେଲା । ବିଛଣା ଧରୁ ଧରୁ ସେ କେତେବେଳେ ଶୋଇପଡ଼ିଲେ ନିଜେ ବି ଜାଣିପାରିଲେ ନାହିଁ । ତାଙ୍କ ନିଦ ଭାଙ୍ଗିବା ବେଳକୁ ଦେଖିଲେ ରାତି ତଥାପି ବାକି ଅଛି । ମାତ୍ର କେହି ଜଣେ ସ୍ତ୍ରୀଲୋକ ପାଣି ଛିଞ୍ଚି ଛିଞ୍ଚି ଝାଡୁ କରୁଛି । ତା' ପର ମୁହୂର୍ତ୍ତରେ ମନ୍ଦିର ବେଢ଼ାରୁ ଭାସି ଆସିଲା – "ଓଁ ଭୂର୍ଭୁବଃ ସ୍ୱଃ ତତ୍ସବିତୁ ର୍ବରେଣ୍ୟଂ ଭର୍ଗୋ ଦେବସ୍ୟ... ।" ସେ ମୋତେ ଉଠାଇ କହିଲେ – ଉଠ, ଉଠ, ଦେଖ, ଇଏ ଏକ ସମ୍ପୂର୍ଣ୍ଣ ନୂଆ ଅନୁଭବ ।

ଆମେ ଉଠିପଡ଼ି ଘରର ଛାତକୁ ଗଲୁ । ପୂର୍ବ ଦିଗରୁ ଉଠୁଥିଲେ ସୂର୍ଯ୍ୟ । ମୁଁ ହାତ ଯୋଡ଼ି ସୂର୍ଯ୍ୟ ପ୍ରଣାମ କରି ତାଙ୍କୁ କହିଲି ତୁମେ ବି ସୂର୍ଯ୍ୟ ପ୍ରଣାମ କର । ସୂର୍ଯ୍ୟ ହେଉଛନ୍ତି ସକଳ ଶକ୍ତିର ଆଧାର । ତେଣୁ ଆମେ ଭାରତୀୟମାନେ ତାଙ୍କୁ ବି ପୂଜା କରୁ ।

ଦିନ ତମାମ୍ ସେ ବୁଲି ବୁଲି ଦେଖିଲେ ଆମ ଗାଆଁର ଯାବତୀୟ ଜିନିଷ । ମଧ୍ୟାହ୍ନ ଭୋଜନ ପରେ ମୁଁ ତାଙ୍କୁ କହିଲି – ଏହାପରେ ମୁଁ ତୁମକୁ ଗୋଟିଏ ସ୍ଥାନ ଦେଖାଇବି । ସେ ଉତ୍ସୁକତା ସହ ପଚାରିଲେ – କ'ଣ ?

ଦେଖିଲେ ଜାଣିବ । ଖାଇସାରିବା ପରେ ଆମେ ଗଲୁ ଆମ ଖଞ୍ଜାର ଷଠୀ ଘରକୁ । ମୋ ଜନ୍ମ ସମୟରେ ପୂଜା କରାଯାଇ କାନ୍ଥରେ ଯେଉଁ ଚିତ୍ରଅଙ୍କା ଯାଇଥିଲା, ତାହା ତାଙ୍କୁ ଦେଖାଇଲି । ସେ ଚିତ୍ରଟିକୁ ସେ ଭଲ ଭାବରେ ନିରୀକ୍ଷଣ କଲାପରେ ମୋତେ ପଚାରିଲେ – ଏହା କ'ଣ ଟ୍ରାଇବାଲ୍ ଆର୍ଟ ?

– ନାଁ ଏଇଟା ଟ୍ରାଇବାଲ୍ ଆର୍ଟ ନୁହଁ – ଷଠୀ ଆର୍ଟ ।

– ଷଠୀ କ'ଣ ?

– ପିଲାଟିଏ ଜନ୍ମ ହେବା ପରେ ସେ ଯେଉଁ ଘରେ ଜନ୍ମ ହୋଇଥାଏ, ତା' ପାଇଁ ପୂଜା କରି କାନ୍ଥରେ ଗୋଟିଏ ଚିତ୍ର ଅଙ୍କାଯାଏ ସିନ୍ଦୂରରେ ତା'ର ଦୀର୍ଘ ଜୀବନ କାମନା କରି ।

– କ'ଣ ଘରେ ପିଲାମାନେ ଜନ୍ମ ହୁଅନ୍ତି କି ?

– ହଁ, ସେତେବେଳେ ଏମିତି ମେଡିକାଲର ସୁବିଧା ନଥିଲା, ପ୍ରାୟ ସମସ୍ତେ ଘରେ ଜନ୍ମ ହେଉଥିଲେ ।

– ଓଃ – ମାଇଁ ଗଡ୍ ।

- ବୁଝିଲ ଏଲିନା - ଆମେ କେମିତି ଜନ୍ମ ହେଲୁ, ତାହା ଗୁରୁତ୍ୱପୂର୍ଣ୍ଣ ନୁହଁ । ଗୁରୁତ୍ୱପୂର୍ଣ୍ଣ ହେଉଛି ଏ ଷଠୀ ଘର । ଯୁଆଡ଼େ ଥିଲେ ବି ସେ ଟାଣେ ସେ ଜାଗାକୁ । ଯାହାର ପ୍ରଭାବ ସୁଦୂର ଇଂଲଣ୍ଡରେ ଥାଇ ମଧ୍ୟ ମୋ ଉପରେ ପଡୁଥିଲା ଏବଂ ତମେ ତମର ଡାକ୍ତରୀ ଭାଷାରେ ଯାହାକୁ କହୁଥିଲ ନଷ୍ଟାଲଜିକ୍ ଡିପ୍ରେସନ୍ ।

ସେ ବୋଧେ ବୁଝିଗଲେ ମୋ କଥା । ରହିଲେ ନୀରବ । ଗାଆଁ ନଈକୂଳ, ପୋଖରୀ ଆମ୍ବତୋଟା ଓ ଧାନବିଲ ବୁଲାବୁଲି ପରେ ତାଙ୍କୁ ନେଇଗଲି ଆମ ଗାଆଁ ଶ୍ମଶାନକୁ । ଦେଖାଇଦେଲି ମୋ ବାପା ଓ ବୋଉଙ୍କ ସମାଧି ।

ଗାଆଁରେ ଦୁଇଦିନର ରହଣି ମଧ୍ୟରେ ସେ ବୁଝିଗଲେ ପାରିବାରିକ ସମ୍ପର୍କ କ'ଣ ଏବଂ ଏଠାରେ ତାଙ୍କର କିଏ କ'ଣ ହେବ । ସମସ୍ତଙ୍କର ଅନାବିଳ ଭଲ ପାଇବା ଏବଂ ତାଙ୍କ ପ୍ରତି ସମ୍ମାନ ଦେଖି ସେ ଏତେ ବିମୋହିତ ହୋଇ ଯାଇଥିଲେ ଯେ, ସେ ବୁଝିପାରୁ ନ ଥିଲେ ସେଥିପାଇଁ ସେ କିପରି କୃତଜ୍ଞତା ଜଣାଇବେ ।

ସେଦିନ ରାତିରେ ମୋତେ ସେ ପଚାରିଲେ - ତମେ ଏଇ ଗାଆଁରେ ଜନ୍ମ ହୋଇଛ । ତମର ଶୈଶବ ବିତିଛି ଏଠି, ଶିକ୍ଷା ବି ପାଇଛ ଏଇଠୁ, ହେଲେ ଏ ଗାଆଁ ପାଇଁ ତମେ କ'ଣ କରିଛ ?

- କ'ଣ କରିଛି, କିଛି ବି କରିନି । ମୋ ଗାଆଁ ମୋତେ ଦେଇଛି କେବଳ କିଛି ନେଇନି ମୋ'ଠାରୁ ।

- ମୁଁ ଦେଖୁଛି ତମର ଗାଆଁ ଲୋକେ ତମକୁ ନେଇ ଯଥେଷ୍ଟ ଗର୍ବ ଅନୁଭବ କରୁଛନ୍ତି, ହେଲେ ତମେ ତ ସେମାନଙ୍କର କାଣିଚାଏ ଉପକାରରେ ଆସୁନ ।

- କିପରି ଆସିବି - ମୁଁ ତ ଯାଇ ରହିଲି କାହିଁ କେତେ ଦୂରରେ । ବାପା ବୋଉଙ୍କ ଯିବା ପରେ ତିରିଶ ବର୍ଷ ପରେ ଏଇ ପ୍ରଥମ ମୋର ଗାଆଁକୁ ଆସିବା । ମୋର ସୌଭାଗ୍ୟ ଯେ ଦାଦାପୁଅ ଭାଇଟି ଅନ୍ତତଃ ଆମର ପୈତୃକ ଘରଟିକୁ ହେପାଜତ୍‌ରେ ରଖିଥିଲା ବୋଲି ଆମେ ଆସି ରହିଲେ । ମୁଁ ଭାବୁଛି ଏଥର ଯିବା ବେଳକୁ ଏସବୁ ସମ୍ପତ୍ତି ତାକୁ ଉଇଲ୍ କରି ଦେଇଯିବି ।

- ନା, ସେ କଥା ହୋଇପାରିବ ନାହିଁ ।

- ଆମର ଆଉ ଏଠାକୁ କିଏ ଆସିବ ଯେ ଆମେ ଏ ସମ୍ପତ୍ତିକୁ ଲୋଭ କରି ରଖିବା ।

- ଏଠାକୁ କିଏ ଆସିବା କଥା ପଡ଼ିନାହିଁ, ପଡ଼ିଛି ଏଠାରୁ କିଏ ଯିବା କଥା ।

-ମାନେ !

– ତମ ନାଆଁ ସାଙ୍ଗରେ ଯୋଡ଼ା ହୋଇଥିବା ଏନ୍.ଆର.ଆଇ.ଟା ଉଠାଇ ଦେଇ ଆମେ ଉଭୟେ ଏଠାରେ ରହିଯିବା । ମୁଁ ଏଇଠି ଖୋଲିବି ଡାକ୍ତରଖାନା । ତମେ ଗାଆଁ ପାଇଁ କାମ କରିବ । ଗାଆଁର ଋଣତ ତମକୁ ପରିଶୋଧ କରିବାକୁ ଅଛିନା ! ଜୀବନର ଏତେ ବର୍ଷ ପରେ ଜୀବନ କ'ଣ ମୋର ଅନୁଭବ ଆସିଲା । ସେଠାରେ ଆମେ ଜୀବନକୁ ବଞ୍ଚୁଥିଲେ, ଏଠି ଜୀବନକୁ ଜୀଇଁବା । ପିଲାମାନଙ୍କୁ ଆମ ଗାଆଁ ଠିକଣା ଲେଖି ଜଣାଇଦିଅ – ଯଦି ଜୀବନକୁ ଜୀଇଁବାକୁ ଚାହୁଁଛ ତେବେ ଏଠାକୁ ଚାଲିଆସ । ମୁଁ ଭଲ କରି ଜାଣେ ସେମାନେ ଥରେ ଏଠାକୁ ଆସିଲେ ଆଉ କେବେ କହିବେନି ଫେରିବାକୁ । ଗାଆଁର ମାୟା ଏତେ ଅଧିକ ବୋଲି ଏଇତ ମୋର ପ୍ରଥମ ଅନୁଭବ । ତମେ କେମିତି କହିପାରୁଛ ଯେ ଆମେ ଚାଲିଯିବା ଏଠୁ ?



# ଦୂର ନକ୍ଷତ୍ର

ମୋର ଏମ୍.ଏ. ପରୀକ୍ଷା ଚାଲିଥିବାରୁ ମୁଁ ସୌମେନ୍ଦ୍ର ଭାଇର ବାହାଘରକୁ ଯାଇ ପାରିଲି ନାହିଁ । ବୋଉ ଚିଠି ଦେଇଥିଲା – ବନମାଉସୀ ଭାରି ବାଧ୍ୟ କରି ଖବର ପଠାଇଛି, ତୁ ଯେମିତି ହେଲେ ସୋମର ବାହାଘରକୁ ଆସିବା ପାଇଁ । ହେଲେ ମୁଁ ତାକୁ କହିଦେଇଛି ତୋ'ର ପରୀକ୍ଷା ଚାଲିଛି ବୋଲି । ତଥାପି ମୁଁ ତାକୁ ଚିଠି ଦେଇଛି ଯଦି ପରୀକ୍ଷା ସରିଯାଇଥାଏ ବାହାଘରକୁ ଆସି ପହଞ୍ଚିବ । ତୋ'ର କ'ଣ ମାର୍ଚ୍ଚ ବାଇଶି ତାରିଖ ବେଳକୁ ପରୀକ୍ଷା ସରିଯାଇଥିବ ? ଯଦି ନ ସରିଥିବ ତୁ ମୋଟେ ଆସିବା କଥା ନାଁ ଧରିବୁ ନାହିଁ । ତୋ ବାପା କେମିତିକା ଲୋକ ତ ତୁ ଜାଣୁ । ତୋତେ କିଛି କହିବେନି, ହେଲେ ସବୁ ରାଗ ମୋ ଉପରେ ଶୁଝାଇବେ ।

ପରୀକ୍ଷା ସରି ନଥିଲା । ତେଣୁ ସୌମେନ୍ଦ୍ର ଭାଇର ବାହାଘରକୁ ଯାଇପାରିଲି ନାହିଁ । ମନଟା ଖାଲି ମୋର କଳବଳ ହେଉଥାଏ । ଯଦିଓ ସୌମେନ୍ଦ୍ର ଭାଇ ମୋର ଦୁଇଟା କ୍ଲାସ ଉପରେ ପଢୁଥିଲା, ତଥାପି ଆମେ ଦୁହେଁ ଥିଲୁ ଅତି ଘନିଷ୍ଠ ସାଙ୍ଗ । ତା' ବାହାଘରକୁ ମୁଁ ଯାଇପାରବି ନାହିଁ ଏକଥା କେବେ ଭାବି ନଥିଲି ।

ପରୀକ୍ଷା ପରେ ଘରେ ପହଞ୍ଚି ବୋଉକୁ ଆଗ ପଚାରିଲି ସୌମେନ୍ଦ୍ର ଭାଇର ବାହାଘର କଥା । କେମିତି ହେଲା । କ'ଣ ସବୁ ଦେଲେ, ଭାଉଜ କେମିତି ଇତ୍ୟାଦି ଇତ୍ୟାଦି ।

ବୋଉ କହିଲା – ବାହାଘର ତ ଖୁବ୍ ଭଲରେ ଭଲରେ ହେଲା । ତୋ' ମାଉସୀ ତ ନିମକାଠିଟିଏ ବି ସେ ଝିଅଘରୁ ଆଣିଲା ନାହିଁ । ହେଲେ କ'ଣ ହେବ ?

– ହେଲେ କ'ଣ ହେବ – ମାନେ !

– ଅସଲ ସୁଖକୁ ତ ମନ ଜଳିଯାଉଛି – ସେ ବାହାଘରରେ ଆଉ ରହିଲା କ'ଣ ?

- କ'ଣ ଆଉ ତୋତେ ବୁଝାଇବି । ବାହାଘର ପରଠାରୁ ତ ସୋମ ସେ ଝିଅଟା ମୁହଁକୁ ଜମା ଚାହୁଁନି । ସୋମ ଭଳିଆ ସୁଧାର ପିଲା ପେଟରେ ଏତେ କଥା ଥିଲା ? ହେଲା ଯଦି ଥିଲା ସେତେବେଳେ ଭଲା ଫିଟାଇ କହିଥାନ୍ତା । ଭୟରେ ହେଉ କିମ୍ବା ଭକ୍ତିରେ ହେଉ ସେତେବେଳେ ଯଦି ନକହିଲୁ ତେବେ ଏବେ କହ । ନିଦାପଥର ପରି କିଛି କହୁନି । ମୁଁ ତ ଭାବୁଛି ତାକୁ କିଏ ଓଷଦ ଫୋଷଦ କରିଛି । ନ ହେଲେ ତା' ଭଳିଆ ପିଲା ଏମିତି ମୂକ ପାଲଟି ଯାଆନ୍ତା କିପରି ? ସମସ୍ତେ ତ ବୁଝାଇ ବୁଝାଇ ଥକ୍କି ସାରିଲେଣି । ତୋ ମାଉସୀ ତ ତୋତେ ଅନାଇ ବସିଛି । ତୁ ଆସିଲେ କଥାଟା କ'ଣ ବୁଝିବୁ ବୋଲି ।

ମନର ବ୍ୟଗ୍ରତା ଓ ଅନେକ କଥା ଚିନ୍ତା ଭିତରେ ମୁଁ ଖାଲି ଭାବୁଥାଏ ରାତି କିପରି ପାହିଲେ ମାଉସୀ ଘରକୁ ଯିବି । ପରଦିନ ମାଉସୀ ଘରେ ପହଞ୍ଚିଲି । ସଦ୍ୟସମାପ୍ତ ବାହାଘରର କଳକାଳକି ନଥିଲା । ବରଂ ଥିଲା ଏକ ମୌନ ନିରବତା । ମୁଁ ମଉସାଙ୍କୁ ନମସ୍କାର କଲାବେଳେ ସେ କେବଳ ପଚାରିଲେ - ପରୀକ୍ଷା ସରିଲା ? କେମିତି ହୋଇଛି ? ମାଉସୀଙ୍କୁ ନମସ୍କାର କଲାବେଳେ ସେ କହିଲେ - ତୋତେ ତ ଅନାଇ ଅନାଇ ଆଖିରୁ ପାଣି ମଲାଣି । ସେଠିତ ପରୀକ୍ଷା ଦେଇ ଆସିଲୁ ଦେଖ ଏ ପରୀକ୍ଷାରେ କ'ଣ କରୁଛୁ ।

- କ'ଣ ହୋଇଛି ମାଉସୀ ?

- ତୁ କ'ଣ ତୋ ବୋଉଠାରୁ କିଛି ଶୁଣିନୁ ?

- ଶୁଣିଛି ଯେ । ହେଲେ କଥାଟାକୁ ମୁଁ ଏତେ ଗୁରୁତ୍ୱ ଦେଇନି । ଭାବିଲି କ'ଣ ଟିକିଏ ଓଲମ୍ ବିଲମ ହୋଇଥିବା ଯୋଗୁ ସୋମଭାଇ ହୁଏତ ନିରବ ପ୍ରତିଶୋଧ ନେବାର ଏ ବ୍ୟବସ୍ଥା କରିଛି । ମାତ୍ର କେତେଦିନ ଆଣ୍ଟ ରଖିବ । ହାତ ଧରି ବାହା ହୋଇଛି, ଦିନା କେତେ ଗଲେ ବଳେ ବାଟକୁ ଆସିଯିବ ବୋଲି ।

- ତୋ' ତୁଣ୍ଡ ସୁତୁଣ୍ଡ ହେଉ, ସେ ବାଟକୁ ଚାଲି ଆସୁ ।

- ଆଛା, ସୋମଭାଇର ଦେଖାନାହିଁ । କୁଆଡ଼େ ଯାଇଛି ? ଫେରିବ କେତେବେଳେ ?

- କଲେଜକୁ । ତା'ର କ'ଣ ଠିକ୍ ଠିକଣା ଅଛି । ଏବେ ତ କଲେଜଟା ତା' ଘର ଓ ଘରଟା ତା'ର ହୋଟେଲ । ଆହୁରି ଯଦି କଲେଜରୁ ଦରମା ମିଳୁଥାଆନ୍ତା ତେବେ ବୋଧେ ଏ ହୋଟେଲକୁ ସେ ଆସୁ ନଥାନ୍ତା ।

- ଭାଉଜ ?

– ସେ ଘରେ ଅଛି । କୁଆଡ଼େ ଯିବ ବିଚାରୀ । ଏତକ କହିସାରି ମାଉସୀ ଡାକିଲେ– ଲୋ କନକ । ବିଜୁଭାଇକୁ ନେଇ ତୋ' ଭାଉଜକୁ ଟିକେ ଚିହ୍ନାଇଦେ ।

କନକ ମୋତେ ଭାଉଜଙ୍କ ପାଖରେ ପହଞ୍ଚାଇ ଦେଇ କହିଲା – ଭାଉଜ, ଏ ହେଉଛନ୍ତି ବିଜୁ ଭାଇ, ଆମ ସୁରମା ମାଉସୀଙ୍କ ପୁଅ ଓ ତୁମର ଏକମାତ୍ର ଦିଅର ।

ମୁଁ ନମସ୍କାର କଲି । ସେ ମୃଦୁହସି ପ୍ରତିନମସ୍କାରଟିଏ ହୋଇ ମୋତେ ବସିବାକୁ କହିଲେ । ମୁଁ ବସିବାପରେ ସେ କନକକୁ କହିଲେ – ଟିକେ ଫ୍ୟାନ ସୁଇଚ୍‌ଟା ଅନ୍ କରିଦିଅ ତ, ବହୁତ ଗରମ ଲାଗୁଥିବ ବିଜୁବାବୁଙ୍କୁ ।

ମୁଁ କହିଲି ତୁମେ ଠିଆ ହୋଇ ରହିଲ ଯେ – ବସ ।

ସେ ପଲଙ୍କ ବାଡ଼କୁ ଆଉଜି ବସିଲେ ।

ମୁଁ ଭାବୁଥାଏ କି କଥାବାର୍ତ୍ତା ଆରମ୍ଭ କରିବି । ହଷ୍ଟେଲରେ ଥିବା ବେଳେ ଭାବୁଥିଲି ବାହାଘରକୁ ନ ଯାଇ ପାରିଲି ନାହିଁ, ପରୀକ୍ଷା ପରେ ମାଉସୀଘରକୁ ଗଲେ ବହୁତ ମଜ୍ଜା କରିବି ଭାଉଜଙ୍କ ସାଥୀରେ । ହେଲେ ଏବେ ତାଙ୍କର ମନପୋଡ଼ି ଯାଉଥିବାବେଳେ କି ମଜ୍ଜା କରିବି ତାଙ୍କ ସହ । କି କଥାବାର୍ତ୍ତା କରିବି । ନିରବତାରେ କିଛିକ୍ଷଣ ବିତିବା ପରେ ସେ ତାଙ୍କ ଆଡୁ କଥା ଆରମ୍ଭ କରି ପଚାରିଲେ– ତମର ପରୀକ୍ଷା କେମିତି ହେଲା ?

–ଭଲ ।

– ଖାଲି ଭଲ କହିଲେ ଚଳିବ ? ମଉସା ମାଉସୀ କେତେ ବ୍ୟସ୍ତ ତୁମର ପରୀକ୍ଷା ପାଇଁ । ଆଉ ତୁମେ ଭଲଟିଏ କହିଦେଉଛ କେବଳ ।

–ନା, ଖୁବ୍ ଭଲ ହୋଇଛି ।

– ଏ ହୋଇନା ବାତ୍ ।

ସେ ପୁଣି କନକକୁ ପଚାରିଲେ – ଆଚ୍ଛା; ବିଜୁ ବାବୁଙ୍କୁ କିଛି ଜଳଖିଆ ଦେଇଛ କି ନାହିଁ ?

– ନା, ସିଏତ ଆସି ପହଞ୍ଚି ବୋଉସାଙ୍ଗରେ କ'ଣ ପଦେ ଦି'ପଦ କଥା ହୋଇଛନ୍ତି କି ନାହିଁ ତମ ପାଖକୁ ଚାଲିଆସିଲେ । ତା' ଜଳଖିଆ ଆଉ କେତେବେଳେ ଖାଇଲେ ?

– ନା, ନା, ମୋର ଏବେ ଜଳଖିଆ ଖାଇବାର ନାହିଁ । ରୋଷେଇ ସରିଲେ ଏକାଥରେ ଖାଇବି ।

– ତା' ହେଲେ ଟିକେ ସରବତ ହେଉ । କନକ, ମୋ ସୁନା ଭଉଣୀଟା ପରା ଯାଆତ ସରବତ ଗ୍ଲାସଟେ କରି ଆଣିବ ।

କନକ ଚାଲିଗଲା ପରେ କିଛି ସମୟ ନିରବତାରେ କଟିଲା । ସେହି ଅଳ୍ପ ସମୟ ନିରବତା ଲାଗୁଥିଲା ଖୁବ୍ ଦୀର୍ଘ ଓ ଓଜନିଆ । ମୁଁ ନିରବତା ଭଗ୍ନ କରି ପ୍ରଶ୍ନ କଲି – ମୁଁ ଯାହା ଶୁଣୁଛି... ?

– କ'ଣ ଶୁଣୁଛ ?

– ସୋମୁଭାଇର କଥା ।

– ତମେ କ'ଣ ଶୁଣୁଛ, ମୁଁ ଜାଣିନାହିଁ । ମାତ୍ର ମୋ ଜାଣିବାରେ ତ ସେ ସେମିତି କିଛି ଭୁଲ୍ କରୁନାହାନ୍ତି ।

– ମାନେ !

– ଏଠି ସମସ୍ତେ ଆମର ଦୈହିକ ସମ୍ପର୍କଟିଏ ସୃଷ୍ଟି ହୋଇପାରିନି ବୋଲି ଏତେ ଚିନ୍ତିତ । ମାତ୍ର ସେଇଟା ହୋଇ ଯଦି ମାନସିକ ସମ୍ପର୍କଟିଏ ସୃଷ୍ଟି ହୋଇପାରିନଥାନ୍ତା ? ଏବେ ଆମେ ଗୋଟିଏ କୋଠରିରେ – ଦେହର ସମ୍ପର୍କ ନାହିଁ କିମ୍ବା ଦେହାତୀତର ସମ୍ପର୍କ ନାହିଁ, ତେଣୁ କିଛିଟା ଶାନ୍ତିରେ ଅଛୁ ।

– ସୋମୁ ଭାଇ ମୋ ସହ ବହୁତ ଫ୍ରି । ତା'ର କୌଣସି ପ୍ରେମ ସମ୍ପର୍କ ଥିଲେ ମୁଁ ନିଶ୍ଚୟ ଜାଣିଥାଆନ୍ତି । ତମକୁ ସେ ବିଷୟରେ କିଛି କହିଛି କି ?

– ତାଙ୍କର କୌଣସି ପ୍ରେମ ସମ୍ପର୍କ ନାହିଁ ବୋଲି ସେ ଈଶ୍ୱରଙ୍କ ନାମରେ ଶପଥ କରିଛନ୍ତି ଏବଂ ମୋତେ ଅନୁରୋଧ କରିଛନ୍ତି ସେ ନେଇ ତାଙ୍କୁ ଭୁଲ ନବୁଝିବାକୁ ।

–ତେବେ କ'ଣ ତା'ର କୌଣସି ଶାରୀରିକ ଅକ୍ଷମତା ଅଛି କି ଯେଉଁଥି ପାଇଁ ସେ ଭୟ କରୁଛି ?

– ସେ କଥାକୁ ପରୀକ୍ଷା କରିବାର ଅବକାଶ ମିଳିନି । ତଥାପି ତାଙ୍କର ଶାରୀରିକ ଗଠନ, ସାରାରାତି କାମନାସିକ୍ତ ଅସ୍ଥିର ଭାବକୁ ଦେଖିଲେ ଏବଂ ନିଜକୁ ଯନ୍ତ୍ରଣା ଦେଇ ନିଜ ଭିତରର ଯୌନ ଉଦ୍‌ବେଳନକୁ ରୋକିବାର ପ୍ରୟାସକୁ ଦେଖି ମୁଁ ଭାବୁଛି ସେ ସମର୍ଥ ଓ ସକ୍ଷମ ପୁରୁଷ ।

–ନିଜକୁ ଯନ୍ତ୍ରଣା ଦେଇମାନେ ?

ସେ ଉଠିଯାଇ ଏକ ଧଳା କପଡ଼ା ଗୋଟିଏ ସ୍ପିରିଟ୍ ବୋତଲ ଓ ଇଞ୍ଜେକ୍‌ସନ୍ ଛୁଞ୍ଚିକୁ ବାହାର କରି ଆଣି ମୋ ଆଗରେ ଧରିଲେ ।

– ଇଏ କ'ଣ ?

- ଏ କପଡ଼ାର ରକ୍ତଦାଗକୁ ଦେଖୁଛ ? ଏ ରକ୍ତ ସବୁ ତୁମ ଭାଇଙ୍କର । ଶୋଇଥିବେ ଶୋଇଥିବେ ହଠାତ୍ ଉଠିପଡ଼ି ଆଙ୍ଗୁଠି ଟିପକୁ ଏ ଛୁଞ୍ଚିରେ ଫୋଡ଼ିବେ । ରକ୍ତ ବାହାରିବ । ପରେ ଏ କପଡ଼ାରେ ପୋଛି ସ୍ପିରିଟ୍ ଦେଇ ପୁଣି ଶୋଇ ପଡ଼ିବେ ।

- ତୁମେ ଏସବୁ ଦେଖି କିଛି କୁହନି ?

- ଏ ପର୍ଯ୍ୟନ୍ତ ତାଙ୍କୁ ଛୁଇଁବାର ଅଧିକାର ସେ ମୋତେ ଦେଇନାହାନ୍ତି । ତେଣୁ କହିବାର ଅଧିକାର ଆସିଲା କେଉଁଠୁ? ତା'ପରେ ସେ ଏସବୁ କାମକଲା ବେଳେ ଭାବନ୍ତି ମୁଁ ଶୋଇସାରିଛି ବୋଲି । ମାତ୍ର ମୁଁ ଯେ କେଉଁଠି ସାରାରାତି ଶୋଉଛି । ମୁଁ ତ ପ୍ରଥମେ ଭୟ କରିଗଲି ଯେ ସେ ଡ୍ରଗ ଆଡିକ୍ଟ । ତେଣୁ ତାଙ୍କ ଅଜ୍ଞାତସାରରେ ତାଙ୍କର ଆଲମିରା କୋଲି ସବୁ ତନ୍ନ ତନ୍ନ କରି ପରୀକ୍ଷା କଲି । ତା' ପରେ ତାଙ୍କର ହାଭବାଭବକୁ ତୀକ୍ଷ୍ଣ ଭାବେ ଅନୁଧ୍ୟାନ କଲି । ରକ୍ଷା ହୋଇଛି ଯେ ଡ୍ରଗ୍ ଆଡିକ୍ଟ ନୁହନ୍ତି ।

- ନିଜକୁ ଯନ୍ତ୍ରଣା ଦେଇ ଏମିତି ହେବାର ଉଦ୍ଦେଶ୍ୟ କ'ଣ ?

- କିଏ କହିପାରିବ - ସମୟ ଆସିଲେ ବଳେ ଜଣାପଡ଼ିବ ।

- ସେ ସମୟ ଯାଏଁ ତମେ କ'ଣ ଅପେକ୍ଷା କରିଥିବ ?

- ଆଉ ଚାରା କ'ଣ ? ଗୋଟିଏ କଥା ମୋତେ ଚିନ୍ତିତ କରୁଛି କେବଳ ।

- କ'ଣ ?

- ଆମ ଉଭୟଙ୍କ ମଧ୍ୟରେ ଥିବା ସମ୍ପର୍କ ଏଇନେ କେବଳ ଯାଙ୍କ ପରିବାରର ଜ୍ଞାତସାରରେ ଅଛି । ଆଉ କିଛି ଦିନ ପରେ ହୁଏତ ଆମ ଘରର ଲୋକମାନେ ଜାଣିବେ, ତା'ପରେ ବାହାରଲୋକ । ସମସ୍ତେ ଜାଣି ସାରିବା ପରେ ମୁଁ ଏମିତି ସମ୍ପର୍କ ପାଇଁ କି କୈଫୟତ୍ ଦେବି ? ଆତ୍ମସମ୍ମାନ ଭୟରେ ଚୁପ୍ ରହିଲେ ସମସ୍ତଙ୍କ ଆଙ୍ଗୁଳି ମୋ ଚରିତ୍ର ଉପରକୁ ଉଠିବ । ସେତେବେଳେ ମୁଁ କ'ଣ କରିବି ?

- ନା' ଭାଉଜ ! ମୁଁ ଭାବୁଛି କଥା ଏତେ ଦୂର ଯିବ ନାହିଁ । ତା' ପୂର୍ବରୁ ସୋମୁ ଭାଇର ସଦ୍‌ବୁଦ୍ଧି ଆସିଯାଇଥିବ ।

- ଆସି ଗଲେତ ଭଲ କଥା । ମୋ ଅପେକ୍ଷାର ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ତାଙ୍କର ଯଦି ସଦ୍‌ବୁଦ୍ଧି ଆସି ପରିବର୍ତ୍ତନ ହୋଇଗଲା ତ ଭଲ, ମାତ୍ର ମୋ ଅପେକ୍ଷା ସରିଗଲା ପରେ ମୁଁ ଯେଉଁ ନିଷ୍ପତ୍ତି ନେବି ତାହା ଅପରିବର୍ତ୍ତିତ ରହିବ ।

- କ'ଣ ନିଷ୍ପତ୍ତି ନେବ ବୋଲି ତୁମେ ଭାବିଛ ?

– ଏବେ ନୁହେଁ । ସେ ସମୟ ଆସିଲେ ଜାଣିବ । ତଥାପି ଏତିକି ଜାଣ ଯେ ମୁଁ ଏପରି କୌଣସି ନିଷ୍ପତ୍ତି ନେବି ନାହିଁ ଯାହା ଏ ପରିବାର, ଆମ ଘର କିମ୍ୱା ଏ ପରିବାର ଲୋକଙ୍କର ମର୍ଯ୍ୟାଦାକୁ କ୍ଷୁଣ୍ଣ କରିବ । ସ୍ତ୍ରୀର ମଧ୍ୟ ଆତ୍ମସମ୍ମାନବୋଧ ଅଛି ଯାହା ସ୍ୱାମୀଠାରୁ କୌଣସି ଗୁଣରେ ନ୍ୟୂନ ନୁହେଁ । ମୁଁ ତାହା ପ୍ରମାଣ କରିଦେବି ।

ଏହି ସମୟରେ କନକ ଆସି କହିଲା – ସୋମୁଭାଇ କଲେଜରୁ ଆସିଲେଣି । ସୋମୁଭାଇର ଆସିବା ଖବର ଶୁଣି ମୁଁ କହିଲି – ଭାଉଜ ଧୈର୍ଯ୍ୟ ରଖ । ମୁଁ ଆଶା କରୁଛି ସବୁ ଠିକ୍ ହୋଇଯିବ । ମୁଁ ଟିକିଏ ସୋଭୁଭାଇ ସହିତ କଥାବାର୍ତ୍ତା କରି ଆସୁଛି । ମୁଁ ତା'ର ମତିଗତି କ'ଣ ବୁଝେ ।

ସୋମୁ ଭାଇ ଡ୍ରଇଂ ରୁମ୍‌ରେ ବସି ଖବରକାଗଜ ପଢୁଥିଲା । ମୋତେ ଦେଖିଲେ ସେ ପୂର୍ବରୁ ଯେପରି ତତ୍‌ପରତା ଭାବ ଦେଖାଉଥିଲା ସେମିତି ହେଲା ନାହିଁ । ଅତି ଗମ୍ଭୀର ଭାବେ ପଚାରିଲା – ତୁ କେତେବେଳୁ ଆସିଲୁଣି ?

– ଏଇ ଦୁଇ ଘଣ୍ଟା ଖଣ୍ଡେ ହେବ ।

– ତୋର ପରୀକ୍ଷା ଭଲ ହେଲାତ ?

– ହଁ, ଚଳିବ ।

– ହଁ, ଭଲ ହେଲେ କେତେ ନହେଲେ କେତେ । ଭଲ ହେଲେ କେଉଁ ଚାକିରି ଥୁଆ ହୋଇଛି ଯେ ସାଙ୍ଗେ ସାଙ୍ଗେ ମିଳିଯିବ । ତା' ପରେ ଅଧ୍ୟାପକ ଚାକିରି ଛାଡ଼ିଦେଲେ ଏମ୍.ଏ ଯୋଗ୍ୟତା ପାଇଁ ସେମିତି ତ କୌଣସି ନିର୍ଦ୍ଦିଷ୍ଟ ଚାକିରି ନାହିଁ । ଅନ୍ୟ ଚାକିରି ପାଇଁ ଏମ.ଏ. ଯାହା ବି.ଏ. ତାହା । ଆଉ ଅଧ୍ୟାପକ ହେଲେ ଆମରି ଭଳିଆ ଦଶା ହେବତ ଆଉ କ'ଣ ।

– ଛାଡ ସୋମୁଭାଇ, ପଛକଥା ପଛରେ । ଯେତେବେଳେ ଯାହା ଭାଗ୍ୟରେ ଥିବ ହେବ । ସେଥିପାଇଁ ଆଗରୁ ଏତେ ବ୍ୟସ୍ତ ହୋଇ ଲାଭ କ'ଣ ? ମୁଁ ତୁମକୁ ଗୋଟେ କଥା ପଚାରିବି ବୋଲି ଭାବିଛି ।

– ତୁ ଯାହା ପଚାରିବୁ ମୁଁ ଜାଣେ । ମାତ୍ର ପଚାରି ଲାଭ କ'ଣ – ମୋଠାରୁ ତ କୌଣସି ଉତ୍ତର ପାଇବୁ ନାହିଁ ।

– କୌଣସି କାରଣ ନ ଦର୍ଶାଇ ତମର ଏ କାର୍ଯ୍ୟ ପାଇଁ ସମଗ୍ର ପରିବାର ବିଶେଷ କରି ଭାଉଜ କି ଦଣ୍ଡ ଭୋଗୁଛନ୍ତି ତାକୁ ତମେ କେବେ ଅନୁଭବ କରିଛ ?

- ସବୁ ଜାଣେ । ହେଲେ ମୋ ପାଖରେ କୌଣସି ବିକଳ୍ପ ପନ୍ଥା ନାହିଁ ।

-ମାନେ !

- ଥରେ ତ କହିଛି ମୁଁ ଏହାର କାରଣ ବିଷୟରେ ତୋତେ କୌଣସି ଉତ୍ତର ଦେଇ ପାରିବି ନାହିଁ ।

-ତେବେ ଜାଣି ଜାଣି ତମେ ଗୋଟିଏ ଝିଅର ଜୀବନ ନଷ୍ଟ କଲ କାହିଁକି ?

- ମାନୁଛି ସେଇଟା ମୋର ଭୁଲ୍ । ଏବେ ଚେଷ୍ଟା କରି ମଧ୍ୟ ସେ ଭୁଲ୍‌କୁ ସୁଧାରି ପାରିବି ନାହିଁ । ପାରିବୁ ଯଦି ତୁ ସୁଧାରି ନେ ।

- କେମିତି ?

- ତୋ ଭାଉଜକୁ ତୁ ଗ୍ରହଣ କରିନେ ।

-ତମେ ହୋସ୍‌ରେ ଅଛତ ସୋମୁଭାଇ ?

- ଗୋଟେ ଟ୍ରେନ୍‌ର ରିଜର୍ଭ କମ୍ପାର୍ଟମେଣ୍ଟରେ ଜଣେ ପୁରୁଷ ଓ ଜଣେ ମହିଳା ଯାତ୍ରୀ ପରି ଆମେ ଦୁଇଜଣ ଏଇ କିଛି ରାତ୍ରୀ ହେବ ଯାତ୍ରା କରିଛୁ କେବଳ । ପରସ୍ପର ଅଜଣାଭାବେ ଓ ଭିନ୍ନ ଭିନ୍ନ ଗନ୍ତବ୍ୟ ପଥ ନେଇ । ସେ ପୂର୍ବଭଳି ପବିତ୍ର । ସେଥିରେ ଅସୁବିଧା କେଉଁଠି ?

ମାଉସୀ କେତେବେଳୁ ଆସି ଦ୍ୱାର ପାଖରେ ଛିଡ଼ା ହୋଇ ଆମ କଥା ଶୁଣୁଥିଲେ ମୋତେ ମାଲୁମ୍ ନଥିଲା । ସୋମୁଭାଇର କଥା ଶୁଣି ସେ ତାଙ୍କର କ୍ରୋଧ ସମ୍ବରଣ କରିନପାରି ପଶି ଆସି କହିଲେ - ତୁ କ'ଣ କହିଲୁ? କ'ଣ କହିଲୁ ଆଉ ଥରେ କହତ ! ଶୁଣିଥିଲି ବଂଶନାଶ ବେଳେ ଘୋଡ଼ାମୁହାଁ ପୁଅର ଜନ୍ମ ହୁଏ । ତୁ ସେହି ଘୋଡ଼ାମୁହାଁ ପୁଅ । ନଚେତ୍ କେହି କେବେ ନିଜ ସ୍ତ୍ରୀକୁ ସାନଭାଇକୁ ଗ୍ରହଣ କରିବାକୁ କହେ । ତୁ ନିଜକୁ କ'ଣ ଭାବିଚୁ କି ? ସେ ବୋହୂଟାକୁ ତୁ କ'ଣ ଭାବିଲୁ ? କେଉଁ ଅଧିକାରରେ ତୁ ତା' ବିଷୟରେ ଏତେ ବଡ଼ କଥାଟେ କହିଲୁ ? ତୁ ତା ସ୍ୱାମୀ - ସ୍ୱାମୀ ନା ? ଦେଇଛୁ ତାକୁ ସ୍ତ୍ରୀର ଅଧିକାର ?

ମୁଁ ଅନୁମାନ କରିନେଲି କଥା ଗୁରୁତର ଆକାର ଧାରଣ କରିବ । ତେଣୁ ମାଉସୀଙ୍କୁ ବୁଝାଇବାକୁ ଯାଇ କହିଲି - ସୋମୁଭାଇ ଏଇନେ ମାନସିକ ଭାରସାମ୍ୟ ହରାଇ ବସିଛନ୍ତି । ସେ କ'ଣ କହୁଛନ୍ତି ନିଜେ ବି ଜାଣନ୍ତି ନାହିଁ । ତାଙ୍କ କଥାକୁ ଏତେ ଗୁରୁତ୍ୱ ଦିଅନି ମାଉସୀ ।

–ଗୁରୁତ୍ୱ ଦେବିନି ? ଜଣେ ନିଜେ ନିଜ ଖିଆଲରେ ପାଗଳ ହୋଇପାରେ ମାତ୍ର ତା' ପାଗଳାମିର ପରିଣାମ ଆଉଜଣେ କାହିଁକି ଭୋଗିବ ? ଆଜି ତା' ବାପା ଆସନ୍ତୁ, ମୁଁ ଏ କଥାର ଗୋଟେ ଫଇସଲା କରିଦେବି । ହଁ, ମନେରଖ ସେ ମୋର ବୋହୂ ନୁହେଁ ଝିଅ । ଦେଖ୍ ତା ବ୍ୟବସ୍ଥା ମୁଁ କ'ଣ କରୁଛି । ତୋତେ ଯଦି ଦାଣ୍ଡର ଫକୀର କରି ନ ବସାଇଛୁ ତେବେ ମୋତେ ଯାଇ ଚିହ୍ନିବୁ ।

ଯୋଗକୁ ମଉସା ସେହି ସମୟରେ ଆସି ଘରେ ପହଞ୍ଚିଗଲେ । କ୍ରୋଧର ଚରମ ସୀମାରେ ଥିବା ମାଉସୀ ମଉସାଙ୍କୁ ସବୁ କଥା କହିଗଲେ । ମାଉସୀଙ୍କ କଥା ଶୁଣି ମଉସା ଅସମ୍ଭବ ଭାବେ ଗମ୍ଭୀର ହୋଇଗଲେ । ତାଙ୍କ ଗମ୍ଭୀରତାକୁ ଦେଖି ମୁଁ ଆଶଙ୍କା କରିନେଲି ଏ ନିଶ୍ଚିତ ଝଡ଼ ପୂର୍ବର ନିରବତା । କିଛି ଘଟିବ ନିଶ୍ଚୟ ।

ସତକୁ ସତ ପରଦିନ ସକାଳୁ ଓକିଲକୁ ଡକାଇ ପଠାଇଲେ ମଉସା । ଓକିଲ ଆସିବା ପରେ ସମସ୍ତ ସମ୍ପତ୍ତି ଭାଉଜଙ୍କ ନାମରେ ଉଇଲ କରିଦେଇ ସୋମୁଭାଇକୁ ତ୍ୟେଜ୍ୟପୁତ୍ର ବୋଲି ଘୋଷଣା କଲେ ।

ମୁଁ ଚେଷ୍ଟାକଲି ମଉସାଙ୍କୁ ବୁଝାଇ ଏତେବଡ଼ ନିଷ୍ଠୁର ନିଷ୍ପତ୍ତିରୁ ବିରତ କରିବାକୁ । ମାତ୍ର ସେ ପଦଟିଏ ମୋତେ କହିଲେ – ତୁ ଚୁପ୍ ରହ । ସେହି ପଦକର ଓଜନ ଏତେ ଥିଲା ଯେ ମୋତେ ଲାଗିଲା ମୁଁ ଏଥିରେ ଚିପି ହୋଇଯିବି ।

ପରଦିନ ସକାଳୁ ସୋମୁଭାଇ ପ୍ରସ୍ତୁତ ହେଉଥିଲା ଘର ଛାଡ଼ିବା ପାଇଁ । ସମଗ୍ର ପରିବାରରେ ଥିଲା ଗୋଟେ ଥମ୍‌ଥମ୍ ଭାବ । ଅଥଚ ସୋମୁଭାଇ ଆଦୌ ବିଚଳିତ ଜଣାପଡୁନଥିଲା । ସେ ଯେମିତି କୌଣସି ନୂଆ ଜାଗାକୁ ଚାକିରିରେ ଜଏନ୍ କରିବାକୁ ଯାଉଛି, ସେଭଳି ଭାବରେ ନିଜର ଆଟାଚ୍ ଓ କିଛି ବହିପତ୍ର ଗୋଟିଏ ବ୍ୟାଗ୍‌ରେ ରଖୁଥିଲା । ଏସବୁ ଦେଖି ମୁଁ ଖୁବ୍ ବିଚଳିତ ହୋଇ ପଡୁଥିଲି । ବାଧ୍ୟ ହୋଇ ମାଉସୀଙ୍କୁ କହିଲି – ରାଗରେ ହେଉ ବା ଅଭିମାନରେ ପଦେ କହିଦେଲା ବୋଲି କ'ଣ ଏତେ ବଡ଼ ଶାସ୍ତି ? କିଛି ଗୋଟେ କର ମାଉସୀ । ନଚେତ୍ ନେଡିଗୁଡ କହୁଣୀକୁ ବୋହିଗଲା ପରେ ଆଉ କିଛି କରିପାରିବ ନାହିଁ ।

ମାଉସୀ ତାଙ୍କର ନିରବ ନିଶ୍ଚଳ ମୁଦ୍ରା ଭିତରୁ ଉଠି ଶୋଇବା ଘରକୁ ଯାଇ ତକିଆ ଉପରେ ମୁହଁ ମାଡ଼ି ଶୋଇପଡ଼ିଲେ । ମୁଁ ଜାଣୁଥିଲି ଯେତେ ହେଲେ ମାଆ ମନ ତ । ପୁଅକୁ ଏତେ ବଡ଼ ଦଣ୍ଡଟିଏ ଦେବାବେଳେ କ'ଣ ନିରବ ରହିପାରିବ ! କିନ୍ତୁ ସେ ମଉସାଙ୍କର କ୍ରୋଧକୁ ସାମ୍ନା କରି ନିଷ୍ପତ୍ତିର ପୁନଃ ବିଚାର ପାଇଁ କହିବାକୁ ସାହସ କରିପାରୁନଥିଲେ ।

ଏହି ସମୟରେ ଭାଉଜ କନକକୁ ସାଥୀରେ ଧରି ମଉସା ବସିଥିବା ଜାଗାକୁ ଗଲେ । କନକ କହିଲା – ବାପା, ଭାଉଜ ତୁମକୁ କ'ଣ କହିବେ ବୋଲି ଆସିଛନ୍ତି ।

– କ'ଣ କହିବ ?

ଭାଉଜ ଖୁବ୍ ଧୀର ଅଥଚ ଦୃଢ଼ କଣ୍ଠରେ କହିଲେ – ମୁଁ ଆପଣଙ୍କର ଏ ନିର୍ଣ୍ଣୟକୁ ସମର୍ଥନ କରିପାରୁନି ।

ମୁଁ ଆଶଙ୍କା କରୁଥିଲି ପୁଣି ଗୋଟାଏ ବୋମାର ଗର୍ଜନ ହୋଇପାରେ । ଅଥଚ ସେମିତି କିଛି ହେଲାନି, ବରଂ ମଉସା ପଚାରିଲେ – ଆଉ କିଛି କହିବ ?

– ଆପଣଙ୍କର ଏ ନିଷ୍ପତ୍ତି ମୋତେ ବେଶୀ ଅସହାୟ କରିବା ସହ ମୋ ପ୍ରତି ଦୟା ସଦୃଶ ହେଉଅଛି ।

–ଆଉ... ?

– ମୁଁ ଚାହେଁନା ମୋ ପାଇଁ ତାଙ୍କୁ ଏତେ ବଡ଼ ଶାସ୍ତି ମିଳିବା ସହ ଏ ପରିବାରର ସୁଖ ଶାନ୍ତି ସବୁଦିନ ପାଇଁ ଚାଲିଯାଉ । ଆପଣ ତାଙ୍କ ପ୍ରତି କରିଥିବା ଶାସ୍ତି ବିଧାନର ପୁନଃ ବିଚାର କରନ୍ତୁ ଏବଂ ଆପଣଙ୍କୁ ପ୍ରତିଶ୍ରୁତି ଦେଉଛି ଏ ପରିବାରର ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରଖି ମୋର ଅବଶିଷ୍ଟ ଜୀବନ ମୁଁ ଏଇଠି ଏକା ଏକା କାଟି ଦେବି ।

– ବାସ୍ ଥାଉ । ତମ କଥା ସରିଲା ତ ? ମୋ ନିଷ୍ପତ୍ତିର ପୁନଃବିଚାର କରିବା ଉଚିତ୍ ବୋଲି ମୁଁ ଭାବୁନାହିଁ । ଆଉ ରହିଲା ତୁମର ଭବିଷ୍ୟତ କଥା । ତମେ ମୋ ବୋହୂ ନୁହେଁ ଝିଅ ଆଜିଠାରୁ । ତମ ପ୍ରତି ଏଇଟା ଗୋଟେ ଚ୍ୟାଲେଞ୍ଜ ଯେ ପୁରୁଷ ବିନା ଅବଳା କେବେ ଦୁର୍ବଳା ନୁହେଁ ପ୍ରମାଣ କରିବାକୁ ।

– ମୁଁ ଏ ଚ୍ୟାଲେଞ୍ଜକୁ ଗ୍ରହଣ କରୁଛି । ମାତ୍ର ମୁଁ ଦୁର୍ବଳା ନୁହେଁ ବୋଲି ନିଜକୁ ପ୍ରମାଣିତ କରିବା ପାଇଁ ତାଙ୍କର ତ୍ୟେଜ୍ୟପୁତ୍ର ହେବାର କୌଣସି ଆବଶ୍ୟକତା ନାହିଁ । ସେ ଏଠାରେ ରହନ୍ତୁ । ଏ ପରିବାରର ସୁଖ, ଶାନ୍ତି ବଜାୟ ରହୁ । ମୁଁ ପ୍ରତିଶ୍ରୁତି ଦେଉଛି ଯେ ଆପଣ କେବେବି ମୋ ଭିତରେ ନାରୀ ସୁଲଭ ଆବେଗ, ବିଷାଦ କିମ୍ବା ଦୁଃଖ ଦେଖିବାକୁ ପାଇବେ ନାହିଁ । ଆପଣ ତ କହିଛନ୍ତି ମୁଁ ଆପଣଙ୍କର ବୋହୂ ନୁହେଁ ଝିଅ, ମୋତେ ଏବେ ଆପଣଙ୍କ ଝିଅର ଭୂମିକା ତୁଲାଇବାର ସୁଯୋଗ ଦିଅନ୍ତୁ ।

ମୁଁ ଆଶ୍ୱସ୍ତ ହେଲି ଯେ ଏକ ବିରାଟ ସମସ୍ୟାର ସମାଧାନ ହୋଇଗଲା । ମୁଁ ସୋମୁଭାଇ ପାଖକୁ ଯାଇ ତାକୁ ଏ ଖବରଟା ଦେଲି । ଆଶା କରୁଥିଲି ସେ ତା'ର ପୌରୁଷର ସ୍ୱାଭିମାନ ଦେଖାଇ ଜିଦ୍ କରିବ ଘରଛାଡି ଚାଲିଯିବା ପାଇଁ । ମାତ୍ର

ମୋଠାରୁ ସବୁ ଶୁଣିବା ପରେ କେବଳ ପଦଟିଏ କହିଲା – ମୋର ପରୀକ୍ଷା ପୂରଣ ହେବା ବୋଧହୁଏ ଗୁରୁଦେବ ଚାହାନ୍ତି । ହଉ ଠିକ୍ ଅଛି ।

ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି – କି ପରୀକ୍ଷା ?

– ଏବେ ତୋ' ଜାଣିବାର ସମୟ ହୋଇନାହିଁ । ସମୟ ଆସିଲେ ତୁ ଆପେ ଆପେ ଜାଣିପାରିବୁ । ମୁଁ ବି ଆଉ ବେଶି ବାଧ କଲିନାହିଁ ତା'ଠାରୁ କଥାଟା ଜାଣିବା ପାଇଁ । କାରଣ ମୁଁ ଭୟ କରୁଥିଲି ବେଶି ବାଧ କଲେ ପୁଣି କେଉଁଠି କ'ଣ ଗୋଳମାଳ ହୋଇଯାଇପାରେ । ତେଣୁ ମୁଁ ଚୁପ୍ ରହି ମୋ ବାଟ ଧରିଲି । ଫେରିଲାବେଳେ ମାଉସୀଙ୍କୁ କେବଳ କହିଲି ଧୈର୍ଯ୍ୟଧର । ତଳ ପାଣି ପୁଣି ଉପରକୁ ଲେଉଟିବ ।

ଅନେକ ଦିନ ପର୍ଯ୍ୟନ୍ତ ମୁଁ ଆଉ ଯାଇନଥିଲି ମାଉସୀ ଘର । ତା'ପରେ ମୋର ଚାକିରି ନେଇ ମୋତେ ବାହାରେ ରହିବାକୁ ପଡୁଥିବାରୁ ମୁଁ ବି ତାଙ୍କ ଘର ବିଷୟରେ ବିଶେଷ ଖବର ରଖିପାରୁନଥିଲି । କେବଳ ଯା ବୋଉଠାରୁ କିଛି ଖବର ଶୁଣେ । ଯେ ଭାଉଜ କିପରି ଶ୍ରୀମା ଅରବିନ୍ଦଙ୍କର ଭକ୍ତ ହୋଇ ପଣ୍ଡିଚେରୀ ଆଶ୍ରମରେ କିଛିଦିନ କଟାଇ ଫେରିବା ପରେ ତାଙ୍କ ଗ୍ରାମରେ ଆରମ୍ଭ କରିଥିଲେ ଏକ ଆବାସିକ ବାଳାଶ୍ରମ । ବାଳାଶ୍ରମରୁ ବିଦ୍ୟାଳୟ । ଏଇନେ ସେ ବିଦ୍ୟାଳୟରେ ହାଇସ୍କୁଲ ଯାଏ ଶିକ୍ଷାଦାନ ଚାଲିଛି । ଉନ୍ନତମାନର ଶିକ୍ଷାଦାନ ସହ ଉନ୍ନତ ମଣିଷ ଗଢ଼ିବାରେ ସେ ସ୍କୁଲର କିପରି ଚାରିଆଡ଼େ ନାଆଁ ଡାକ । କେବଳ ସେତିକି ନୁହେଁ ଅନାଥ ଶିଶୁମାନଙ୍କର ସେବା ଯତ୍ନ ଓ ଶିକ୍ଷାଦାନ ପାଇଁ ଭାଉଜଙ୍କୁ ମିଳିଛି ରାଷ୍ଟ୍ରସ୍ତରୀୟ ସମ୍ମାନ ।

ବୋଉ ତ ଥରେ ଆସି କହିଲା – ବୁଝିଲୁ ନା ସୋମୁର ସ୍ତ୍ରୀ ଏଇନେ ଜଗତଯାକର ମାଆ । ଇଏ ସତ୍ୟାନାଶିଅ ସିନା ତା' କୋଳ ପୂରାଇବାକୁ ସୁଯୋଗ ଦେଲାନି, ଦେଇଥିଲେ ସେ ଅତି ବେଶିରେ ଗୋଟେ ଯୋଡ଼େ ଛୁଆଙ୍କର ମାଆ ଡାକ ଶୁଣିଥାଆନ୍ତା । ସେ ତ ଏବେ କେବଳ ସେ ସ୍କୁଲର ନୁହେଁ ସେ ଅଞ୍ଚଳର ବି ମାଆ । ମାଆ କହିଲେ ହିଁ ଲୋକେ ତାକୁ ବୁଝୁଛନ୍ତି । ସୋମୁଟା ମାଙ୍କଡାଟାଏ; ଶାଳଗ୍ରାମକୁ ହାତରେ ଧରି ବି ଚିହ୍ନିପାରିଲା ନାହିଁ ।

ଅନେକ ଦିନପରେ ଥରେ ମୁଁ ଘରକୁ ଯାଇଥିବା ଖବର ପାଇ ସୋମୁଭାଇ ଆସି ଆମ ଘରେ ପହଞ୍ଚିଲା । ତା'ର ଆମ ଘରକୁ ଆସିବା ଯେମିତି ଅଭାବିତ ଥିଲା ସେମିତି ଆଶ୍ଚର୍ଯ୍ୟଜନକ ବି । କାରଣ ତାହାର ବାହାଘର ପରେ ସେ କୌଣସି ବନ୍ଧୁବାନ୍ଧବ ବା ଚିହ୍ନା ପରିଚୟ ଲୋକଙ୍କ ଘରକୁ ଯାଉ ନଥିଲା ।

ସୋମୁଭାଇ ମୋତେ ଡାକି କହିଲା - ତୋ ଆସିବା ଖବର ଶୁଣି ମୁଁ ଆସିଛି ଏକ ବିଶେଷ କାର୍ଯ୍ୟରେ ତୋ' ପାଖକୁ । ମୋତେ ସାହାଯ୍ୟ କରିପାରିବୁ ?

- ବିଶେଷ କାର୍ଯ୍ୟ ! ପୁଣି ମୋ ପାଖରେ ?

- ହଁ, ବିଶେଷ କାର୍ଯ୍ୟ

- କାର୍ଯ୍ୟଟି କ'ଣ ଶୁଣେ, ତା' ପରେ ଯାଇ ସାହାଯ୍ୟ କରିପାରିବି କି ନାହିଁ କହିବି ।

- ମୁଁ ମୋ ଗୁରୁଙ୍କ ଉପଦେଶକୁ କାର୍ଯ୍ୟକାରୀ କରିବାରେ ଅସଫଳ ହେବାରୁ ଏବେ ଚାହୁଁଛି ସଫଳ ଦାମ୍ପତ୍ୟକୁ ଫେରିଯିବାକୁ । ମାତ୍ର ତୋ ଭାଉଜ ମୋତେ ଭାଇ ବ୍ୟତୀତ ଅନ୍ୟ କୌଣସି ସମ୍ପର୍କରେ ଚିହ୍ନିବା ପାଇଁ ପ୍ରସ୍ତୁତ ନୁହେଁ । ମୋ ଜୀବନଟା କ'ଣ ସବୁଥିରେ ଅସଫଳ ରହିଯିବ ?

- ସେ ଶିଷତ୍ୱ ପ୍ରାପ୍ତିରୁ ତୁମକୁ କ'ଣ ମିଳିଥାଆନ୍ତା ?

- ମୁକ୍ତି ।

- ମୁକ୍ତି କେଉଁଥିରୁ ?

- ସଂସାର ବନ୍ଧନରୁ ।

- ତମେ ତ ଏଇନେ ସଂସାର ବନ୍ଧନରୁ ମୁକ୍ତ । ପୁଣି ସେଥିରେ ପଶିବାକୁ କାହିଁକି ଚାହୁଁଛ ?

ମୁଁ ମୁକ୍ତ ହେଲି କେତେବେଳେ ? ସେ କହିଥିଲେ ନାରୀର ଶରୀର ପ୍ରତି ନିର୍ବିକାର ଓ ପ୍ରଭେଦଶୂନ୍ୟ ହେବା ପାଇଁ ।

- ତମେ ତା' ହୋଇ ନା ?

- ହେଲି କେତେବେଳେ ? ପ୍ରତିଦିନ ପ୍ରତିମୁହୂର୍ତ୍ତରେ ମୋ ଚେତନ ଅବଚେତନ ଓ ଅର୍ଦ୍ଧଚେତନ ମନରେ ତ ନାରୀ - ଇନ୍ଦ୍ରିୟ ସୁଖର ଆକାଂକ୍ଷା । ମୋ ଶରୀରକୁ ରକ୍ତ କ୍ଷରଣ କରି ମୁଁ ଚେଷ୍ଟା କରୁଥିଲି ମନକୁ ସେଥିରୁ ଦୂରେଇ ରଖିବାକୁ । ମାତ୍ର ସେଥିରେ ତୃଷ୍ଣା ପ୍ରଶମିତ ହେବା ବଦଳରେ ଦିନକୁ ଦିନ ବଢ଼ିଲା । ତେଣୁ ମୁଁ ଇନ୍ଦ୍ରିୟ ଆସକ୍ତି ପାଖରେ ହାର ମାନିଲି ମାତ୍ର ତୋ' ଭାଉଜ ଏବେ କୌଣସି ସମ୍ପର୍କକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହଁନ୍ତି ।

- ମୁଁ ତା' ହେଲେ କ'ଣ କରିପାରିବି ?

- ତୁ ତାକୁ ଟିକେ ବୁଝା । ମୁଁ ମୋ ଭୁଲ ମାନି ନେଲିଣି, ଗତ କଥାର ଇତି ହେଉ ।

- ସେ କ'ଣ ମୋ କଥା ରଖିବେ ?

- ମୁଁ ଆଶା କରୁଛି ରଖିବେ ବୋଲି ।

ସୋମୁଭାଇର କଥା ରଖି ମୁଁ ତାଙ୍କ ସାଙ୍ଗରେ ଗଲି । ମାତ୍ର ସେଠାରେ ପହଞ୍ଚି ଯାହା ଦେଖିଲି ସେଥିରେ ହସ୍ତକ୍ଷେପ କରିବାର ସାହସ କରିପାରିଲି ନାହିଁ । ଆମେ ପହଞ୍ଚିବା ବେଳକୁ ଭାଉଜ ବସିଥିଲେ ସନ୍ଧ୍ୟା କାଳୀନ ଧ୍ୟାନରେ । ମୋତେ ଲାଗୁଥିଲା ତାଙ୍କର ଧ୍ୟାନସ୍ଥ ମୁଦ୍ରାରୁ ଯେମିତି ଗୋଟିଏ ଜ୍ୟୋତି ଉକୁଟୁଛି । ତାଙ୍କର ମୁଖମଣ୍ଡଳ ଥିଲା ପ୍ରଶାନ୍ତ ଓ ଋଷି ପ୍ରତିମ । ତାଙ୍କର ଧାନ ସରିବାଯାଏ ମୁଁ ବସି ରହିଲି ସେଠାରେ କୃତ୍ରିମ ଧାନରେ ।

ସେ ଧାନରୁ ଉଠିବା ପରେ ମୁଁ ତାଙ୍କୁ ପ୍ରଣାମ କଲି । ସେ ଆଶୀର୍ବାଦ ମୁଦ୍ରାରେ ମୋତେ କହିଲେ - ଜଗତ୍‌ଜନନୀ ତୁମର ମଙ୍ଗଳ କରନ୍ତୁ । ହଠାତ୍ ତୁମର ଆଗମନ ଏଠାକୁ କିପରି ?

- ବହୁତ ଦିନ ହେଲାଣି ଆସି ନଥିଲି ତ ! ତେଣୁ ଭାବିଲି ଏଥର ତୁମକୁ ସାକ୍ଷାତ କରିବାକୁ ।

- ହଉ ଆସ, ଆଶ୍ରମ ପରିସରରେ ଟିକେ ବୁଲ । ତାଙ୍କ ସହ ଆଶ୍ରମ ବୁଲିବା ବେଳେ ମୁଁ କହିଲି - ମୁ ଗୋଟେ ବିଶେଷ କାର୍ଯ୍ୟରେ ଆସିଥିଲି ଭାଉଜ ।

ସେ ମୋର କାର୍ଯ୍ୟ କ'ଣ ଜାଣିବାକୁ ବିଶେଷ ଉତ୍ସୁକତା ନ ଦେଖାଇ କହିଲେ - ଚାଲ, ଆଗକୁ ଯାଇ ଦେଖିବ ।

ଯାଉ ଯାଉ ସେ ଅଟକି ଗଲେ ଜଣେ ପୋଲିଓଗ୍ରସ୍ତ ଅନ୍ତେବାସୀ ପାଖରେ ଯିଏ କି ବିନା ଆଶ୍ରାବାଡ଼ିରେ ଛିଡ଼ା ହେବା ପାଇଁ ବାରମ୍ବାର ପ୍ରୟାସ କରୁଥିଲା । ଭାଉଜ କିଛି ସମୟ ସେଠାରେ ଛିଡ଼ା ହୋଇ ତାକୁ ଦେଖିଲେ । ତା'ର ବାରମ୍ବାର ତଳେ ପଡ଼ିଯିବା ଦେଖି ସେ ତାକୁ କହିଲେ - "ଇଚ୍ଛାଶକ୍ତି ଦୃଢ଼ କର । ଦେଖିବ ତୁମେ ତୁମ ଲକ୍ଷ୍ୟରେ ପହଞ୍ଚିପାରିବ । ଇଚ୍ଛାଶକ୍ତି ଦୃଢ଼ କରି ନପାରିଲେ ତମେ ନା ଗୋଡ଼ରେ, ନା ଆଶ୍ରାବାଡ଼ିରେ କେଉଁଥିରେ ବି ଛିଡ଼ା ହୋଇପାରିବ ନାହିଁ ।"

ଭାଉଜଙ୍କର କଥାବାର୍ତ୍ତା ମୋତେ ଲାଗୁଥିଲା ଯେମିତି ସେ ଏକ ଅନ୍ୟ ଜଗତର ମଣିଷ । ତେଣୁ ମୁଁ ସାହସ କରିପାରୁ ନଥିଲି ମୋ ଆସିବାର ଉଦ୍ଦେଶ୍ୟ ତାଙ୍କୁ ଜଣାଇବାକୁ । ତାଙ୍କ ସହ ଅନେକ ସମୟ ବୁଲିବା ପରେ ମଧ୍ୟ ମୁଁ କହି ପାରିଲି ନାହିଁ ମୋର ଉଦ୍ଦେଶ୍ୟ ।

ତାଙ୍କଠାରୁ ଫେରି ଆସି ସୋମୁଭାଇଙ୍କୁ କହିଲି – ଦୃଢ଼ ଇଚ୍ଛାଶକ୍ତି ବିନା ତମେ ଯାହା ହେବାକୁ ଚେଷ୍ଟା କରୁଥିଲ ଏବେ ଭାଉଜ ସେଠାରେ ପହଞ୍ଚି ସାରିଛନ୍ତି । ଏବେ ତମର ଇଚ୍ଛା ପୂରଣ ନହେବାରୁ ତମେ ଯେଉଁଠିକୁ ଫେରିବାକୁ ଚେଷ୍ଟା କରୁଛ ଭାଉଜ ସେ ସମ୍ପର୍କଠାରୁ ବହୁତ ଦୂରରେ ଏବଂ ତାଙ୍କୁ ଫେରାଇ ଆଣିବାର ତମର ପାର୍ଥିବ ଅଭୀପ୍‌ସାର ବହୁ ଊର୍ଦ୍ଧ୍ୱରେ । ତାଙ୍କୁ ଏବେ ତମର ସମ୍ପର୍କର ପରିଧିକୁ ଫେରାଇ ଆଣିବା ମୋର ସାଧ୍ୟାତୀତ । ସେ ଏଇନା ଇନ୍ଦ୍ରିୟଜୟୀ ଋଷୀତୁଲ୍ୟ । ତାଙ୍କର ଦିବ୍ୟଦ୍ୟୁତି ପାଖରେ ମୁଁ ନିଜକୁ ଏତେ କ୍ଷୁଦ୍ର ମନେକଲି ଯେ ଏମିତି ଏକ ପ୍ରସ୍ତାବ ଉପସ୍ଥାପନ କରିବାକୁ ମଧ୍ୟ ମୋର ବିବେକ ବାଧା ଦେଲା ।

– ତେବେ... ?

– ସୋମୁଭାଇ, ମୁଁ ଭାବୁଛି ତମର ଗୁରୁଙ୍କ ଉପଦେଶ ନିଶ୍ଚୟ ଅଲଗା ଥିଲା ମାତ୍ର ତମେ ତାକୁ ଠିକ୍ ଭାବରେ ଗ୍ରହଣ କରିପାରିଲ ନାହିଁ ।

– ମାନେ !

ବିଷୟାଗତ ଜଗତରେ ରହି ଯଦି ତମେ ବିଷୟାସକ୍ତ ନହେଲ ତେବେ ତମେ ଯୋଗୀ ପର୍ଯ୍ୟାୟକୁ ଯାଇପାରିବ ଏବଂ ତମ ପାଇଁ ମୁକ୍ତିର ମାର୍ଗ ଉନ୍ମୁକ୍ତ ହେବ । ମାତ୍ର ତମେ ବିଷୟାସକ୍ତ ନହେବା ବଦଳରେ ବିଷାସକ୍ତ ହୋଇଗଲ । ତମ ଉପେକ୍ଷାର ବିଷକୁ ପାନକରି ଭାଉଜ ତାଙ୍କର ଲକ୍ଷ୍ୟ ବାଛିନେଇ ନୀଳକଣ୍ଠ ସାଜିଗଲେ । ସେ ଏଇନେ କେବଳ ତମ ପହଞ୍ଚର ଊର୍ଦ୍ଧ୍ୱରେ ନୁହଁ, ଆମ ସମସ୍ତଙ୍କ ପହଞ୍ଚର ଊର୍ଦ୍ଧ୍ୱରେ । ସେ ଏବେ ଏକ ଦୂର ନକ୍ଷତ୍ର ଯାହାଙ୍କୁ କେବଳ ଅନୁଭବ କରିହେବ, ଛୁଇଁ ହେବନି । ଆଉ ସେଠାକୁ ହାତ ବଢ଼ାଇ ଲାଭ ନାହିଁ ।

ଏହାର କିଛି ବର୍ଷ ପରେ ଶୁଣିଲି ସୋମୁଭାଇ ଆଚାର୍ଯ୍ୟ ସୌମ୍ୟାନନ୍ଦ ହୋଇ ଗୋଟେ ଆଶ୍ରମରେ ଅଛି ଏବଂ ଭୋଗବାଦୀ ଯୋଗର ଏକ ପ୍ରବୀଣ ପ୍ରବକ୍ତା ପାଲଟି ଯାଇଛି ।



# ଯାଯାବରର ଘର

ବିଶ୍ୱାବସୁ ଶବର । ସଂକ୍ଷିପ୍ତରେ ବିଶୁ ଶବର । ପତ୍ନୀ ହେମ ଶବର । ସଂକ୍ଷିପ୍ତରେ ଓ ଶ୍ରଦ୍ଧାରେ ହେମ କାଚରାଣୀ ।

ପିଠିରେ ସାତ ଆଠ ମାସର ପୁଅକୁ ବୋକ୍‌ଚା କରି, ମୁଣ୍ଡରେ ପାଣିକାଚ ଭର୍ତ୍ତି ବେତଟୋକେଇ ମୁଣ୍ଡାଇ ଘୂରି ବୁଲୁଥାଏ ଗାଆଁକୁ ଗାଆଁ ।

କାନ୍ଧରେ ଅନଳ ନଳର ବିଡ଼ା, କାଠବାହୁଙ୍ଗୀରେ ଥାକ ଥାକ ହୋଇ ସିକାରେ ଲଦା ହୋଇଥିବା ବଡ଼ସାନ ପେଡ଼ି ଚାରିଟା, ପେଡ଼ି ଉପରେ ବେକରେ ସରୁ ପଟିରେ ସୂତୁଲିରେ ବନ୍ଧା ଗୋଟେ ନେଉଳ ଧରି ବିଶୁ ବୁଲେ ପାରିଧିରେ ।

ବିଶୁ ଶବରର ପାଞ୍ଚ ଭାଇ । ଭାଇମାନେ ଭିନ୍ନେ ହୋଇଗଲା ପରେ ବିଶୁ ଭାଗରେ ପଡ଼ିଥିଲା ପାଞ୍ଚ ଖଣ୍ଡ ଗାଆଁ । ଅବଶ୍ୟ ସେମାନଙ୍କର ଭିନ୍ନେ ହବାଟା ବା କଅଣ ? କେଉଁ ଜମିଜମା, ଘରଦ୍ୱାର ଯେ ଭାଗବଣ୍ଟରା ହୋଇଥାଆନ୍ତା । କାହିଁ କେତେ ପୁରୁଷରୁ ଯାଯାବର । ସବୁ ଗାଆଁରେ ଘର, ସବୁ ଗାଆଁ ପାଇଁ ପର । ମାଆ ପିଠିର ବୋକ୍‌ଚାରୁ ଓହ୍ଲାନ୍ତି ସିଧା ସଂସାରକୁ । ମୂଷା, ନେଉଳର ଖେଳ ଦେଖାଉ ଦେଖାଉ ସାପ ମନ୍ତର ଶିଖା । କାନ୍ଧରେ ସଜା ହୁଏ ସାପ ପେଡ଼ି ଓ ଲାଖ ନଳ ।

ଏଇ ପାଞ୍ଚଖଣ୍ଡ ଗାଆଁ ବିଶୁ ଓ ହେମର ପୃଥିବୀ । କାନ୍ଧରେ ପେଡ଼ି ସଜାଇ ବିଶୁ ବାହାରେ ସାପ ଖେଳ ଦେଖାଇ ତ, ମୁଣ୍ଡରେ କାଚର ବେତା ମୁଣ୍ଡାଇ ହେମ ଯାଏ କାଚ ବେପାର କରି । ସବୁଦିନ ଯେ ବେପାର ଠିକ୍ ହୁଏ ସେକଥା ନୁହଁ । ବେପାର ମାନ୍ଦା ଦେଖିଲେ ହେମ ଯଦି କେବେ କହୁଥିଲା – କ'ଣ ଏଇ ପାଞ୍ଚଟା ଗାଆଁରେ ନିରିଖ ମାରି ନଟୁ ପରି ଏହାରି ଭିତରେ ଘିର୍ ଘିର୍ ହୋଇ ବୁଲିଲେ ପେଟ ପୂରିଯିବ ? ଆମେ ତ ଯାଯାବର, ଆମ ସାତ ପୁରୁଷ ତ ଯାଯାବର ଥିଲେ, ଚାଲୁନୁ ଏହାର ସୀମା ଡେଇଁ ଦୂରଦୂରାନ୍ତକୁ ଯିବା । ନୂଆ ଜାଗାକୁ ଗଲେ ଲୋକଙ୍କୁ ତୋ ଖେଳ ଦେଖା ନୂଆ ବି ଲାଗନ୍ତା ଏବଂ ମୁଁ ମୋର କାଚ ବିକିବାକୁ ନୂଆ ଗରାଖ ପାଆନ୍ତି । ତୋର ସେଇ

ଏକା ଖେଳକୁ ବାର ବାର ଦେଖି ଲୋକେ ଏଠି ବିଜାର ହେଲେଣି, ଆଉ ମୋର ଏ ବେପାର କ'ଣ ଡାଲି, ତେଲ, ଲୁଣ କଥା ଯେ ଲୋକଙ୍କର ସବୁଦିନ ଦରକାର ?

: ହଁ ଯେ, ମାଡ଼ି ମାଡ଼ି ଆମର ଅଢ଼େଇଟା ପେଟ ତ । ଏ ପାଞ୍ଚଟା ଗାଆଁରେ କ'ଣ ଆମ ପେଟ ଅପୂରା ରହିଯିବ । ମୋ ଭାଗରେ ପଡ଼ିଥିବା ଗାଆଁକୁ ଛାଡ଼ି କରିଗଲେ ଅନ୍ୟ ଲୋକ ମାଡ଼ି ବସିବେନି ?

: ମଲା ଏ ଗାଆଁ ଯେମିତି ତୋର ବୁଆର ଜମିଦାରୀରେ ଥିଲା, ଆଉ ସେ ଜମିଦାରୀ ଭାଗ ହୋଇ ତୋ ଭାଗରେ ଏଇଟା ପଡ଼ିଛି । ଏ ପାଞ୍ଚଟା ଗାଆଁ କାହିଁକି, ଆକାଶକୁ ବି ଭାଗ କରି ଦେଇଥିବ ତୋ ବୁଆ, ଯାଉନୁ ତୋ ରାଇଜ ଠିକ୍ ଅଛି କି ନାଇଁ ଘେରାଏ ଉଡ଼ି ଆସିବୁ ।

: ତୁଇ ଥଟ୍ଟା କରୁଛୁ, କର । ହେଲେ ଗୋଟିଏ କଥା କହ ତ, ତୋ ପେଟ କେବେ ଅପୂରା ରହିଛି କି ? ମୁଁ ଖେଳ ଦେଖାଇ ଗାଆଁମାନଙ୍କରୁ ଚାଉଳ, ବିରି, କୋଳଥ, ମାଣ୍ଡିଆ ଯାହା ପାଇଛି ଆଣିଛି । ଗାଆଁମାନଙ୍କର କିଆ ଗୋହିରୀରୁ ଗୋଧି ମାରିଛି, ନଳବଣରୁ ବଗ, ତୋଟାରୁ ଚଢ଼େଇ, ଗଡ଼ିଆ ପୋଖରୀରୁ ଧଣ୍ଡ, କେଳା ପାଇଁ ଅଭକ୍ଷ୍ୟ କ'ଣ ଯେ ପେଟ ଅପୂରା ରହିବା ନା ଅପୋଷା ରହିବ । ଏଇ ଗାଆଁଗୁଡ଼ା ଏମିତି ମୁହଁଚିହ୍ନା ହୋଇଗଲାଣି ଯେ ଏଠି ଆଉ ଡରଭୟ ଲାଗୁନି । ହେଲେ ତୁ ମାଇପି ଲୋକ, କାହୁଁ ଜାଣିବୁ ଯେ ଏବେକାର ବେଳକାଳ କେମିତି ? ପୁରୁଣା ଶାଢ଼ି କିମ୍ବା ଛିଣ୍ଡା ତମ୍ବୁତଳେ ରାତି ଏବେ ତୋ ପାଇଁ ନିରାପଦ ନୁହଁ, ଅଚିହ୍ନା ଜାଗାରେ । କେତେବେଳେ କେଉଁ ଛଟକରେ ତମ୍ବୁ ତଳେ ଢମଣା ପଶିଯିବ ତୁ ଜାଣିପାରିବୁ ନାହିଁ । ଭାଗ୍ୟ ସିନା ତତେ କେଲୁଣୀ କରି ଦେଇଛି, ହେଲେ ରୂପ ଦେଲା ବେଳକୁ ବୋଧେ ଭୁଲିଗଲା ଭଗବାନ ।

ନିଜ ରୂପର ପ୍ରଶଂସାରେ ଲାଜେଇଗଲା ହେମ । ଗିରସ୍ତର ମନ ରଖି କହିଲା, ହଉ ତୋର ଯେଉଁଠି ମନ, ମୁଁ ମନା କରିବି କାହିଁକି । ହେଲେ ଗୋଟିଏ କଥା କରୁନୁ, ଯଦି ଯାଯାବର ଜୀବନ ଛାଡ଼ି ଆମେ ଏଇ ଗାଆଁମାନଙ୍କ ଭିତରେ ବୁଲିବା ତେବେ ଗୋଟିଏ ପଡ଼ିଆ ଜାଗା ଦେଖି କୁଡ଼ିଆଟିଏ ନମାରି ବାରମ୍ବାର ତମ୍ବୁ ଉଠାଉଥିବା କାହିଁକି ?

: ତୁ ସ୍ଥାୟୀ ବାସିନ୍ଦା ହେବା କଥା କହୁଛୁ ତାହେଲେ । ଯାଯାବରର ଘର ।

: ମୁଁ କ'ଣ ତୋତେ ମହଲ ତିଆରି କରିବାକୁ କହୁଛି ? ଏଇ ଖରା, ବର୍ଷା, ଶୀତ, କାକରରୁ ରକ୍ଷା ପାଇଁ ମୁଣ୍ଡ ଉପରେ ଗଳାଛପର ନ ହେଲା ନାହିଁ, ବରଡ଼ା ଛପର ଖଣ୍ଡେ ... ଯୁଆଡ଼େ ଘୂରିଲେ ବି ସନ୍ଧ୍ୟାକୁ ସେଇ ଠାବକୁ ଫେରି ଆସନ୍ତେ ।

ହଉ ମୁଁ ଆଖି ପକାଇବି, ମନ ପସନ୍ଦର ନିଛାଟିଆ ଜାଗାଟେ ମିଳିଲେ, ଯାଯାବର ଜୀବନରୁ ସ୍ଥାୟୀ ବାସିନ୍ଦା ହୋଇଯିବା ।

ବିଶୁକୁ ଜାଗା ପାଇଁ ବେଶି ଖୋଜାଖୋଜି କରିବାକୁ ପଡ଼ିଲାନି । ନଈକୂଳରେ ମରାଡାହାଣୀ ପଡ଼ିଆ । ପଡ଼ିଆ ବୋଇଲେ ଗାଆଁ ଶ୍ମଶାନ । ବୁଦିବୁଦିଆ ବଣରେ ଭର୍ତ୍ତି । ପଡ଼ିଆ ପରେ ନଈବନ୍ଧ । ବନ୍ଧକୁ ଲାଗି ଅନାବାଦୀ ଓ ଗାଆଁ ଗୋଚର ଭାବେ ବିରାଟ ପଡ଼ିଆଟେ । ବନ୍ଧ କଡ଼ରେ ବିରାଟ ଏକ ବରଗଛ କାହିଁ କେଉଁ ଅନାଦି କାଳରୁ ଠିଆ ହୋଇଛି । ବିଶୁକୁ ପସନ୍ଦ ହେଲା ଜାଗାଟା । ସେ ପ୍ରଥମେ ତମ୍ବୁ ଟାଣିଲା ଗଛମୂଳେ । ତମ୍ବୁରେ ରହି ଆମଜାଇବାକୁ ଚାହିଁଲା କେମିତି ଲାଗୁଛି ସେ ଜାଗାଟା ତାକୁ ।

ତମ୍ବୁ ତଳେ ପ୍ରଥମ ରାତି ପରେ ବିଶୁ ପଚାରିଲା ହେମକୁ – କେମିତି ଲାଗୁଛି ତତେ ଏ ଜାଗା ?

– କ'ଣ କିଣିବୁ ନା କ'ଣ ଏ ଜାଗାକୁ ?

– ଆଲୋ ଇଏ ପରା ଅନାବାଦୀ, ଗୋଚର ଜାଗା, ଯାକୁ କିଏ କିଣିବ ?

– ଆଉ ପଚାରୁଛୁ କାହିଁକି ?

– ନାଇଁ, ଜାଗା ତୋର ଯଦି ପସନ୍ଦ ହେଉଥିବ, ତେବେ ଗାଆଁବାଲାଙ୍କୁ କହି ମୁଁ ଏଠି ପଲାଟିଏ ମାରିବି ।

ପସନ୍ଦ କାହିଁକି ହେବନି, ଗାଆଁର ସାହି ବସ୍ତିଠାରୁ ଦୂରରେ, ପାଖରେ ନଈ, ସବୁ ତ ସୁବିଧା ଏଠି ।

ଗାଆଁବାଲା ବି କାହିଁକି କିଏ ବିରୋଧ କରିଥାଆନ୍ତେ । ବିଶୁ ମାରିଲା ପଲାଟିଏ । ଯୋଗ ଦେଖ ସେ ବର୍ଷ ଜନଗଣନାରେ ମାଷ୍ଟ୍ର ଚଢ଼ାଇ ଦେଲା ତା' ନାଆଁ, ଗାଆଁର ବାସିନ୍ଦା ବୋଲି । ଯାଯାବରରୁ ସ୍ଥାୟୀ ବାସିନ୍ଦା ହୋଇଗଲା ବିଶୁ । ଭୋଟର୍ କାର୍ଡରେ ବି ନାଆଁ ଉଠିଲା ।

ବିଶୁର ବୟସ ବଢ଼ୁଥିଲା ବୋଲି, ଅବା ସେ ଆଗ୍ରହ ହରାଇ ବସୁଥିଲା ବୋଲି ଧୀରେ ଧୀରେ ସାପ ଖେଳରୁ ମନ ମାରି ନେଉଥିଲା । ହେମ ଯଦି କେବେ ପଚାରୁଥିଲା – ଆଉ ଆଗ ଭଳି ତ କାହିଁ ନିତି ନିତି ପେଡ଼ି ଧରି ବୁଲିବାକୁ ମନ କରୁନୁ, ବିଶୁ କହେ

ଏବେ ତ ମୁଁ ଆଉ ଯାଯାବର ନୁହଁ, ଯାଯାବର ଭଳି ବୁଲୁଥିବା ସାପମାନଙ୍କ ସହ ସାଙ୍ଗ ହୋଇ କାହିଁକି ଖେଳିବି ନା ଖେଳ ଦେଖାଇବି । ମୁଁ ଏବେ ବାସିନ୍ଦା ହେଲିଣି, ମୋର ଗୋଟେ ଘର ଅଛି । ହଁ ଲୋ, ଏବେ ଆଉ କହିପାରିବୁନି ଅନାବାଦିର ଘର ବୋଲି, ଜାଣୁ ସରକାର ମୋ ନାଆଁରେ ଲେଖିଦେଲେଣି ଏ ଜାଗାରୁ ଅଧଗୁଣ୍ଠେ । ରହ ଦେଖିବୁ ଅଳ୍ପ ଦିନରେ ମିଳିଯିବ ପଟ୍ଟା, କ'ଣ ଗୋଟେ ଯୋଜନାରେ ଘର କରିବାକୁ ବି ଟଙ୍କା ଦେବେ । ଯେତେବେଳେ ମୋର ନିଜର ଘର ହେଲାଣି, ମୁଁ ବେଘରିଙ୍କ ପରି ସାପ ଖେଳାଇ ବୁଲିବି କାହିଁକି ? ଏବେ ମୁଁ ଅନ୍ୟ ବେପାର କରିବି ।

– କି ବେପାର କରିବୁ ଶୁଣେ ?

– ମୁଁ ଭାବିଛି ସାପ କାମୁଡ଼ା ପାଇଁ ଗଦ, ଡେଉଁରିଆ ଓ ପିଲାଙ୍କ ପାଇଁ ଟୁଟୁକା ଔଷଧ ଦେବି । ତୋର ତ ଚୁଡ଼ି ବେପାର, ଆମ ଗୁଜୁରାଣ କ'ଣ ମେଣ୍ଟିଯିବନି ?

ସାପ ପେଟ୍‌ରା ଛାଡ଼ି ବିଶୁ କାନ୍ଧରେ ପକାଇଲା ଗୋଟେ ବଡ଼ ବୁଜୁଳା । ବୁଜୁଳା ଭିତରେ ଯାବତୀୟ ଚେରମୂଳି, ଡେଉଁରିଆ ଓ ତାବିଜ୍ ଧରି ବୁଲିଲା ଗାଆଁକୁ ଗାଆଁ । ସାପୁଆ କେଳା ହିସାବରେ ନାଆଁ ଥିଲା ବିଶୁର, ପରିଚୟ ବି ଥିଲା । ସାପ କାମୁଡା ପାଇଁ ଗଦ, ସାପ ଘରକୁ ନ ଆସିବା ପାଇଁ ଗଦ, ପିଲାଙ୍କୁ ନଜର ଲାଗିବା, କାନ ବିନ୍ଧିବା, ଦାନ୍ତ ପୋକ ନ ଖାଇବା ପାଇଁ ଔଷଧ ସହ ଡେଉଁରିଆ ଓ ତାବିଜ ଦେଲା । ଧୀରେ ଧୀରେ ବିଶୁର ବେପାର ଭଲ ଚାଲିଲା । ବିଶୁ ଶବରରୁ ସେ ପାଲଟିଗଲା ବିଶୁ ବଇଦ ।

ଧୀରେ ଧୀରେ ତା' ଔଷଧର କାଟ୍‌ତି ଓ କରାମତି ବଢ଼ିବାରୁ ଭିଡ଼ ଲାଗିଲା ତା' ଘର ପାଖରେ । ଘର ପାଖକୁ ଆସୁଥିବା ଗ୍ରାହକଙ୍କୁ ସମ୍ଭାଳିବାରେ ହୋଇଯାଉଥିଲା ତା'ର ବେପାର । ତେଣୁ ବିଶୁ ଚିନ୍ତା କଲା ଏବେ ଆଉ କାନ୍ଧରେ ବୁଜୁଳା ପକାଇ ଗାଆଁ ଗାଆଁ ବୁଲିବା ଅପେକ୍ଷା ଘର ପାଖରେ ପସରା ମେଲାଇବା ଭଲ ।

ବିଶୁ ବଇଦ ଘର ପାଖରେ ପସରା ମେଲାଇବାରୁ ହେମ କାଚରାଣୀକୁ ବି ତର ମିଳିଲାନି ଘରର ଯାବତୀୟ କାମ କାର୍ଯ୍ୟ ସାରି କାଚ ପସରା ଧରି ଗାଆଁ ଆଡ଼େ ଯିବା ପାଇଁ । ଯେଉଁ ସ୍ତ୍ରୀଲୋକମାନେ ସେମାନଙ୍କ ପିଲାଛୁଆଙ୍କୁ ଧରି ବିଶୁ ପାଖକୁ ଔଷଧ ପାଇଁ ଆସୁଥିଲେ, କାମ ସରିବା କ୍ଷଣି ହେମ କାଚରାଣୀର କାଚ ପସରାକୁ ଦେଖୁଥିଲେ କିଣିବା ପାଇଁ । ଗାଆଁକୁ ଗାଆଁ ବୁଲି ଯେତେ ମୁଠା କାଚ ସେ ବିକି ନ ପାରନ୍ତା, ତା'ଠାରୁ ଢେର୍ ଅଧିକ କାଚ ବିକିଲା ଘର ପାଖରେ । ଘର

କାମକୁ ଘର କାମ, ବିଶୁ ଓ ପିଲାର ଦେଖରେଖ ସହ ତା' ବେପାର ଠିକ୍ ଚାଲୁଥିବାରୁ ହେମର ବି ମନ ଖୁସି ।

ସବୁ ଠିକ୍‌ଠାକ୍ ଚାଲିଥିବା ବେଳେ ଆସିଲା ଗ୍ରାମ ପଞ୍ଚାୟତ ଓ ପଞ୍ଚାୟତ ସମିତି ନିର୍ବାଚନ । ନୂଆ ନିୟମ ଅନୁଯାୟୀ ସମିତି ସଭ୍ୟ ସିଟ୍‌ଟି ପଡ଼ିଥିଲା ଆଦିବାସୀ ମହିଳାଙ୍କ ପାଇଁ ସଂରକ୍ଷିତ ଆସନରେ । ସମିତି ସଭ୍ୟ ପାଇଁ ମନ ବଳାଇ ବସିଥିବା ବହୁ କୁଜି ନେତାଙ୍କ ମନ ଆମ୍ପିଳା ହେଲା । ଦଳ ତରଫରୁ ଖୋଜାଗଲା ଜଣେ ଆଦିବାସୀ ମହିଳା ଯାହାଙ୍କୁ ପ୍ରାର୍ଥୀ କରାଯିବ । ହେଲେ ଉପକୂଳବର୍ତ୍ତୀ ଅଞ୍ଚଳରେ ଆଦିବାସୀ ମହିଳା ବା ଆସିବେ କାହୁଁ, ସମିତି ସଭ୍ୟ ପାଇଁ ପ୍ରାର୍ଥୀ ହେବେ । ତନଖି କରାଗଲା ଭୋଟର ଲିଷ୍ଟ । ଶେଷକୁ ମିଳିଲେ ମାତ୍ର ଦୁଇଜଣ - ବିଶ୍ୱାବସୁ ଶବର ଓ ହେମ ଶବର ।

ସବୁଦଳର ନେତାମାନେ ଧାଇଁଲେ ବିଶୁ ପାଖକୁ । ସମସ୍ତେ ଜାଣୁଥିଲେ ଯେହେତୁ ଏଠାରେ ଆଉ କେହି ଆଦିବାସୀ ମହିଳା ନାହାନ୍ତି, ଯେଉଁ ଦଳରୁ ହେମ ଶବରକୁ ପ୍ରାର୍ଥୀ କରାଯିବ, ସେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତା ହେବ । ସମସ୍ତେ ବୁଝାଉଥିଲେ ବିଶୁକୁ, ହେମକୁ ପ୍ରାର୍ଥୀ କରାଇବା ପାଇଁ । ବିଶୁ କିଛି ବୁଝି ନଥାଏ - ଏ ରାଜନୀତି କ'ଣ, ସମିତି ସଭ୍ୟା କ'ଣ ? ଏତେ ଏତେ ଜ୍ଞାନୀ, ଗୁଣୀ, ଧନୀ ଲୋକଙ୍କ ସ୍ତ୍ରୀମାନେ ଥାଉଁ ଥାଉଁ ହେମକୁ କାହିଁକି ଠିଆ କରାଇବାକୁ ସେମାନେ ଅନୁରୋଧ କରୁଛନ୍ତି ? ସମସ୍ତଙ୍କ କଥା ଶୁଣି ବିଶୁ କେବଳ ଏତିକି କହେ - ଆଜ୍ଞା ମହାପ୍ରଭୁମାନେ, ଭୋଟର୍ ଲିଷ୍ଟରେ ଆମ ନାଆଁ ଲେଖାଇବା ବେଳେ ସେ ମାଷ୍ଟ୍ର ଆଜ୍ଞା କହିଥିଲେ, କ'ଣ ଗୋଟେ ଯୋଜନାରେ ଘର ଖଣ୍ଡେ କରାଇଦେବେ ବୋଲି । ପାରିବେ ଯଦି ସେଥିରୁ ଖଣ୍ଡେ କରାଇ ଦିଅନ୍ତୁ, ଆମେ ବା କ'ଣ ଜାଣୁ ରାଜନୀତି ? ସେ ଝମେଲାରେ ଆମକୁ କାହିଁକି ପୂରାଉଛନ୍ତି ? ସାତ ପୁରୁଷରୁ ଯାଯାବର ଆମେ, ମନ ବଳିଲାରୁ ମୁଣ୍ଡ ଗୁଞ୍ଜିବାକୁ ପଲା ଖଣ୍ଡେ ମାରିଛୁ ।

ଆରେ କଥାରେ କହନ୍ତିନି - ଯାହାକୁ ସୁନା ଅଖାଅଖା, ତାକୁ ପିତ୍ତଳ ଆଇଛି ବିକା । ତମ ସ୍ତ୍ରୀ ସମିତି ସଭ୍ୟା ହୋଇଗଲେ, ତାଙ୍କ ପାଖରେ ଧାଡ଼ି ଲାଗିବ ଇନ୍ଦିରା ଆବାସରେ ଘର ପାଇବା ପାଇଁ, ତମେ କ'ଣ ଏବେ ମୁଣ୍ଡ ଗୁଞ୍ଜିବାକୁ ଘର ଖଣ୍ଡେ କରାଇଦିଅ ବୋଲି କହୁଛ ?

ବିଶୁ ଆଖିରେ ଲାଗିଲା ସ୍ୱପ୍ନ । ଗୁମ୍ ମାରି କିଛିକ୍ଷଣ ଚିନ୍ତା କଲା ପରେ କହିଲା - ହଉ ଆଜ୍ଞା । ଆପଣମାନଙ୍କ କଥା ରହିଲା, ଏଇଟା ତ ମୋ କଥା ନୁହେଁ ଯେ ମୁଁ ହଁ ବୋଲି କହିଦେବି । ମୁଁ ମୋ ସ୍ତ୍ରୀକୁ ପଚାରେ, ସେ ତିରିଲା ଲୋକ, ଏତେ

ଦାୟିତ୍ୱକୁ ଯଦି ନେଇ ଉଠାଇ ପାରିବ ବୋଲି ରାଜି ହୁଏ ତେବେ ମୁଁ ଆପଣମାନଙ୍କୁ ଜଣାଇବି ।

ରାଜି ହେବନି କ'ଣ ? ରାଜି କରାଇବ ନା । କହିବ ତାଙ୍କ ରାଶିନକ୍ଷତ୍ରରେ ରାଜରାଣୀ ଯୋଗ ଅଛି, ସେ କାଚରାଣୀ ହୋଇ କାହିଁକି ପଡ଼ି ରହିବେ ?

ହଉ ଆଜ୍ଞା । ଆମେ ଦୁହେଁ ବିଚାରବିମର୍ଶ କରି ଜଣାଇବୁ । ସେ ଯଦି ପାରିବ ରାଜି ହେବ ।

ଏଠି ପାରିବା ନ ପାରିବା କଥା କାହିଁକି ଭାବୁଛ ? ତାଙ୍କୁ କାମ କରିବାକୁ କେହି କହିବେ ନାହିଁ, ସେ ଦାୟିତ୍ୱ ଆମର । ତାଙ୍କ ନାଆଁରେ ଆମେ ସବୁ କାମ କରିଦେବୁ ।

ବିଶୁଠାରୁ ସବୁ କଥା ଶୁଣି ଠୋ ଠୋ କରି ହସିଲା ହେମ । ହସ ବନ୍ଦ ହେବାରୁ କହିଲା, ରାତିରେ ସପନ ଦେଖନ୍ତି ବୋଲି ଜାଣିଛି, ହେଲେ ଏମିତି ଦିନଟାରେ ଚେଇଁକି କିଏ ସପନ ଦେଖେ ଦେଖି ନଥିଲି । ସେ ରାଜନୀତି କିଏ ଆମେ କିଏ ? ମୁଁ ବା କ'ଣ ଜାଣିଛି ? ହଉ ହେଲା – ଆମ ଜାତିଟା ଆଦିବାସୀ ହୋଇଗଲା ବୋଲି କ'ଣ ଏତେ ମାନ୍ୟର ଲୋକ ଥାଉଁ ଥାଉଁ ଆମେ ସେ କାମକୁ ମୁଣ୍ଡାଇପାରିବା ? ମୁଁ ତ ବାବା ପାରିବିନି, ତୁ ଯଦି ପାରିବୁ ତୋର ହଅଁ ମାର୍ ।

ଆଲୋ ! ଇଏ କ'ଣ ମୋ କଥା ହୋଇଛି ଯେ ହଅଁ ମାରିଦେବି ? ମୋ କଥା ହୋଇଥିଲେ ବିଚାରବିମର୍ଶ କରି କହିବି ବୋଲି କାହିଁକି କହିଥାଆନ୍ତି ! ଏଇଟା ପରା ମହିଳା ସିଟ୍ ବୋଲି ସେମାନେ କହୁଥିଲେ, ସେମାନେ ଏକଥା ବି କହିଛନ୍ତି ଯେ କେବଳ ନାଆଁଟା ତୋର ହେବ, କାମ ସବୁ ସେମାନେ ତୁଲାଇବେ ।

ଯଦି ଏକଥା, ମୋତେ କାହିଁକି ପଚାରୁଛୁ ? ତୁ ଯେଉଁଟା ଠିକ୍ ଭାବିବୁ କହିଦେବୁ, ମୁଁ କ'ଣ ତୋ କଥାରୁ ବାହାରି ଯାଉଛି ? ଭଲ ହେଲେ ତୁ ବୁଝିବୁ, ମନ୍ଦ ହେଲ ତୁ ।

X X X X X X

ହେମ ଶବର ନିର୍ଦ୍ୱନ୍ଦ୍ୱରେ ଶାସକ ଦଳର ସଦସ୍ୟା ଭାବେ ସମିତି ସଭ୍ୟା ହେଲା । ଯୋଗକୁ ପଞ୍ଚାୟତ ସମିତିର ଅଧ୍ୟକ୍ଷା ପଦ ବି ଆଦିବାସୀ ମହିଳାଙ୍କ ପାଇଁ ସଂରକ୍ଷିତ ଥିବାରୁ ସେଥିରେ ବି ବିନା ପ୍ରତିଦ୍ୱନ୍ଦ୍ୱିତାରେ ଜିଣିଗଲା । ଘଟୁଥିବା ଘଟଣାକ୍ରମ ବି କୌଣସି ପରୀ କାହାଣୀଠାରୁ ଊଣା ଲାଗୁ ନଥିଲା ତାକୁ । ହେମ କାଚରାଣୀରୁ ହେମ ମ୍ୟାଡାମ୍ ଯାଏଁ ଏ ଯାତ୍ରାକୁ ହାତୀ ସୁନା କଳସ ଢାଳିବା ନ୍ୟାୟରେ ଗ୍ରହଣ କରୁଥିଲା ସିଏ ।

ନିଜ ସ୍ତ୍ରୀର ଏ ସଫଳତାରେ ପ୍ରଥମେ ପ୍ରଥମେ ଖୁସି ହେଉଥିଲା ବିଶୁ । ଯାହା ତା' ପାଇଁ ଏକଦା ସ୍ୱପ୍ନ ସଦୃଶ ଥିଲା - ଗାଡ଼ି, ଘୋଡ଼ା, ଥାଟ୍‌ବାଟ୍ ସବୁକୁ ଏକା ସଂଗରେ ପାଉଥିଲା ସିଏ । ସରକାରୀଗାଡ଼ି ହେମକୁ ନବାକୁ ଆସିବା କ୍ଷଣି ପ୍ରଥମେ ସଜିଲ୍ ହୋଇ ବସିଯାଉଥିଲା ବିଶୁ ଗାଡ଼ି ଭିତରେ । ହେମକୁ ବି ଭଲ ଲାଗୁଥିଲା ଗାଡ଼ି ଭିତରେ ବିଶୁର ସଖ୍ୟ । ହେଲେ ସେ ଭଲ ଲାଗିବାଟା ବେଶି ଦିନ ରହିଲା ନାହିଁ । ଧୀରେ ଧୀରେ ସେ ମିଶିଲା ବଡ଼ ବଡ଼ ନେତାଙ୍କ ସହ, ମନ୍ତ୍ରୀଙ୍କ ସହ । ସେମାନଙ୍କ ସହ ଯିବା ଆସିବା କଲା ସେମାନଙ୍କ ଗାଡ଼ିରେ ।

କିଛି ଦିନ ଗଲାପରେ ସରକାରୀ ଗାଡ଼ି ଆସିଲେ ତାକୁ ନେବା ପାଇଁ, ବିଶୁକୁ ସଜିଲ୍ ହେଉଥିବା ଦେଖି ସେ କହିଲା – ତୁ ତୋର କାମଧନ୍ଦା ଛାଡ଼ି ଆଉ କେତେଦିନ ମୋର ପଛ ପଛ ହେଉଥିବୁ, ବରଂ ଭଲ ହେବ ତୁ ଏବେ ଘରଦ୍ୱାର ଦାୟିତ୍ୱ ସମ୍ଭାଳ, ପିଲାଟାକୁ ବି ହେପାଜତ କର । ସେତେବେଳେ ସିନା ନୂଆ ନୂଆ ଥିଲି ସାଙ୍ଗରେ ବାହାରୁଥିଲୁ, ଏବେ ତ ସବୁ ଚିହ୍ନା ହୋଇଗଲେଣି, ସେମାନେ ବି ଢେର ସାହାଯ୍ୟ କରୁଛନ୍ତି । ତୋର ଆଉ ଯିବା ଦରକାର ନାହିଁ ।

ବିଶୁ ବି ବୁଝିଗଲା - ସତକଥା, ସବୁଦିନ ତା' ସାଙ୍ଗ ଗୋଡ଼ାଣିଆ ହେଲେ ଏପଟେ ଘର ସମ୍ଭାଳିବ କିଏ ? ପିଲାଟା ବି ଖୁବ୍ ଛୋଟ, ତା'ର ଦାୟିତ୍ୱ ବି ଅଛି ।

ବିଶୁ ଉପରେ ଘରର ଦାୟିତ୍ୱ ଦେଇ ହେମ ଏବେ ବୁଲୁଥିଲା ଜିଲ୍ଲା ମହକୁମାରୁ ରାଜଧାନୀ ଯାଏ । ଘୂରୁଥିଲା ଏମ.ଏଲ.ଏଙ୍କ ସହ, ଘୂରୁଥିଲା ମନ୍ତ୍ରୀଙ୍କ ସହ । ରହୁଥିଲା ରାଜଧାନୀର ଅତିଥି ଭବନଠାରୁ ବିଭିନ୍ନ ଡାକବଙ୍ଗଳାରେ । ଏକଦା ମନ୍ତ୍ରୀଙ୍କ ସହ ଏକ ଡାକବଙ୍ଗଳାରେ ରାତ୍ରୀଯାପନ ସମୟରେ ଗଭୀର ରାତ୍ରିରେ ଡକାଇ ପଠାଇଲେ ମନ୍ତ୍ରୀ ସାକ୍ଷାତ ଆଲୋଚନା ପାଇଁ । ମନ୍ତ୍ରୀଙ୍କ ଆମନ୍ତ୍ରଣ ସାକ୍ଷାତ ଆଲୋଚନା ପାଇଁ – ଏହାଠାରୁ ବଡ଼ ସୁଖବର କିଛି ନଥିଲା ତା' ପାଇଁ । ସେ ମନ୍ତ୍ରୀଙ୍କ କକ୍ଷରେ ପହଞ୍ଚିବା ବେଳକୁ ସେ ଥିଲେ ସମ୍ପୂର୍ଣ୍ଣ ଏକା । ତାଙ୍କୁ ସମ୍ପୂର୍ଣ୍ଣ ଏକାକୀ ଦେଖି ପ୍ରଥମେ ଟିକିଏ ଛନକା ପଶିଥିଲା ହେମ ଛାତିରେ । ମାତ୍ର ଏ ଭୟ ବେଶିକାଳ ସ୍ଥାୟୀ ହେଲା ନାହିଁ । ସୋଫା ଉପରେ ବସାଇ ମନ୍ତ୍ରୀ ଖୁବ୍ ଆତ୍ମୀୟତାର ସହ କଥା ହେଲେ । କହିଲେ ମୁଁ ଶୁଣୁଛି ତମେ ଏଯାଏଁ କୌଣସି ଠିକାଦର କିମ୍ବା ଅଫିସରଙ୍କଠାରୁ ଟଙ୍କା ଗ୍ରହଣ କରୁନା । ଅବଶ୍ୟ ନକରିବାଟା ଭଲ । ହେଲେ ଖାଲି ହାତରେ କ'ଣ ସଂସାର ଚଳେ ନା ବିନା ଟଙ୍କାରେ ରାଜନୀତି କରିହୁଏ ! ତମ ଜିଲ୍ଲାରେ ଯେତେସବୁ ଉନ୍ନୟନମୂଳକ

କାର୍ଯ୍ୟ ହେବ, ସେଥିରେ ତମର ବି ଗୋଟେ ପଣି ଅଛି । ତମେ ନେଉନା ବୋଲି କହି, ତମକୁ ଦେବାପାଇଁ ଜଣେ ଠିକାଦାର ଦେଇଛନ୍ତି । ରଖ ଏ ଟଙ୍କାକୁ, ତା'ର କାମ ତମ ପାଖକୁ ଗଲେ କରାଇଦେବ ।

ଏକକାଳୀନ ଏତେଗୁଡ଼ିଏ ଟଙ୍କା ଦେଖି ଘାବରାଇଗଲା ହେମ । ନାହିଁ-ନାହିଁ କହୁ କହୁ ମନ୍ତ୍ରୀଙ୍କ ଆତ୍ମୀୟ ସ୍ପର୍ଶରେ ଗ୍ରହଣ କଲା । ଟଙ୍କା ରଖି ସାରିବା ପରେ ମନ୍ତ୍ରୀଙ୍କଠାରୁ ପାନୀୟ । ପାନୀୟ ଗ୍ରହଣ କରୁ କରୁ ଏକ ଚମତ୍କାର ଅନୁଭବ ଆସିଲା ତା' ଭିତରେ । ସେ ସମ୍ପୂର୍ଣ୍ଣ ହୋସ୍‌ରେ ଥିଲା, ଅଥଚ ଉଡ଼ିବା - ଉଡ଼ିବା ପରି ଲାଗୁଥିଲା ତାକୁ । ତା'ର ଉଡ଼ିବା ମୁହୂର୍ତ୍ତରେ ହିଁ ତାକୁ ଧରି ପକାଉଥିଲେ ମନ୍ତ୍ରୀ । କହୁଥିଲେ - ତମର ଏ ରୂପର ଉଚିତ ସମ୍ମାନ ହୋଇନି ଆଜିଯାଏଁ । ଏ ରୂପରେ ଜଣେ ରାଣୀ ହବା ଜାଗାରେ ଗୋଟେ ଶବର ସହ ରହି ଶବରୁଣୀ କିପରି ହେବ ?

ଦ୍ୱିତୀୟ ଥର ପାଇଁ ନିଜ ରୂପର ପ୍ରଶଂସା ଶୁଣି ଖୁବ୍ ଉଲ୍ଲସିତ ହେଲା ହେମ ଅଥଚ ଲାଜରେ ନିଜର ମୁହଁକୁ ଢାଙ୍କିବାକୁ ଚେଷ୍ଟା କରୁଥିଲା । ତା' ମୁହଁ ଉପରୁ ହାତକୁ ହଟାଇ ନେଇ ମନ୍ତ୍ରୀ କହିଲେ - ଏ ଜହ୍ନ ଭଳି ମୁହଁକୁ ମେଘରେ ଢାଙ୍କୁଛ କାହିଁକି ? ମୁଁ ଜମା ମିଛ କହୁନାହିଁ, ତମେ ଯଦି ଚାହଁ ତେବେ ମୁଁ ତୁମକୁ ରାଣୀ କରି ରଖିବି । କ'ଣ ଦେଇଛି ସେ ବିଶୁ ଶବର ତମକୁ ? କି ସମ୍ମାନ ଦେଇଛି ତମର ଏ ରୂପକୁ ? ଏକଥା କହିବା ବେଳକୁ ହେମକୁ ମନ୍ତ୍ରୀ ସମ୍ପୂର୍ଣ୍ଣ ବାହୁ ବେଷ୍ଟନୀରେ ଧରି ସାରିଥିଲେ ।

ବିନା ପ୍ରତିବାଦରେ ମନ୍ତ୍ରୀଙ୍କ ବାହୁବେଷ୍ଟନୀରେ ଥିଲା ହେମ । ଧୀରେ ଧୀରେ ତାଙ୍କ ହାତ ଘୂରିଲା ତା' ଦେହର ଥାନ ଓ ଅଥାନରେ । ପୁଲକିତ ହେଉଥିଲା ହେମ ।

ରାତି ପାହିଲା ବେଳକୁ ବଦଳି ଯାଇଥିଲା ହେମ । ମନେ ପକାଇବାକୁ ଚେଷ୍ଟା କରୁଥିଲା ଜୀବନର ଏମିତି ଏକ ସୁଖଦ ମୁହୂର୍ତ୍ତକୁ । ଯେତେ ମନେ ପକାଇଲେ ବି ଆସୁନଥିଲା ଏମିତି ଏ ମୁହୂର୍ତ୍ତର ଛବି । ପାଲଟଣା ତମ୍ବୁ ତଳର ରାତି ଆଉ ଏ ତୁଳିତଳ୍ପ ଶେଯର ରାତି । ସାପ, ବେଙ୍ଗ, କୁକୁର, ଘୁଷୁରୀଙ୍କ ପରି ଦେହସୁଖ, ଆଉ ଏ ରାଣୀ ପରି ଦେହସୁଖ । ସେସବୁର ତୁଳନା କରୁ କରୁ ହେମ ପାଇଁ ବଦଳିଗଲା ଜୀବନର ପରିଭାଷା ।

ସପ୍ତାହକାଳ ମନ୍ତ୍ରୀଙ୍କ ସହ ଘୂରିବା ପରେ ନିଜ ଘରକୁ ଫେରିଲା ହେମ । ମାଆର ଫେରିବା ବାଟକୁ ଚକେଇ ବସିଥିବା ଛୁଆଟା ଧାଇଁ ଆସିଲା ତା' ପାଖକୁ ।

ଗୋଟିଏ ସମ୍ବେଦନା ଓ ଆଗ୍ରହରହିତ ଭାବେ ହଉ ହଉ ରହରହ, ମୋ ଲୁଗା ଅସନା ହୋଇଯିବ କହି ଆଡ଼େଇଦେଲା ହେମ । ବିଶୁ ପଚାରିଲା - ଏତେଦିନ କୁଆଡ଼େ ରହିଗଲୁ ?

ଦାୟିତ୍ୱ ଦେଇଛନ୍ତି, ତାକୁ ତ ପୁଣି ସମ୍ଭାଳିବି ନା ।

ହଁ ଯେ - ହେଲେ ନିଜ ପିଲାର ଦାୟିତ୍ୱ ପୁଣି ଅଛି ନା ?

ତୁ ନାହୁଁକି ? ରଖ୍ ଏ ଟଙ୍କା - ତୋର ଆଉ ସେ ଚେରମୂଳି ବିକି ବଇଦ ହବା ଦରକାର ନାହିଁ, ତୁ ଏବେ ପିଲାକୁ ସମ୍ଭାଳ ।

ଏକାଥରକେ ଏତେଗୁଡ଼ିଏ ଟଙ୍କା ଦେଖି ବିଶୁ ତୋବ୍‌ବା ହୋଇ ପଚାରିଲା: ଏତେ ଟଙ୍କା ?

ଟଙ୍କା ତ, ଏତେ ଟଙ୍କା କ'ଣ ? ଇଏ ତ ଆରମ୍ଭ ମାତ୍ର, ମନ୍ତ୍ରୀ କହିଛନ୍ତି ଏବେ ଟଙ୍କାର ସୁଅ ଛୁଟିବ ।

ତୁ ତା' ହେଲେ ସେ ସୁଆରେ ଭାସିଯିବୁ ନିଶ୍ଚୟ ।

ନା - ମୁଁ ନୁହେଁ, ତୁ ଭାସିଯିବୁ ।

ଓଲେଇ ଗାଈର ଗୋଠରେ ମନ ନ ଲାଗିବା ପରି ଘରେ ଆଉ ମନ ଲାଗୁନଥିଲା ହେମର । କଷ୍ଟେମଷ୍ଟେ ରାତିଟି କଟାଇ ଦେଇ ସକାଳକୁ ସଜ ହୋଇ ପଡ଼ିଲା ଯିବା ପାଇଁ । ତା'ର ସଜବାଜ ଦେଖି ବିଶୁ ପଚାରିଲା: କ'ଣ ଯିବା ପାଇଁ ବାହାରିଲୁଣି ନା କ'ଣ ?

ହଁ - ସେପଟେ ବହୁତ କାମ, ମନ୍ତ୍ରୀ ତ ଜମା ରାଜି ନଥିଲେ ମୁଁ ଘରକୁ ଆସେ ବୋଲି, ବହୁ କୁହାବୋଲା କରି ରାତିକ ପାଇଁ ଆସିଥିଲି । ଆସିଲି, ଦେଖିଗଲି ତମମାନଙ୍କୁ, ଏବେ ଯେଉଁ ଦାୟିତ୍ୱ ମୋ ଉପରେ ଅଛି ତାକୁ ସମ୍ଭାଳିବି ତ ? ମୁଁ କ'ଣ ଏ ଦାୟିତ୍ୱ ମୋ ନିଜ ଇଚ୍ଛାରେ ନେଇଥିଲି ? ହଁ - ତୋର ପକ୍କା ଘରଟିଏ କରିବାକୁ ଭାରି ଇଚ୍ଛା ଥିଲାନା, ଯେଉଁ ଟଙ୍କା ଦେଇଛି ସେଥିରେ ଘର ଆରମ୍ଭ କର, ମୁଁ ଆହୁରି ପଇସା ଦେବି ପୂରା କରିବାକୁ । ହଁ, ଆଉ ଗୋଟାଏ କଥା, ଏଥର ମୋର ଫେରିବା ମଧ୍ୟ ଡେରି ହୋଇପାରେ, ମୋ ପାଇଁ ବ୍ୟସ୍ତ ହେବୁନି ।

ବିଶୁ କେବଳ ବଲବଲ କରି ଚାହୁଁଥିଲା ହେମ ଆଡ଼େ । ନିଜ ଆଖିକୁ ବିଶ୍ୱାସ କରିପାରୁ ନଥିଲା ଯେ ଏଇ କ'ଣ ସେଇ ହେମ, ଯାହା ସହ ସେ ଏତେ ବର୍ଷ ହେଲାଣି ସଂସାର କରିଥିଲା ! ରାଜନୀତି କ'ଣ ଏମିତି ନିଶା, ଯିଏ ଭୁଲାଇ ଦିଏ ସମ୍ପର୍କକୁ ଓ ସଂସାରକୁ ?

ହେମ ଚାଲିଗଲା ଗାଡ଼ି ଭିତରକୁ । ରାହା ଧରି ପଛରେ ଧାଉଁଥିଲା ଛୁଆଟା । ଗୋଟିଏ କ୍ରୋଧିତ ଚାହାଣୀରେ ବିଶୁକୁ କହିଲା - ଚାହିଁଛୁ କ'ଣ ? ତାକୁ ସମ୍ଭାଳେ ।

ଗଲା ଯେ ଗଲା ହେମ, ବସନ୍ତ ଋତୁ ପରି ତା' ଉପସ୍ଥିତି କେବଳ କେବେ କଦ୍‌ବା ଦଣ୍ଡେ ଘଡ଼ିଏ ପାଇଁ ହେଉଥିଲା ଘରେ, ତାହା କେବଳ ସମ୍ପର୍କ ଦାୟରେ ନଥିଲା, ଥିଲା ରାଜନୈତିକ ବାଧବାଧକତାରେ । ହେମକୁ ନେଇ ଅନେକ କଥା ଶୁଣେ ବିଶୁ, ହେଲେ ଶୁଣା କଥାକୁ ପରତେ ଯାଏନା । ମନକୁ ମନ କହେ ହେମ ସହ ସଂସାର ପୁରୁଣା ନ ହେଲେ ବି ସେତିକି ବର୍ଷର ସଂସାର କ'ଣ କମ୍ କି ମନକୁ ବୁଝିବା ପାଇଁ । ଲୋକେ ଅଦେଖା, ପରର ଶିରୀ ଦେଖନ୍ତି ନାହିଁ । କାଚରାଣୀଟିଏ ଯିଏ ଗାଆଁଗଣ୍ଡା ବୁଲି କାଚ ପିନ୍ଧାଉଥିଲା, ସିଏ ଏବେ ଗାଡ଼ି ଘୋଡ଼ା ଚଢ଼ି ବୁଲୁଛି, କେତେ ଲୋକଙ୍କ ଆଖିରେ ବା ଯିବ ଏ କଥା ?

କେବେ କେମିତି ବସନ୍ତ ପବନ ପରି ଆସୁଥିବା ହେମ, ଶେଷଥର ପାଇଁ ଆସିଥିଲା ବିଶୁ ପାଇଁ ଭୂମିକମ୍ପ ନେଇ । ଦିନେ ସନ୍ଧ୍ୟାରେ ଅଳ୍ପ ସମୟ ପାଇଁ ପହଞ୍ଚି କହିଲା - ମୁଁ ତତେ କେବଳ ଗୋଟେ ପଦ କଥା କହିବା ପାଇଁ ଆସିଛି । ଏବେ ତୋ ରାସ୍ତା ଓ ମୋ ରାସ୍ତା ଅଲଗା ଅଲଗା । ଭାବିଥିଲି ତୋତେ ଏ ବିଷୟରେ କିଛି କହିବି ନାହିଁ ବୋଲି, ହେଲେ ପୁଣି ଭାବିଲି କାହିଁକି ବା ତୋତେ ଭ୍ରମରେ ରଖିବି । ଯେତେବେଳେ ମୁଁ ନିଷ୍ପତ୍ତି ନେଇସାରିଛି, ତୋତେ ଶୁଣାଇ ଦେବାଟା ଠିକ୍ ହେବ । ହଁ - ପୂର୍ବ ସମ୍ପର୍କର ଦ୍ୱାହିରେ ମୁଁ ତୋ ପାଇଁ ଘର ଖଣ୍ଡେ କରାଇଦେବି, ତୁ ପିଲାଟାର ଦାୟିତ୍ୱ ନେଇ ତାକୁ ପାଠପଢ଼ା । ପୁଅ ପିଲାଟା, ବଡ଼ ହୋଇଗଲେ ଗଲା । ତୋର ତ ଜଡ଼ିବୁଟିର ବେପାର ଅଛି, ବେଶ୍ ଚଳିଯିବୁ ।

ସେଦିନ ହେମ କଥାରେ ଭୂମିକମ୍ପ ହେଲା କି ସେ ସାଥିରେ ଭୂମିକମ୍ପକୁ ନେଇକରି ଆସିଥିଲା ବୁଝି ପାରୁ ନଥିଲା ବିଶୁ । ସେ ଚାଲିଗଲା ପରେ ରାତରାତି ଭାଙ୍ଗି ଦେଇଥିଲା ନିଜର ଚାଳିଆକୁ । ଫିଙ୍ଗି ଦେଇଥିଲା ଜଡିବୁଟି, ଡେଉଁରିଆ ଓ ତାବିଜ୍ ସବୁକୁ । ରାତି ପାହିଲା ବେଳକୁ ସେ ଓହ୍ଲାଉଥିଲା ଢିଅ ଉପରୁ, କାନ୍ଧରେ ଥିଲା ସାପପେଡ଼ି, ସାଙ୍ଗରେ ଥିଲା ଠୁକୁ ଠୁକୁ ହୋଇ ଚାଲୁଥିବା ପୁଅ ଓ ତା'ର ଗୋବିନ୍ଦି ମୂଷା ।

ଲୋକେ ତାକୁ ତାଟକା ହୋଇ ଚାହିଁଲା ବେଳେ ସେ ମନକୁ ମନ କହୁଥିଲା - ଯାଯାବରର ଗୋଟେ ଘର କ'ଣ ? ସାପର କ'ଣ ଘର ଥାଏ ? ସିଏ ଯେଉଁ

ଗାତରେ ପଶିଲା ସେଇଟା ତା'ର ଘର । ମୋ ପେଡ଼ି ଖାଲି, ମୁଁ ସାପ ଖୋଜୁଛି ସାପ, ହେଲେ ଏଥର ସାପ ଧରିବା କ୍ଷଣି ମୁଁ ଆଗ ଭାଙ୍ଗିବି ତା' ବିଷ ଦାନ୍ତ, ତା'ପରେ ପୂରାଇବି ପେଡିରେ । ଚାଲ୍‌ରେ ପୁଅ ଚାଲ୍ – ତୋ ମୂଷା ବା କି ଖେଳ ଦେଖାଇପାରିବ, ସାପ ତ ନାହିଁ । ଆଗେ ସାପ ଧରେ ମୁଁ । ତୋତେ ଶିଖାଇବି ସାପଙ୍କୁ ଖେଳାଇବାର କଳା, ଯାଯାବର ହେବାର କୌଶଳ । ହେଲେ ପୁଅ କେବେ ବି କହିବୁ ନାହିଁ, ବାପା ଘର କର ବୋଲି । ଯାଯାବରର ଗୋଟେ କି ଘର ?



# ଦ୍ରୋହକାଳ

ସହରର ଉପକଣ୍ଠରେ ଏ କଲୋନୀ । ଦ୍ରୁତ ଗତିରେ ବୃଦ୍ଧି ପାଉଥିବା ସହରର ବାସିନ୍ଦାମାନଙ୍କ ଗୃହ ଆବଶ୍ୟକତାକୁ ଦୃଷ୍ଟିରେ ରଖି ରାଜ୍ୟ ଗୃହନିର୍ମାଣ ବିଭାଗ ଦ୍ୱାରା ଏହା ଏକ କୋର୍‌ହାଉସ୍ ଯୋଜନା । ଲୋକଙ୍କ ବିଶେଷ କରି ମଧ୍ୟବିତ୍ତ ଲୋକଙ୍କ କଲ୍ୟାଣ ପାଇଁ ଉଦ୍ଦିଷ୍ଟ ଥିବାରୁ ଏ କଲୋନୀର ନାମ କଲ୍ୟାଣ ବିହାର । ଲଟେରୀ ମାଧ୍ୟମରେ ଆବଣ୍ଟନ କରାଯାଇଛି ଘରସବୁ । କ୍ଷମତା ସ୍ରୋତରେ ଥିବା ଚାଲାଖ ଚାକିରିଆମାନେ ଭବିଷ୍ୟତକୁ ଦୃଷ୍ଟିରେ ରଖି ଏବଂ ସମ୍ପୂର୍ଣ୍ଣ ବ୍ୟବସାୟିକ ଆଭିମୁଖ୍ୟରେ ନିଜ ସ୍ତ୍ରୀ ଓ ପିଲାଛୁଆଙ୍କ ନାମରେ ଆବେଦନ କରିଥିଲେ ଘର ପାଇଁ । ଆବଣ୍ଟନ ପରେ ଘର ପାଇଥିଲେ ମଧ୍ୟ ସେତେ ବେଶି ତତ୍‌ପରତା ନାହିଁ କୋର୍ ହାଉସ୍‌କୁ ପୂର୍ଣ୍ଣାଙ୍ଗ କରିବାକୁ । ଯେହେତୁ କଲୋନୀଟି ସହରର ମୁଖ୍ୟ ସ୍ଥଳଠାରୁ ଢେର୍ ଦୂରରେ, ଘର ସମ୍ପୂର୍ଣ୍ଣ କରିଦେଲେ ଯେ ତତ୍‌କ୍ଷଣାତ୍ ଭଡାରେ ଲାଗିଯିବ ଏ ଭରସା ନଥିବାରୁ ବହୁଲୋକ ଘର ପାଇ ସାରିବା ପରେ ମଧ୍ୟ ଚୁପ୍‌ଚାପ୍ ବସି ରହିଥିଲେ । ସରକାରୀ କ୍ୱାର୍ଟର ପାଇ ନଥିବା କିମ୍ବା ସହର ଭିତରେ ନିଜର ଘର ନଥିବାରୁ କାଁ ଭାଁ କେତେଜଣ ଘରକୁ ସମ୍ପୂର୍ଣ୍ଣ କରି ରହିଛନ୍ତି । ତାହା ପୁଣି ଏଠି ସେଠି ଗୋଟିଏ ଗୋଟିଏ କରି । ସ୍ୱେରେଜ, ବିଜୁଳି ଓ ରାସ୍ତାଘାଟର ଉନ୍ନତି ଯାଏ ଅନ୍ୟ ସମସ୍ତ ଚତୁର ବ୍ୟକ୍ତିମାନେ ଅପେକ୍ଷା କରି ବସିଛନ୍ତି ।

ନିଜ ନାମରେ ଘର ଖଣ୍ଡେ ମିଳିଥିବାରୁ ଦୀନବନ୍ଧୁ ବାବୁ ଆଉ ଚାହିଁଲେ ନାହିଁ ସରକାରୀ ଭଡ଼ା ଘରେ ରହିବାକୁ । ତାଙ୍କର ଏ ନଚାହିଁବା ପଛରେ ଦୁଇଟି କାରଣ ଥିଲା – ଚାକିରି ଆଉ ପାଞ୍ଚବର୍ଷ ଅଛି, ନିଜ ଘରକୁ ହେପାଜତ୍ କରି ଖାଲି ଜାଗାରେ କିଛି ଗଛବୃଛ ଲଗାଇଥିଲେ ଘରଟା ଘର ପରି ଲାଗିବ । ଦ୍ୱିତୀୟ କାରଣଟି କିନ୍ତୁ ପ୍ରଥମ କାରଣ ଅପେକ୍ଷା ଯଥେଷ୍ଟ ବଳିଷ୍ଠ । ଷଷ୍ଠ ବେତନ କମିଶନ୍ ଲାଗୁହେବା ପରେ କେନ୍ଦ୍ର ସରକାରଙ୍କ କର୍ମଚାରୀ ହିସାବରେ ସେ ରାଜଧାନୀରେ ଯେତିକି ଘରଭଡ଼ା

ପାଇବେ, ଯଦି ସରକାରୀ କ୍ୱାର୍ଟର ଛାଡ଼ି ନିଜ ଘରକୁ ଚାଲି ଯାଆନ୍ତି, ତେବେ ସେଇ ଟଙ୍କାରେ ତାଙ୍କର ଗୃହରଣ ପରିଶୋଧ ହୋଇଯିବ । ଆନୁସଙ୍ଗିକ ସୁବିଧା ସୁଯୋଗ ନଥିବାକୁ ଡରି ଏତେ ଗୁଡ଼ାଏ ଆର୍ଥିକ କ୍ଷତି ସହିବାର କୌଣସି ଆବଶ୍ୟକତା ନାହିଁ । ଅବଶ୍ୟ ପତ୍ନୀ ପ୍ରଥମେ ପ୍ରଥମେ ରାଜି ହେଉନଥିଲେ, ଯେହେତୁ ପିଲାମାନେ ସବୁ ବାହାରେ ପଢୁଥିଲେ କେହି ପଡ଼ା ପଡୋଶୀ ନଥିବା କୌଣସି ସ୍ଥାନରେ ରହିବାଟା ଖାଁ - ଖାଁ ଓ ଭୀତିପ୍ରଦ ଲାଗିପାରେ ବୋଲି ତାଙ୍କର ଆଶଙ୍କା ଥିଲା । ମାତ୍ର ଦୀନବନ୍ଧୁ ବାବୁଙ୍କର ଯୁକ୍ତିଥିଲା, ଘର ନେଇଥିବା ଲୋକମାନେ ଆଜି ନହେଲେ କାଲିକୁ ତ ଯାଇ ସେଠାରେ ରହିବେ । ସମସ୍ତେ ଯଦି ଭାବିବେ ଅନ୍ୟମାନେ ରହି ସାରନ୍ତୁ ମୁଁ ଯିବି ବୋଲି ତାହାଲେ କିଏ ଯାଇ ଆଗ ରହିବ ? ସେଇ ଆଗଲୋକଟା ଆମେ କାହିଁକି ନହେବା ?

ନିଜ ଘରେ ରହିବାର ସ୍ୱପ୍ନରେ ବିଭୋର ଥିବା ଦୀନବନ୍ଧୁଙ୍କ ପତ୍ନୀ ଚିନ୍ତାକଲେ ହଁ ଆଜି ନ ହେଲେ ତ କାଲିକୁ ଯିବାକୁ ପଡ଼ିବ । ତା'ପରେ ପୁଅ ଦୁଇଜଣଙ୍କର ବାହାଘର ବି କରିବାକୁ ପଡ଼ିବ । ବଡ଼ପୁଅ ପାଇଁ ଆସୁଥିବା ପ୍ରସ୍ତାବ ସବୁ ଭୁବନେଶ୍ୱରରେ ନିଜର ଘର ନାହିଁ ବୋଲି ଭାଙ୍ଗି ଯାଇଛି । ତେଣୁ ନିଜର ଘର ତିଆରି କରି ଚାଲିଯିବା ଠିକ୍ ହେବ ।

ଦୀନବନ୍ଧୁ ଲାଗିପଡ଼ିଲେ ପୂରା ଦମ୍‌ରେ ଘରକୁ ସମ୍ପୂର୍ଣ୍ଣ କରିବାରେ । ତାଙ୍କ ଦେଖା ଦେଖି ଆଉ ଦୁଇଚାରିଜଣ ବି ଆସି ଜୁଟିଗଲେ ଘର ତିଆରି କରିବାରେ । ଘର ତିଆରିରେ ଲାଗିଥିବା ମିସ୍ତ୍ରୀ - କୁଲି ଓ ରେଜାମାନେ ସହରର ବସ୍ତିରେ ରହିବା ଅପେକ୍ଷା ଖାଲି ପଡ଼ିଥିବା କୋର୍ ହାଉସ୍‌ମାନଙ୍କରେ ରହିବାକୁ ଶ୍ରେୟ ମଣିଲେ । ଏଥିରେ ଅବଶ୍ୟ ଘର ତିଆରି କରୁନଥିବା ମାଲିକମାନଙ୍କର କୌଣସି ଆପତ୍ତି ନଥିଲା । କାରଣ ବେଛପରୀ ହୋଇ ପଡ଼ି ରହୁଥିବା ଘରଗୁଡ଼ିକର ମାଗଣାରେ ତ ଦେଖାରେଖା ହୋଇପାରିବ ।

କଲ୍ୟାଣ ବିହାରର ଘର ମାଲିକ ହିସାବରେ ଦୀନବନ୍ଧୁ ବାବୁ ପ୍ରଥମେ ଆସିଲେ ନିଜ ଘରକୁ । ଯଦିଓ ସେ ଏକୁଟିଆ ଆସିଥିଲେ, ପରିବେଶ କିନ୍ତୁ ଲାଗୁ ନଥିଲା ନିଛାଟିଆ । ତାଙ୍କ ଘର ଚାରିପଟରେ ଥିବା କୋର୍ ହାଉସ୍‌ଗୁଡ଼ିକରେ ରହି ଯାଇଥିଲେ କିଛି କର୍ମଜୀବୀ ମିସ୍ତ୍ରୀ, କୁଲି ଓ ରେଜାମାନେ । ଦିନରେ ଗହଳ ଚହଳ ଲାଗୁଥିଲା ତିଆରି ହେଉଥିବା ଘରମାନଙ୍କରେ । ତାଙ୍କ ଘର ଚାରିପଟେ ରହୁଥିବା

ଲୋକମାନଙ୍କଠାରୁ ସେ ନିରାପଦ ଦୂରତା ରଖି ଚଳୁଥିଲେ ମଧ୍ୟ ଆଶ୍ୱସ୍ତ ଥିଲେ ସେମାନଙ୍କର ଉପସ୍ଥିତି ପାଇଁ । ପତ୍ନୀଙ୍କୁ ଉପଦେଶ ଦେଇ କହିଥିଲେ ଆବଶ୍ୟକତାଠାରୁ ଅଧିକ ସମ୍ପର୍କ କିମ୍ବା ଅଧିକ ନିକଟତର ହେବନାହିଁ ଏ ବସ୍ତିରେ ରହୁଥିବା ଲୋକମାନଙ୍କ ସହ । ଆଜିକାଲି ବେଳକାଳ ଭଲ ନାହିଁ, ସୁଯୋଗ ମିଳିଲେ ଏମାନେ କେତେବେଳେ କ'ଣ କରିବେ ଠିକଣା ନାହିଁ । ତେଣୁ ମୁଁ ଅଫିସ୍ ଯିବାପରେ ତମେ ଗେଟ୍ ଓ ଘରର ଜାଫ୍ରିରେ ତାଲା ପକାଇ ରହିବ, ମୁଁ ପହଞ୍ଚିଲା ପରେ ଖୋଲିବ । ମଝିରେ ମଝିରେ ଘରର ଛାତକୁ ଯାଇ ନଜର ପକାଇ ଦେଉଥିବ ଚାରିପଟରେ । ତମ ପାଖରେ ତ ମୋବାଇଲ୍ ରହୁଛି, କିଛି ଅସୁବିଧା ହେଲେ ମୋତେ ତୁରନ୍ତ ଜଣାଇବ ।

ଦୀନବନ୍ଧୁ ବାବୁଙ୍କର ବାଉଣ୍ଡାରୀକୁ ଲାଗିଥିବା କୋଠରୀହାଉସ୍‌ରେ ରହୁଥିଲେ ଶ୍ରୀନିବାସ ଓ ତା'ର ପତ୍ନୀ । ପତିପତ୍ନୀ କହିଲେ ତ ଠିକ୍ ହେବନି, ବରଂ ଘରଛାଡ଼ି ଚାଲି ଆସିଥିବା ପ୍ରେମିକ ପ୍ରେମିକା । ଉଭୟଙ୍କର ଜାତି ଅଲଗା । ଝିଅଟି ଉଚ୍ଚବର୍ଣ୍ଣ ଗୋପାଳ ଘରର ଏବଂ ଶ୍ରୀନିବାସ କେଉଟ ଘରର ପିଲା । ଯାଙ୍କର ସମ୍ପର୍କ ଦେଖି ଝିଅ ଘରର ଲୋକେ, ସାହିଭାଇ ସବୁ ଠେଙ୍ଗା କାଢ଼ିଲେ । ଝିଅକୁ ଅନ୍ୟତ୍ର ବାହା କରାଇବାର ଯୋଗାଡ଼ରେ ଲାଗିଲେ । ସମସ୍ତଙ୍କୁ ଚକ୍‌ମା ଦେଖାଇ ଶ୍ରୀନିବାସ ଗୋପାଳ ଘରର ଝିଅ ଗୌରୀକୁ ଧରି ମାରିଲା ଛୁ । କିଛି ଦିନ ଏପଟ ସେପଟ ବୁଲାବୁଲି କରି ଆସି ରହିଛନ୍ତି ଏଇଠି । ଶ୍ରୀନିବାସର ଚାକିରି ଅଛି ନା ବାକିରି । ସଂସାର ଚଳାଇବା ପାଇଁ ଏବେ ରାଜମିସ୍ତ୍ରୀମାନଙ୍କ ସାଂଗରେ ହେଲ୍‌ପର କାମ କରୁଛି ।

ଦୀନବନ୍ଧୁ ବାବୁ ଯଦିଓ ଏକ ଲକ୍ଷ୍ମଣରେଖା ଟାଣିଥିଲେ ତାଙ୍କ ପତ୍ନୀଙ୍କ ପାଇଁ ପାଖରେ ରହୁଥିବା ଲୋକମାନଙ୍କ ସହ ମିଳାମିଶା ନ କରିବା ପାଇଁ, ହେଲେ ପତ୍ନୀ ଦମୟନ୍ତୀ ଦେବୀ ତାକୁ ଅକ୍ଷରେ ଅକ୍ଷରେ ପାଳି ପାରୁନଥିଲେ । ସ୍ୱାମୀଙ୍କ କଥାମାନି ସେ ଗେଟ୍‌ରେ ତାଲା ଦେଇ ରହୁଥିଲେ ମଧ୍ୟ ବେଳେ ବେଳେ ଛାତ ଉପରୁ କିମ୍ବା ନିଜ ବାଉଣ୍ଡାରୀ କଡ଼ରେ ଠିଆ ହୋଇ ଗୌରୀ ସହ କଥା ହୁଅନ୍ତି । ନୂଆ ନୂଆ ସଂସାର କରିଥିବା ଗୌରୀ ଏବଂ ଗୌରୀ ପଛର ପ୍ରେମ କାହାଣୀ ଶୁଣି ସେ ମନେ ମନେ ଦୁଃଖ କରନ୍ତି । ଭାବନ୍ତି ଦେଖତ, କେତେ ଥିଲାବାଲା ଘରର ଝିଅ, କେତେ ପୁଣି ଗେହ୍ଲାରେ ବଢ଼ିଥିଲା, ଗୋଟେ କେଉଟ ପିଲାର ପ୍ରେମରେ ପାଗଳିନୀ ହୋଇ କେମିତି ହୀନସ୍ତା ହେଉଛି । ଗୌରୀ ପାଇଁ ସମବେଦନା ଜାହିର କରି ସେ ଯେତେବେଳେ ଆହା – ଚୁଚୁ କରନ୍ତି, ଗୌରୀ କହେ ମାଉସୀ ଏ ଜୀବନ ପାଇଁ ମୋର ଆଦୌ ଦୁଃଖ ନାହିଁ । ମୁଁ ତ

ତାଙ୍କ ପାଇଁ ହସି ହସି ମରଣକୁ ବି ବରଣ କରି ନେଇଥାଆନ୍ତି । ଏ ରହିବା, ଖାଇବା, ପିଇବା ଦୁଃଖ ବା କି ଛାର ? ମୋର କେବଳ ଦୁଃଖ, ଇଏ ପାଠଶାଠ ପଢ଼ିଥିଲେ, ଚାକିରି ବାକିରି ଖୋଜୁଥିଲେ, ଚାକିରି କଲାପରେ ଯାଇ ଆମେ ବାହା ହୋଇଥାଆନ୍ତୁ । ହେଲେ ନିଆଁଲଗା ପରିସ୍ଥିତି ଏମିତି ହେଲା ଯେ ସେତେଦିନ ଯାଏ ଅପେକ୍ଷା କରି ହେଲାନାହିଁ । ଯେଉଁ ହାତରେ ସିଏ କଲମ ଚାଷ କରିଥାଆନ୍ତେ, ସେଇହାତରେ ଏବେ ସକାଳରୁ ସଂଜଯାଏ କରଣୀ । ମୋ ପାଇଁ ସିନା ତାଙ୍କର ଆଜି ଏ ଦଶା ।

ଦମୟନ୍ତୀ ଦେବୀ ତାଙ୍କର ଦୁଃଖ ଶୁଣି ତାକୁ ଆଶ୍ୱାସନା ଦେଇ କହନ୍ତି ଅନ୍ଧାର ପିଠିଏକୁ ଆଲୁଅ ପିଠିଏ । ଏବେ ତମ ଜୀବନରେ ଅନ୍ଧାର ପକ୍ଷ ରହିଛି । ଧୈର୍ଯ୍ୟ ଧରିଲେ ଆଲୁଅ ପକ୍ଷ ଆସିବାକୁ ବେଶି ଡେରି ଲାଗିବ ନାହିଁ ।

ହଁ – ସେଇ ଭରସା ଓ ବିଶ୍ୱାସ ନେଇ ତ ଏମିତି ଭାବରେ ପଡ଼ି ରହିଛୁ ଏଠି । ଦେଖାଯାଉ ଆମ ଭାଗ୍ୟ ପଥର ତଳେ ଅଛି ନା ପତର ତଳେ ।

ଏମିତି କଥାବାର୍ତ୍ତା ଭିତରେ ଗୌରୀ ପ୍ରତି ଦମୟନ୍ତୀ ଦେବୀଙ୍କ ମନରେ ଏକ ପ୍ରକାର ଶ୍ରଦ୍ଧା ଓ ଦୟା ଆସିଯାଇଥିଲା । ଗୌରୀକୁ ନିଜ ଘରକୁ ନ ଡାକିଲେ ମଧ୍ୟ ଦୀନବନ୍ଧୁ ବାବୁ ଗଲାପରେ ସେ ବେଳେବେଳେ ଚାଲିଯାଆନ୍ତି ଗୌରୀ ପାଖକୁ ଗପସପ କରିବାକୁ । ଏମିତି ଗପସପ ଭିତରେ ସେ ଜାଣିଲେ ଯେ ଗୌରୀ ଛଅମାସର ଅନ୍ତସତ୍ତ୍ୱା । ଅଭିଜ୍ଞ ଓ ଅଭିଭାବକ ସୁଲଭ ଢଙ୍ଗରେ ସେ ତାକୁ ଉପଦେଶ ଦିଅନ୍ତି ଏ ସମୟରେ ନିଜର ଓ ଭିତରେ ବଢୁଥିବା ପିଲାର କିପରି ଯତ୍ନ ନେବାକୁ ହେବ । ନିୟମିତ ଭାବେ ଡାକ୍ତର ପରାମର୍ଶ କରି ଔଷଧପତ୍ର ଖାଇବାକୁ, ନିଜର ଖାଇବା ଓ ଶୋଇବାରେ ଧ୍ୟାନ ଦେବାକୁ । ଗୌରୀକୁ ବୁଝାଇ କହନ୍ତି, ବାପଘର ସୁଖ ଛାଡ଼ି ଏମିତି ଏକ ପରିବେଶକୁ ଆସିଲା ପରେ ମନ ବୁଝୁ ନଥିବ, ମାତ୍ର ତାକୁ ଘେନା କରି ମନ ଭିତରେ ବିଷାଦ ଭାବ ରଖିଲେ ପିଲା ଉପରେ ମଧ୍ୟ ତା'ର ପ୍ରଭାବ ପଡ଼ିବ । ତେଣୁ ଯେତେ ସମ୍ଭବ ଚେଷ୍ଟା କରିବୁ ସବୁବେଳେ ହସ ଖୁସିର ମିଜାଜ୍‌ରେ ରହିବାକୁ ।

ଘରେ କୌଣସି ଭଲ ଖାଇବା ଜିନିଷ ହୋଇଥିଲେ କିମ୍ବା ଘରକୁ ମିଠା ମିଠି ଆସିଥିଲେ ଦମୟନ୍ତୀ ଦେବୀ ଦୀନବନ୍ଧୁ ବାବୁ ଅଫିସ୍ ଚାଲିଗଲା ପରେ ଗୌରୀକୁ ନେଇ ଦିଅନ୍ତି । ପ୍ରଥମେ ପ୍ରଥମେ ଗୌରୀ ମନା କରୁଥିଲା ସେସବୁ ଗ୍ରହଣ କରିବାକୁ, ହେଲେ ଦମୟନ୍ତୀ ଦେବୀଙ୍କ ବାଧ୍ୟବାଧକତାରେ ଶେଷକୁ ଗ୍ରହଣ କଲା । ଏହି ଦବାନନା ଓ ଯିବା ଆସିବା ଭିତରେ ଦମୟନ୍ତୀଙ୍କର ଏକ ଅନ୍ତରଙ୍ଗ ମାୟା ଲାଗିଯାଇଥିଲା ଗୌରୀ

ସହ । ତାଙ୍କ ନିଃସଙ୍ଗତାର ସାଥୀ ଥିଲା ଗୌରୀ ଏବଂ ଗୌରୀ ଗଭୀର ଆତ୍ମପ୍ରତ୍ୟୟ ନେଇ ଭରସା କରୁଥିଲା ତା'ର ଆଗକୁ ଆସୁଥିବା ଦିନମାନଙ୍କ ପାଇଁ ତାଙ୍କର ଉପଦେଶ ଓ ସହଯୋଗକୁ । ଦିନେ ମନକଥା ଖୋଲି ଗୌରୀ କହିଲା ଦମୟନ୍ତୀ ଦେବୀଙ୍କୁ – ମାଉସୀ, ଗୋଟିଏ ଝୁଙ୍କରେ ସିନା ଘରଛାଡ଼ି ଚାଲି ଆସିଲୁ । ପେଟ ତ ଯେନତେନ କରି ପୋଷି ନେଉଛୁ । ଘରୁ ଯେତେବେଳେ ସମ୍ପର୍କ କାଟି ଚାଲି ଆସିଛୁ । ଏ ଅସମୟରେ କିଏ ଯେ ଦୟା ପରବଶ ହୋଇ ଆସିବେ ସେ ଆଶା ବି କରିବା ବୃଥା । ଇଏ ତ ପୁରୁଷ ପିଲା, କ'ଣ ବା ସେ କାମରେ ସାହାଯ୍ୟ କରି ପାରିବେ । ଯଦି ଦରକାର ପଡ଼େ ସେ ସମୟକୁ ଟିକେ ସହାୟ ହେଲେ ଏ ଝିଅ ତମ ପାଖରେ ଋଣୀ ହୋଇ ରହିବ ।

ଦମୟନ୍ତୀ ଦେବୀ ଦୀନବନ୍ଧୁ ବାବୁଙ୍କର ଆକଟ କଥା ମନେ ପକାଇ କଥା ଚଳାଇ କହିଲେ ହଉ ସେ ବେଳ ଆସୁ । ଏବେ ଠୁ ଏତେ ବ୍ୟସ୍ତ କାହିଁକି ?

ଦୀନବନ୍ଧୁ ବାବୁ ସୁରାକ୍ ପାଇ ଯାଇଥିଲେ ବସ୍ତି ବାସିନ୍ଦାମାନଙ୍କ ସହ ପତ୍ନୀଙ୍କର ମିଳାମିଶା ବିଷୟରେ, ତେଣୁ ଆକଟ କରି କହିଲେ – ତମେ ଦୁନିଆ ବିଷୟରେ ଖୁବ୍ କମ୍ ଜାଣିଛ, ଆଜିକାଲି ଯେତେ ସବୁ ଛୋଟ ମୋଟ କ୍ରାଇମ୍ ଓ ଚୋରୀଚାରୀ ହେଉଛି ସବୁ ଏ ବସ୍ତିବାସିନ୍ଦାମାନଙ୍କ କାମ । ସେମାନଙ୍କଠାରୁ ଯେତେ ଦୂରେଇ ରହିବ ଭଲ । ମୁଁ ମାନୁଛି, ତମେ ଏକାଏକା ରହି ବୋର୍ ହେଉଛ ବୋଲି, ସେମାନଙ୍କ ସହ ମିଶୁଛ କିନ୍ତୁ ସେମାନଙ୍କ ସହ ନମିଶି ତମେ ତ ଟି.ଭି. ଦେଖା କିମ୍ବା ବହିପତ୍ର ପଢ଼ା ପଢ଼ିରେ ସମୟ କାଟି ପାରନ୍ତ । ମାଡ଼ି ମାଡ଼ି ତମେ କେତେ ସମୟ ଏକା ରହୁଛ । ଏଇ ସାତ ଆଠ ଘଣ୍ଟା ତ ? ତମକୁ ଏକା ନ ରଖିବା ପାଇଁ ମୁଁ ମୋର ଟୁର୍ ସିଟ୍ ବଦଳାଇ ଅଫିସ୍‌ରେ ରହିଲି । ମିଶୁଛ ମିଶୁଛ କେଉଁ ଦିନ ଯଦି କୌଣସି ସମସ୍ୟା ଆସେ ମୁଁ ତମ ପିଠିରେ ପଡ଼ିବି ନାହିଁ, ଆଗରୁ କହି ଦେଉଛି ।

ତମେ କ'ଣ ମୋତେ ପିଲା ଭାବିଛ ନା କ'ଣ ? ମୁଁ ଲୋକ ଦେଖି ଚାହିଁ ମିଶୁଛି ନା ସମସ୍ତଙ୍କ ସହ ମିଶି ଯାଉଛି । ବସ୍ତିରେ ଆସି ରହିଛନ୍ତି ବୋଲି ସବୁ ମଣିଷ କ'ଣ ଖରାପ ? ପରିସ୍ଥିତିରେ ପଡ଼ି ନଳରାଜା ଘାସ କାଟିଥିଲେ, ସେମିତି ବି କିଛି ଲୋକ ଅଛନ୍ତି ସେମାନେ ପରିସ୍ଥିତିରେ ପଡ଼ି ବସ୍ତି ବାସିନ୍ଦା ହୋଇଛନ୍ତି । ଆମେ ଯଦି ହୃଦୟକୁ ଏମିତି ସନ୍ଦେହୀ ଓ ସଂକୁଚିତ କରିଦେବା, ତେବେ ତ ସାରା ମଣିଷ ସମାଜ ଉପରେ ଆମର ବିଶ୍ୱାସ ତୁଟିଯିବ ? ହଉ ତମ ଇଚ୍ଛା, ଯାହା ତମେ ଠିକ୍ ଭାବୁଛ କର ।

ସମୟକ୍ରମେ କଲୋନୀଟିରେ ଆସି କାଁ - ଭାଁ କେତେ ଜଣ ରହିସାରିଥିଲେ । ରାତିରେ ଆଲୁଅ ଗଣି ହିସାବ କରି ହେଉଥିଲା କେତେ ଜଣ ଆସି ନିଜ ଘରେ ରହିଗଲେଣି ବୋଲି । ରାତିରେ ଛାତ ଉପରୁ ଥାଇ ଦେଖିଲେ ଲାଗୁଥିଲା ତମ୍ବୁଟଣା ଯୁଦ୍ଧ କ୍ଷେତ୍ରପରି । କାଁ ଭାଁ ଆଲୁଅର ଫୁଆରା ସୂଚାଇ ହେଉଥିଲା ରାଜା, ମନ୍ତ୍ରୀ ଓ ସେନାପତିମାନଙ୍କର ଉପସ୍ଥିତିକୁ ।

ଗଡ଼ି ଗଡ଼ି ଯାଉଥିଲା ମାସ । ପାଖେଇ ପାଖେଇ ଆସୁଥିଲା ଗୌରୀର ପ୍ରସୂତି ସମୟ । ସେଦିନ ଦିନ ତମାମ ଲାଗି ରହିଥିଲା ବର୍ଷା ।

ଶ୍ରୀନିବାସ ଯାଇଥିଲା କାମକୁ । ଗୌରୀକୁ ଟିକେ ଅସଜ୍ ଅସଜ ଲାଗିଲା । ଦମୟନ୍ତୀ ଦେବୀଙ୍କ ଗେଟ୍ ପାଖକୁ ଆସି ଧୀରେ ସ୍ୱରରେ ଡାକିଲା - ମାଉସୀ ମାଉସୀ, ରୋଷେଇ ଘର ଝରକାରୁ ଗୌରୀକୁ ଦେଖି ଗେଟ୍ ପାଖକୁ ଯାଇ ଦମୟନ୍ତୀ ପଚାରିଲେ କ'ଣ ହେଲା କିଲୋ ଝିଅ ?

ମାଉସୀ ଟିକେ ଅଡୁଆ ଅଡୁଆ ଲାଗୁଛି ତ, ସେଥିପାଇଁ ତମକୁ ପଚାରି ଦେବାକୁ ଆସିଥିଲି ।

ତୋ'ର ତ ବେଳ ଢେରଦିନ ବାକି ଅଛି । ଏହି ସମୟରେ ମଝିରେ ମଝିରେ ଏମିତି ହୁଏ । ତୁ ଯାଆ - ଘରେ ବିଶ୍ରାମ ନେ, ଏ ବର୍ଷା ପାଣିରେ ଏପଟ ସେପଟ ହଅନି ।

ଗୌରୀ ଚାଲିଗଲା ସିନା ନିଜ ମନକୁ ବୁଝାଇ ପାରିଲା ନାହିଁ । ସେ ଅପେକ୍ଷା କରୁଥିଲା ଶ୍ରୀନିବାସର ଫେରନ୍ତା ବାଟକୁ । କେହି ଜଣେ ପାଖରେ ନ ଥିବାରୁ ଏ କଷ୍ଟଟା ତାକୁ ଅଧିକ ଅଧିକ ଲାଗୁଛି । ଶ୍ରୀନିବାସ ଥିଲେ ହୁଏତ ଗପସପରେ ଏ କଷ୍ଟଟା ତାକୁ ଏତେ ଜଣା ପଡ଼ନ୍ତା ନାହିଁ ।

ଶ୍ରୀନିବାସ ଫେରିଲା ବେଳକୁ ରାତି ଘଡ଼ିଏ ହେଲାଣି । ବର୍ଷାରେ ଭିଜି ଭିଜି କାଲୁଆ ହୋଇ ଫେରିଥାଏ । ତା'ର ବର୍ଷା ଭିଜା ମୁହଁ ଓ ଶୀରରକୁ ଦେଖି ଗୌରୀ ଇଚ୍ଛା କଲା ନାହିଁ ସେ ଫେରୁ ଫେରୁ ତା' ଆଗରେ ତା'ର ଯନ୍ତ୍ରଣା କଥା କହି ତାକୁ ଆହୁରି ବ୍ୟସ୍ତ ବିବ୍ରତ କରାଇବା ପାଇଁ । ବଡ଼ କଷ୍ଟରେ ଘୋଷାରୀ ଘୋଷାରୀ ହୋଇ ଉଠି ଉଲୁଗୁଣି ଉପରେ ଶୁଖୁଥିବା ଗାମୁଛାଟିଏ ତା' ଆଡକୁ ବଢ଼ାଇ ଦେଇ କହିଲା, ନିଅ ପୋଛିପାଛି ହୋଇ କପଡ଼ା ବଦଳାଇ ଦିଅ । ମୁଁ ବାଢ଼ି ଦେଉଛି ଖାଇନେବ । ବର୍ଷାରେ ଭିଜି ଭିଜି ଆସିଛ, ଥଣ୍ଡା ଧରି ପକାଇବ ।

ଶ୍ରୀନିବାସ ପୋଛାପୋଛି ହୋଇସାରି କପଡ଼ା ବଦଳାଇଲା । ଲକ୍ଷ୍ୟ କରୁଥିଲା ଗୌରୀ ଖାଇବାକୁ ବାଢ଼ିବା ବେଳେ ତା'ର ଯନ୍ତ୍ରଣାସିକ୍ତ ମୁହଁକୁ । ପଚାରିଲା – ଦେହ କ'ଣ ହେଉଛି କି ?

ଆଉ ନ କହିଲେ ନଚଳିବ ଭାବି – ଗୌରୀ କହିଲା, ହଁ ଆଜି ଦିନମାନ ଟିକେ ଟିକେ ଯନ୍ତ୍ରଣା ହେଉଛି ।

ଦିନମାନ ହେଉଛି ।

ହଁ ଯେ, ମୁଁ ସେ ଦମୟନ୍ତୀ ମାଉସୀଙ୍କୁ ଯାଇ ପଚାରିଲି, ସେ କହିଲେ ଏବେ ତ ବେଳ ଢେରଦିନ ବାକି ଅଛି, ଇଏ ସେ ଯନ୍ତ୍ରଣା ନୁହେଁ ।

ରକ୍ଷା, ତମେ ଦିନମାନ ଖାଇବା ପିଇବା ଠିକ୍ ଭାବରେ କରିଛ ତ ?

ହଁ – ।

ହଉ ତମେ ବସ, ମୁଁ ବଢ଼ାବଢ଼ି କରି ଦେଉଛି, ତମେ ଖାଇସାରି ବିଶ୍ରାମ ନିଅ । ଯଦି ଯନ୍ତ୍ରଣା ନକମେ ତେବେ କାଲି ଡାକ୍ତରଙ୍କୁ ଦେଖାଇବା ।

ବଢୁଥିଲା ରାତି । ବଢୁଥିଲା ଯନ୍ତ୍ରଣା । ମଧ୍ୟ ରାତ୍ରୀ ବେଳକୁ ଗୌରୀ ଉଠାଇଲା ଶ୍ରୀନିବାସକୁ – କହିଲା ଆଉ ପାରୁନି । ତମେ ଗୋଟାଏ କ'ଣ ବ୍ୟବସ୍ଥା କର । ଏଯନ୍ତ୍ରଣା ଅସମ୍ଭାଳ ହେଲାଣି ।

ଶ୍ରୀନିବାସ ଚାହିଁଲା ବାହାରକୁ । ବାହାରେ ଲାଗି ରହିଥିଲା ବର୍ଷାର ତାଣ୍ଡବ । ସେ ଥରେ ବାହାରର ବର୍ଷାକୁ ଓ ଥରେ ସ୍ତ୍ରୀର ମୁହଁକୁ ଚାହୁଁଥିଲା । ଭାବି ପାରୁନଥିଲା ଏ ପରିସ୍ଥିତିରେ ସେ କ'ଣ କରିବ ? କୁଆଡ଼େ ଯିବ, କାହାକୁ ଡାକିବ, ଗୌରୀକୁ ଡାକ୍ତରଖାନାକୁ ନେବ କେମିତି ?

ଗୌରୀର ଯନ୍ତ୍ରଣାର ଧୀରେ ଧୀରେ ଉଃ- ଉହୁଃ, ବୋଉଲୋ-ବାପାଲୋ ଓ ମରିଗଲିରେ ରୂପାନ୍ତରିତ ହେଉଥିଲା । ବିବଶ ଶ୍ରୀନିବାସ ଚିନ୍ତା କରୁଥିଲା କାହାକୁ ଡାକି ଗୌରୀର ଜିମା ଦେଇ ସେ ଡାକ୍ତରଙ୍କ ପାଖକୁ ଯିବ ? ଏ ବର୍ଷା ପାଣିରେ କେଉଁ ଡାକ୍ତର ବା ଜଣେ ବସ୍ତିବାସିନ୍ଦାର ସ୍ତ୍ରୀ ଦେହ ଖରାପ ଖବର ଶୁଣି ଧାଇଁ ଆସିବ ? ସେ ବ୍ୟସ୍ତ ବିକଳ ହୋଇ ଗୌରୀକୁ ଆଉଁଷା ଘଷା କରି କହୁଥିଲା, ରାତି ପାହୁ ମୁଁ ଯାହା ଗୋଟେ ବ୍ୟବସ୍ଥା କରିବି ।

ଗୌରୀ ବି ବୁଝୁଥିଲା ଶ୍ରୀନିବାସର ବିବଶତା । ସେ ଯେତେ ଚେଷ୍ଟା କଲେ ବି ଯନ୍ତ୍ରଣାକୁ ଚାପି ରଖି ପାରୁନଥିଲା ଭିତରେ । ଛାଡୁଥିଲା ଚିତ୍କାର । ବିକଳ ଚିତ୍କାରରେ

ଅଧିର କରୁଥିଲା ସମଗ୍ର ପରିବେଶକୁ । ଆଉ ସମ୍ଭାଳି ପାରିଲାନି ଶ୍ରୀନିବାସ । ଛତାଟିଏ ଧରି ଘରୁ ବାହାରି ପଡ଼ି କହିଲା – ରହ ମୁଁ ସେ ମାଉସୀଙ୍କୁ ଡାକୁଛି ।

ଦମୟନ୍ତୀଙ୍କ ଗେଟ୍ ପାଖରେ ଛିଡ଼ା ହେଇ ବହୁତ ଥର ଡାକ ଛାଡ଼ିଲା – ମାଉସୀ, ମାଉସୀ, ଟିକେ ଉଠ, ମୋ ସ୍ତ୍ରୀ ଭୀଷଣ ଅସୁସ୍ଥ । ଯନ୍ତ୍ରଣାରେ ଛଟପଟ ହେଉଛି ।

ଗେଟ୍ ଏବଂ ବହୁତ ଗୁଡାଏ କବାଟ ସାଙ୍ଗକୁ ଏ ବର୍ଷାର ଶବ୍ଦରେ ତା'ର ଡାକ ବୋଧହୁଏ ପହଞ୍ଚୁ ନ ଥିଲା ଘର ଭିତରକୁ । ସେ ଜୋର୍ – ଜୋର୍‌ରେ ଡାକ ଦେଇ ଗେଟ୍‌କୁ ବାଡ଼େଇଲା । ତଥାପି ଖୋଲି ନ ଥିଲା କବାଟ । ତା'ର ବର୍ଷା ଭିଜା କାତର ଡାକରେ କିନ୍ତୁ ଭାଙ୍ଗି ଯାଇଥିଲା ଦମୟନ୍ତୀ ଦେବୀଙ୍କ ନିଦ । ସେ ଉଠି ପଡ଼ି କାନ ପାରିଲେ ପୁଣିଥରେ ଶବ୍ଦ ଆଡକୁ । ବାରମ୍ବାର ଆସୁଥିବା ଡାକରୁ ସେ ନିଶ୍ଚିତ ହେଲେ ଯେ ପଡ଼ିଶା ଘରର ସେ ପିଲାଟା ଡାକୁଛି ବୋଲି ।

ସେ ଉଠାଇଲେ ଦୀନବନ୍ଧୁ ବାବୁଙ୍କୁ – କହିଲେ ଉଠ, ଉଠ ତ କିଏ ଜଣେ ଗେଟ୍ ବାଡ଼େଇକି ଡାକୁଛି । ଦୀନବନ୍ଧୁ ବାବୁ କାନ ପାରିଲେ ସେ ଡାକ ଆଡ଼କୁ । ଡାକ ଶୁଣିସାରି କହିଲେ – କିଏ ଜଣେ ତମ ନାଆଁ ଧରି ମାଉସୀ ମାଉସୀ ଡାକୁଛି ।

ହଁ – ଏ ଡାକ ଆମ ଘର ପାଖ ଶ୍ରୀନିବାସର ।

ଏତେ ରାତିରେ ସେ କାହିଁକି ଡାକୁଛ ?

ତା' ସ୍ତ୍ରୀର ଡେଲିଭରି ହବାର ଥିଲା, କ'ଣ କିଛି ଅସୁବିଧା ହେଲା ବୋଧେ ।

ତମକୁ ଡାକିଲେ ତମେ କ'ଣ କରିବ ? ତମେ ଧାଇ ନା ନର୍ସ ?

ସେମାନେ ଅସୁବିଧାରେ ପଡ଼ିଛନ୍ତି ନିଶ୍ଚୟ, ତା' ସ୍ତ୍ରୀ ମୋର ଚିହ୍ନା, ସେଥିପାଇଁ ହୁଏତ ତା' ସ୍ତ୍ରୀ କହିଥିବ ମୋତେ ଡାକିବା ପାଇଁ । ତମେ କବାଟ ଖୋଲି ଗେଟ୍ ପାଖକୁ ଯାଇ ଦେଖ ତ ଆଗେ, କ'ଣ ଅସୁବିଧା ହୋଇଛି ତାଙ୍କର ।

କ'ଣ କହିଲ, ମୁଁ ଏବେ କବାଟ ଖୋଲି ଯିବି ତା' ପାଖକୁ ତା'ର ଅସୁବିଧା କଥା ବୁଝିବାକୁ ।

ଅସୁବିଧାରେ ପଡ଼ିଥିବା ମଣିଷଙ୍କୁ ସାହାଯ୍ୟ କରିବା କ'ଣ ମଣିଷର କର୍ତ୍ତବ୍ୟ ନୁହେଁ କି ?

ତମେ ମୋତେ ଆଉ ସେ କର୍ତ୍ତବ୍ୟଜ୍ଞାନ ଶିଖାଅନା, ଏଣେ କହୁଛ ଡେଲିଭରି ହେବାର ଥିଲା, ଯଦି ସେ ପେନ୍ ହେଉଥାଏ, ଏଇନେ କହିବେ ଗାଡ଼ି ବାହାର କରି

ଡାକ୍ତରଖାନାକୁ ନେବାକୁ । ଦେଖୁଛ ତ ଏ ବର୍ଷା ଯେମିତି କୁଟୁଛି । ତମେ ଚୁପ୍‌ଚାପ୍ ଶୁଅ । ସେ ଗେଟ୍ ବାଡ଼େଇ ବାଡ଼େଇ ଥକିଯାଇ ଭାବିବ ଆମେ ଗଭୀର ନିଦରେ ଶୋଇଛୁ । ଶୁଣି ପାରୁନାହିଁ । ରାତି ପାହୁ ଯାହା ଦେଖାଯିବ ।

ମନ ବୁଝୁ ନଥିଲା ଦମୟନ୍ତୀଙ୍କର, ହେଲେ ସେ କାଟି ପାରୁନଥିଲେ ସ୍ୱାମୀଙ୍କର କଥା । ଘର ଭିତରୁ ଥାଇ କେବଳ ସେ ଥରକୁ ଥର ଶୁଣୁଥିଲେ ଶ୍ରୀନିବାସ ଧାଇଁ ଆସି ମାଉସୀ ମାଉସୀ ଚିଲ୍ଲାଇ ବାଡ଼ାଉଛି ଗେଟ୍, ପୁଣି ଧାଇଁ ଯାଉଛି ନିଜ ଘର ଭିତରକୁ ଗୌରୀ – ଗୌରୀ ଡାକି । ସେ ପଟୁ ଶୁଭୁଥିଲା ଏକ ଯନ୍ତ୍ରଣାର ଆର୍ତ୍ତନାଦ – ବୋଉଲୋ, ମରିଗଲି, ଆଉ ବଂଚିବି ନାହିଁ, ମରିଗଲି ଲୋ, କିଛି ସମୟ ପରେ ଶୁଭୁଥିଲା ଗୋଟେ ବିବଶ ମଣିଷ ସ୍ୱର – ତମର କିଛି ହେବନି ଗୌରୀ, ଭଗବାନ ଏତେ ନିଷ୍ଠୁର ହୋଇପାରିବେ ନାହିଁ । ରାତି ପାହି ପାହି ଆସିଲାଣି । ରାତି ପାହିବାକ୍ଷଣି ମୁଁ ତମକୁ ଡାକ୍ତରଖାନା ନେଇଯିବି । ମୁଁ ଏବେ ତମକୁ ଏମିତି ଏକା ଛାଡ଼ି କୁଆଡ଼େ ଯାଇପାରୁଛି ନା ନେଇ ପାରୁଛି ତମକୁ । ଏ ରାତି ପାହୁ, ରାତି ପାହିବାକ୍ଷଣି ମୁଁ ସବୁ ବ୍ୟବସ୍ଥା କରିଦେବି । ତମେ ବ୍ୟସ୍ତ ହୁଅନି, ଧୈର୍ଯ୍ୟ ଧର, କିଛି ହବନି, ଜନ୍ମା କିଛି ହେବନି ।

ସମସ୍ତ ପ୍ରବୋଧନା ସତ୍ତ୍ୱେ ବି କମୁ ନଥିଲା ଯନ୍ତ୍ରଣା କାତର ଆର୍ତ୍ତନାଦ ଉଃ – ଉହୁଃ, ଓହୋ – ମରିଗଲି ଲୋ ସହ ଏକ କାନ୍ଦଣାର ଲହରୀ ବର୍ଷା ଝରା ଆକାଶକୁ ଉଠୁଥିଲା ବାରମ୍ବାର । ହେଲେ ସେ ସ୍ୱର ନା ଉଠି ପାରୁଥିଲା ଆକାଶକୁ, ନା ପହଞ୍ଚି ପାରୁଥିଲା ଈଶ୍ୱରଙ୍କ ପାଖରେ । ବର୍ଷା ବିନ୍ଦୁ ସହ ମିଶି ସେ ଝରି ପଡୁଥିଲା ତଳକୁ ଓ ଧକ୍କା ଖାଉଥିଲା ପଥରର ଛାତିରେ ।

ଦମୟନ୍ତୀ ଦେବୀ ଶୋଇ ପାରୁନଥିଲେ ଘରେ । ସେପଟର ଯନ୍ତ୍ରଣା ସମ୍ପ୍ରସାରିତ ହେଉଥିଲା ତାଙ୍କ ମନକୁ । କଟ୍ – କଟ୍ କରି କାଟୁଥିଲା ହୃଦୟକୁ । ସେ ଶୋଇଥିବା ସ୍ୱାମୀଙ୍କ ଆଡ଼କୁ ଘୃଣାରେ ଚାହିଁ ମନକୁ ମନ କହୁଥିଲେ – କେମିତିକା ନିଷ୍ଠୁର ହୃଦୟର ମଣିଷ ଇଏ । ମାନବିକତା ବୋଲି ଜିନିଷଟାକୁ କ'ଣ ଈଶ୍ୱର ୟାଙ୍କୁ ଆଦୌ ଦେଇନାହାନ୍ତି । ହେ ଭଗବାନ, ବିଚାରୀର କିଛି ନହେଉ, ଭଲରେ ଭଲରେ ପାଇ ଯାଉ ରାତି । ସକାଳ ହେବାକ୍ଷରି ମୁଁ ଆଉ ୟାଙ୍କ ଆକଟ ମାନିବି ନାହିଁ ।

ଧୀରେ ଧୀରେ ଯନ୍ତ୍ରଣାର ସ୍ୱର କ୍ଷୀଣ ହୋଇ ଆସୁଥିଲା । ମନେ ମନେ ଆଶ୍ୱସ୍ତ ହେଉଥିଲେ ଦମୟନ୍ତୀ ଯେ ବିଚାରୀର କଷ୍ଟ କମିଗଲାଣି ବୋଧେ । ହଁ – ବେଳ ତ ହୋଇ ନଥିଲା, ଫଲସ୍ ପେନ୍ ହେଉଥିଲା । ବୋଧହୁଏ କମିଗଲାଣି । ରୋଷେଇଘର

ଝରକା ପାଖକୁ ଯାଇ କାନ ପାରିଲେ – ଶୁଭୁ ନଥିଲା ଆଉ ଯନ୍ତ୍ରଣାର ଆର୍ତ୍ତ । କୃତଜ୍ଞତା ଜଣାଇଲେ ଈଶ୍ୱରଙ୍କୁ ।

ରାତି ପାହିବାକୁ ତଥାପି ବାକିଥାଏ – ହଠାତ୍ ଗୋଟେ ବୁକୁଫଟା ଆର୍ତ୍ତନାଦ ଉଠିଲା ଗଗନ ଥରାଇ । ସେ ଆର୍ତ୍ତନାଦରେ ଲାଗିଲା ଯେମିତି ଥମ୍ କରି ବନ୍ଦ ହୋଇଗଲା ବର୍ଷା ଓ ପବନ । ଶୁଭୁଥିଲା – ନା, ତମେ ମୋତେ ଏକା ଛାଡ଼ି ଯାଇପାରିବ ନାହିଁ ଗୌରୀ । ଅନା – ଅନା, ହେଇ ଦେଖ ରାତି ପାହି ପାହି ଆସିଲାଣି । ବର୍ଷାର ପ୍ରକୋପ ବି କମି କମି ଗଲାଣି । ହେଇଏ, ଅନା, ଅନା, ମୋ ଆଡ଼କୁ ଏମିତି ମୁହଁ ବୁଲାଇ ନିଅନି । ତା'ପରେ ଉଠିଲା ଆଉ ଏକ ଆର୍ତ୍ତନାଦ, ନାଇଁ ଗୌରୀ, ନାଇଁ ... ନାଇଁ । ବାସ୍ ତା'ପରେ ସବୁ ଚୁପ୍ । ପବନ ବି ବର୍ଷା ବି ।

ବର୍ଷାଧୁଆ ସକାଳ ଓ ମେଘମୁକ୍ତ ଆକାଶରୁ ସିନ୍ଦୂରା ଫାଟିଲା । ଦମୟନ୍ତୀ ଦେବୀ ଉଠିପଡ଼ି ଗେଟ୍ ଖୋଲି ଧାଇଁଲେ ଗୌରୀ ଘର ଆଡ଼େ । ସାହାଣ ମେଲା ଘର । ଅସାଡ଼ ହୋଇ ପଡ଼ିରହିଥିଲା ଗୌରୀ ଚଟାଣ ଉପରେ । ପାଣିମିଶା ରକ୍ତ ଜମି ରହିଥିଲା ଚଟାଣ ଉପରେ । ଗୌରୀର ଠିକ୍ ମୁଣ୍ଡ ଉପରକୁ ଘରର ଗୋଟେ କୋଣକୁ କାନ୍ଥକୁ ଆଉଜି ବସିବାମୁଦ୍ରାରେ ବସିଥିଲା ଶ୍ରୀନିବାସ । ଆଖିଥିଲା ଖୋଲା । ଲାଗୁଥିଲା ସେ ଯେମିତି ମୁକ୍ତ ଆଖିରେ ଦେଖୁଛି ତା' ସାମ୍ନାରେ ଉଜୁଡ଼ି ଯାଇଥିବା ତା'ର ସଂସାର ଓ ପ୍ରିୟ ମଣିଷର ଅସହାୟ ମୃତ୍ୟୁକୁ ।

ଦମୟନ୍ତୀ ଦେବୀ ଡାକ ଛାଡ଼ିଲେ – ଗୌରୀ... ଗୌରୀ, ଶ୍ରୀନିବାସ – ଶ୍ରୀନିବାସ । ମାତ୍ର କେହି ଦେଉ ନଥିଲେ ଉତ୍ତର । ବ୍ୟସ୍ତ ହୋଇ ସେ ହଲାଇଦେଲେ ଶ୍ରୀନିବାସର ମୁଣ୍ଡକୁ । ପାଚିଲା ତାଳଟିଏ ଓଦା ମାଟିରେ ପଡ଼ିବା ପରି ନଥ କରି ପଡ଼ିଗଲା ଶରୀରଟି ଚଟାଣରେ । ହାଉଳି ଖାଇ ଦମୟନ୍ତୀ ଧାଇଁଲେ ନିଜ ଘରକୁ । ଦୀନବନ୍ଧୁଙ୍କୁ ଡାକିଲେ – ଆସ, ଆସ ଦେଖିବ ଆସ, କ'ଣ ଘଟିଯାଇଛି ଗତକାଲି ରାତିରେ ।

ସେ ଅଭାବନୀୟ ଦୃଶ୍ୟଟି ସମସ୍ତଙ୍କୁ ଯେମିତି ବ୍ୟଥିତ କରେ ଠିକ୍ ସେମିତି ବ୍ୟଥିତ କରିଥିଲା ଦୀନବନ୍ଧୁଙ୍କୁ । ସେ ସ୍ୱଗତୋକ୍ତି କଲାପରି କହିଲେ – ମୁଁ ଚଣ୍ଡାଳ କ'ଣ ଜାଣିଥିଲି ଏତେ ବଡ଼ ଘଟଣାଟିଏ ଅପେକ୍ଷା କରିଥିବ ରାତି ପାହିବା ବେଳକୁ ? ଏମାନଙ୍କର କୌଣସି ସମ୍ପର୍କୀୟଙ୍କ ବିଷୟରେ ତମେ ଜାଣ ?

ଲୁହ ପୋଛୁ ପୋଛୁ ମୁଣ୍ଡ ହଲାଇ ନାହିଁ କଲେ ଦମୟନ୍ତୀ । ତେବେ ତ ପୋଲିସ୍ ଷ୍ଟେସନରେ ଖବର ଦେବାକୁ ହେବ ।

ପୋଲିସ୍ ଆସି ଖୋଜାଖୋଜି କରି ପାଇଲେ ଶ୍ରୀନିବାସର ଘରର ଠିକଣା । ସେଠିକା ପୋଲିସ ଷ୍ଟେସନକୁ ଖବର ଦେଇ ଶବ ଦୁଇଟି ଉଠାଇ ନେଲେ ଇନକ୍ୟୁଏଷ୍ଟ ପାଇଁ ।

ଦିନ ଯାଇ ରାତି ହେଲା । ସନ୍ଧ୍ୟାବେଳକୁ ଦମୟନ୍ତୀ ଦେବୀ କହିଲେ, ମୁଁ ଏ ଘରେ ଆଉ ରହିପାରିବି ନାହିଁ ।

ମାନେ !

ମୋ କାନ ପାଖରେ ସବୁବେଳେ ଅତଡ଼ା ଖାଉଛି - ମାଉସୀ, ମାଉସୀ, ଟିକେ କବାଟ ଖୋଲ । ବୁକୁ ଥରାଇ ଶୁଭି ଯାଉଛି ସେ ଆକୁଳ, ଆର୍ତ୍ତ - ଉ ହୁଁଃ... ମରିଗଲି... ମରିଗଲି । ସେ ଡାକକୁ ପ୍ରତ୍ୟାକ୍ଷାନ କରି ରହିବା ତ ମୋ ଦ୍ୱାରା ସମ୍ଭବ ହେବନି ।

ଘଟଣାଟା ସଦ୍ୟ ଘଟିଛି ବୋଲି ତମକୁ ଏମିତି ଲାଗୁଛି, ସମୟକ୍ରମେ ସବୁ ଠିକ୍ ହୋଇଯିବ ।

ନା - କିଛି ଠିକ୍ ହେବନି । ରାତି ପାହିବା କ୍ଷଣି ମୁଁ ଚାଲିଯିବି । କୁଆଡ଼େ ? ପଚାରିଲେ ଦୀନବନ୍ଧୁ ।

ଯେଉଁଠିକୁ ଗଲେ ସେ ଆକୁଳ ଚିତ୍କାର ମୁଁ ଜମା ଶୁଣି ପାରିବି ନାହିଁ ।



# ଅରଣ୍ୟର ଡାକ

ସଭାକୁ ଯାଇଛି ଗାଆଁ ମୁଖିଆ । କେତେ ପାହାଡ଼, ଡଂଗର, ଝରଣା ଡେଗି କରି ଦଶ କୋଶ ବାଟ ଚାଲି ଚାଲି ଗଲେ ଯାଇ ପଡ଼ିବ ନୂଆ କଟକ । ସେଇ ନୂଆ କଟକକୁ ଯାଇଛେ ମୁଖିଆ ସରକାର ଘରୁ ନେଉତା ଆସିଥିଲା । ଏଇଟା ଭୋଟ୍ ସଭା ନୁହଁ, ଇଏ ଆଉ ଗୋଟେ ସଭା । ସେଠି କୁଆଡ଼େ ଭୋଟ୍ ମାଗିବେନି ସରକାରମାନେ । ଗୋଟେ ନୂଆ ଜିନିଷ ମାଗିବେ ।

କ'ଣ ମାଗିବେ କହି ଦେଲେ ତ କଥା ସରନ୍ତା, ଏତେ ଉଚ୍ଚାଟ କାହିଁକି କରାଉଛି ?

ଆମର ଏଇ ମାଟି, ମାଟି ମାଗିବେ ବୋଲି ମୁଁ ଶୁଣିଛି, ହେଲେ ମୁଖିଆ ଆସିଲେ ହିଁ ସତଟା କ'ଣ ଜଣାପଡିବ ।

ଆମର ମାଏଟ୍‌କୁ ମାଗୁଛନ୍ତି, ଏଥିରେ ଏନ୍‌ତା କ'ଣ୍‌ଟା ଅଛି ?

ଏଇ ମାଏଟ୍ ତଳେ ପଥର ଅଛି ପଥର ।

ହଁ, କାହିଁ କେତେ ଯୁଗରୁ ତ ଅଛେ । ଏ ମାଟି ତଳେ ପଥର, ଡଂଗରରେ ପଥର, ପାହାଡ଼ରେ ପଥର, ସବୁଠି ତ ପଥର ଅଛେ ।

ନାଇଁ - ଏଇଟା ଏନ୍‌ତା ସେନ୍‌ତା ପଥର ନୁହେଁ । ଏଇ ପଥରରେ କ'ଣ ଗୋଟାଏ ଅଛେ ମୁଁ ଶୁଣିଥିଲି, ଶୁଣିଥିଲି ଯେ, ମୁଁ ମୂରୁଖଟା କ'ଣ ମନେରଖି ପାରିଥାଆନ୍ତି । ଏଇ ପଥରରୁ କ'ଣ ଗୋଟାଏ ବାହାରିବ, ତା' ପାଇଁ ଗୋଟେ କାରଖାନା ବସିବ । ଏଇ ପାହାଡ଼, ଡଂଗର ଓ ଆମର ଘର ତଳେ ସେ ପଥରର ଖଣି । ତାକୁ ବାହାର କରିବେ ସେମାନେ ।

ତୁ ଏତେ କଥା କେନ୍‌ତା ଜାଣିଲୁ ?

ସେମାନେ ମୁଖିଆକୁ ବୁଝାଇବା ବେଳେ ମୁଁ ଟିକେ ଟିକେ ଯାହା ଶୁଣିଛି, ହଉ ମୁଖିଆ ଆସୁ ଜଣାପଡିଯିବନି କି ସତଟା କ'ଣ

ହଉ ବେଳ ତ ବୁଡ଼ିବାକୁ ବସିଲାଣି, ମୁଖିଆ ଫେରି ଆସୁଥିବ, ବଳେ ସବୁ କଥା ଜଣାପଡ଼ିଯିବ ।

ମୁଖିଆ ଫେରିଲା । ମୁଖିଆକୁ ଦେଖିଲେ ଲାଗୁଥିଲା ଯେମିତି କେଉଁ ଗୋଟେ ଡାହାଣୀ ଶୋଷିନେଇଛି ତା'ର ରକ୍ତ । ଦିଶୁଥିଲା ଶୁଖିଲା ଶୁଖିଲା । ଆସୁ ଆସୁ ନଥି କରି ବସିଗଲା ମଝି ଚଉତରାରେ । ବସିଯାଇ କେବଳ କହିଲା – ପାଏନ୍, ପାଏନ୍ ।

ଜଣେ ଧାଇଁ ଯାଇଁ ବେଲାରେ ଧରି ଆସିଲା ବେଲାଏ ପାଣି । ପାଣିତକ ଢକ୍‌ଢକ୍ କରି ପିଇଦେଇ କାନ୍ଧରୁ ଗାମୁଛା କାଢ଼ି ପୋଛିଲା ମୁହଁ । ଜଣକ ଆଡକୁ ନିର୍ଦ୍ଦେଶ ଦେଲା ଲଗା ପିକାଟାଏ । ଠୋସ୍ ସୁଟ୍‌କାଟିଏ ମାରିଲା । ଏକାଥର ଏତେ ଧୂଆଁ ଛାଡ଼ିଲା ଯେ ଧୂଆଁ ଭିତରେ ଲୁଚିଗଲା ମୁହଁ ।

ପିକାରେ ସୁଟ୍‌କା ଲଗାଇସାରିବା ପରେ ଯାଇ ସ୍ୱାଭାବିକ ହେଲା ମୁଖିଆ । ମନକୁ ମନ କହିଲା କେତେ ଆଉ ମନା କରିଥାଆନ୍ତି ? କେମିତି ବା ବୁଝାଇ ପାରିଥାଆନ୍ତି ଏ ଜଂଗଲ, ଏ ଡଂଗର, ଏ ମାଟି, ଏ ଝରଣା,ଏହାର ସବୁ ଗଛବୃଛ ଆମର ମାଆ, ଏହାର ସବୁ ପଥର ଆମର ଦେବୀ, ଆମେ ଏସବୁକୁ ଛାଡ଼ି ଚାଲିଯିବା କଥା କେନ୍‌ତା କହୁଛନ୍, ଆପଣ ବାବୁମାନେ ? କିଏ କ'ଣ କାହାର ମାଆକୁ ଛାଡ଼ି ଚାଲିଯାଇପାରିବ । ତମେ ଏଠି କାରଖାନା ବସାଇବ, ବସା । ଆମେ କ'ଣ ମନା କରୁଛୁ ? ହେଲେ ଆମେ ଉଠିବା କଥା କାହିଁକି କହୁଛ ? କାହିଁ କେତେ ଯୁଗରୁ ତ ଏଠି ପଥର ଥିଲା, ଆମର ବାପ ଦାଦି, ପରଦାଦିମାନେ କେହି ଉଠି ଯାଇନଥିଲେ । ଆମେ ଏବେ ଉଠିବୁ କାହିଁକି ? ତମେ ଯେଉଁ ପଥର ପାଇଁ ଆମକୁ ଉଠାଇବ ବୋଲି କହୁଛ, ସେଇ ପଥର ତ ଆମର ଦେବତା, ଆମ ଦେବତା ପାଇଁ ଆମକୁ ଉଠିବାକୁ ପଡ଼ିବ, ଗାଆଁ ଛାଡ଼ିବାକୁ ପଡ଼ିବ, ଇଏ କେମିତିକା କଥା ? ତମେ କାରଖାନା ବସାଇବତ ବସା, ଆମେ ବି ତ କୁଡ଼ିଆ ବନେଇଛୁ ନା । ଆମକୁ ଯେମିତି ମନା କରିନି ଏ ଡଂଗର କୁଡ଼ିଆ ପାଇଁ, ତମକୁ ବି ମନା କରିବନି ତମର କାରଖାନା ଘର ପାଇଁ । ହେଲେ ତମ ଘର ପାଇଁ ଆମକୁ ବେଘର କିଆଁ ?

ସମସ୍ତେ ଘେରିଥାଆନ୍ତି ମୁଖିଆକୁ, ହେଲେ କେହି କିଛି ପଚାରୁ ନ ଥାନ୍ତି । କିଏ କ'ଣ ଜାଣିଛି ଯେ କାରଖାନା କ'ଣ, ପଥରରୁ କ'ଣ ବାହାର କରିବେ ଯେ ପଚାରି ଥାଆନ୍ତେ ?

ସମସ୍ତଙ୍କ ନୀରବତାକୁ ଲକ୍ଷ୍ୟ କରି ମୁଖିଆ କହିଲା – ମୁଁ ଯେତେ କହିଲେ ବି ବୁଝିଲେନି ସେମାନେ । ସମସ୍ତଙ୍କର ସେଇ ଗୋଟିଏ କଥା – ସରକାର କହୁଛନ୍ତି, ସରକାର କହୁଛନ୍ତି । ହେଲେ ମୁଁ ଦେଖିପାରିଲନି ସେ ସରକାରଟା କିଏ ।

ଏବେ ତାହେଲେ ଆମେ କ'ଣ କରିବା ?

ହୁଁ – କ'ଣ କରିବା ? ସରକାର ସାଙ୍ଗରେ ତ ଆମେ ଲଢ଼ାଇ କରିପାରିବାନି । ସେମାନେ ସବୁ ସୁବିଧା କରିଦେବେ ବୋଲି କହୁଛନ୍ତି । ଘର କରିଦେବେ, ଜମିବି ଦେବେ ଖେତ କରିବାକୁ, ଘୁଷୁରି, ଛେଳି, କୁକୁଡ଼ା ପାଇଁ ଋଣ ବି ଦେବେ । ସ୍କୁଲ ବି କରିବେ, ଡାକ୍ତରଖାନା ବି । ସବୁ ସୁବିଧା ଦେବେ, ଆମ ପିଲାଏ ପାଠ ପଢ଼ିବେ, ପାଠ ପଢ଼ି ସରକାର ହେବେ । ତାହାହେଲେ ତମେ କହୁଛ ଆମେ ଏ ଗାଆଁ ଛାଡ଼ି ଚାଲିଯିବା ପାଇଁ ।

ନ ଯାଇ ଆଉ କ'ଣ କରିପାରିବା ଯେ ? ସରକାର ସାଙ୍ଗରେ ଲଢ଼ିବାକୁ କ'ଣ ଆମର ବଳ ଅଛି ?

ହଉ ତୁଇ ଯେଉଁଟା ଭଲ ଭାବିଲୁ କଲୁ । ତୁ ଯୁଆଡ଼େ, ଆମେ ସିଆଡ଼େ ।

ନୟନଗିରିରୁ ନୂଆ କଟକ । ଦଶକୋଶର ଦୁର୍ଗମ ରାସ୍ତାକୁପାରହୋଇ ଆସିଲା ପରେ ସେମାନଙ୍କ ପାଇଁ ଅପେକ୍ଷା କରିଥିଲା ଟ୍ରକ୍‌ଗୁଡ଼ାଏ । ସମସ୍ତେ ନିଜ ନିଜର ଆସବାବପତ୍ର ଧରି ଚଢ଼ିଲେ ଟ୍ରକ ଡାଲାରେ । ଆସବାବପତ୍ର ବୋଇଲେ କିଛି ବଙ୍କା ଚେପା ରସ ହାଣ୍ଡି, କଡ଼େଇ, ଶିକାର ପାଇଁ ବର୍ଛା, କାଠ ବାହୁଙ୍ଗି, ସଲପଠେକି, ପିକା ପାଇଁ ଧୂଆଁପତ୍ର ବିଡ଼ା ଓ ଏଣୁ ତେଣୁ ଆଳିମାଳିକା କିଛି । ସାଙ୍ଗରେ ଥାଆନ୍ତି ପଟେ ଅଧେ ଘୁଷୁରି, କୁକୁଡ଼ା, ପ୍ରତ୍ୟେକ ନିଜ ନିଜର ଜିନିଷପତ୍ରର ବୁଜୁଳାଟିକୁ କୁକୁଡ଼ା କୁଡ଼୍‌କି ବସିବା ପରି ଧରି ବସିଥାଆନ୍ତି ।

ଗାଡ଼ି ପହଞ୍ଚିଲା ନୂଆ କଟକରେ । ଓହ୍ଲା, ଓହ୍ଲା କହି ଡାକ ଛାଡ଼ିଲା ଟ୍ରକ୍‌ର ହେଲ୍‌ପର ପିଲା । ଛେଳିକୁ ହାଣକୁ ନେବା ପରି ଜଣ ଜଣ କରି ଓହ୍ଲାଇଲେ ଟ୍ରକ୍ ଉପରୁ । ସେଠାରେ ଆଗରୁ ଅପେକ୍ଷା କରିଥିବା କମ୍ପାନୀର ଲୋକ ଜଣେ ତାଙ୍କର ମୁଖିଆକୁ ଡାକିନେଲା ନୂଆ କରି ତିଆରି କରାଯାଇଥିବା ଘର ପାଖକୁ । କହିଲା – ଦେଖ୍, ତମେ କେମିତିକା ଘରେ ଥିଲ, ଏ ଘର କେମିତି ? ରାସ୍ତା ନ ଥିବା ଦଶକୋଶ ଜଂଗଲ, ପାହାଡ଼, ଝରଣା ଡେଇଁ କରି ଗଲେ ପଡୁଥିଲା ଯାଇ ତମ ଗାଆଁ, ଏଠି କେମିତି ତମ ଘର ଆଗରେ ରାସ୍ତା, ପିଇବା ପାଣି ପାଇଁ ଟିଉବ୍‌ୱେଲ୍, ପିଲାଙ୍କ ପାଠ

ପଢ଼ା ପାଇଁ ସ୍କୁଲ ଘର ତିଆରି ହୋଇଛି । କ'ଣ ମିଳିଥାଆନ୍ତା ସେ ଜଙ୍ଗଲ ଭିତରେ ରହି ପଚି ସଢ଼ି ମରିଯାଇଥିଲେ ? ତମେ ଏବେ ଅନ୍ଧାରରୁ ଆଲୁଅକୁ ଆସିଲ, ଦୁନିଆ ଦେଖିବ ଦୁନିଆ । ତୋ' ଲୋକମାନଙ୍କୁ କହିଦେ, ସେମାନେ ଯାଇ ନିଜ ନିଜ ଘରକୁ ଦେଖନ୍ତୁ ।

ମୁଖିଆ ପାଟିରୁ ବାହାରୁ ନ ଥିଲା ବଚନ । ସେ ଯାଇ ଠିଆ ହେଲା ତା' ଲୋକମାନଙ୍କ ପାଖରେ । ସେମାନେ ଥିଲେ ଖୁବ୍ ସନ୍ତ୍ରସ୍ତ । ତାଙ୍କ ଚାରିପଟେ ଏତେ ଶୀଘ୍ର ଶୀଘ୍ର ଘଟିଯାଉଥିବା ଘଟଣାମାନଙ୍କୁ ନା' ସେମାନେ କିଛି ବୁଝିପାରୁଥିଲେ ନା ପରତେ ଯାଇପାରୁଥିଲେ । ସବୁ ଘଟଣା ସେମାନଙ୍କୁ ଲାଗୁଥିଲା ଅଲୌକିକ-ଅଲୌକିକ । କେବଳ ବିସ୍ମୟାବିମୂଢ଼ ହୋଇ ନିରୀହ ଶଶା ଛୁଆଙ୍କ ପରି ସେମାନେ ଚାହୁଁଥିଲେ ଏପଟ ସେପଟକୁ ।

ମୁଖିଆ ବୁଝୁଥିଲା ସେମାନଙ୍କର ବିବଶତା । ତଥାପି କହିଲା ଯାଅ ଯିଏ ଯେଉଁ ଘରେ ରହିବ ଦେଖି ଦିଅ ।

କେତେ ଜଣ ହାଣମୁହଁକୁ ନେବାପରି ଘର ପାଖକୁ ଯାଇ ପୂର୍ବ ଅଭ୍ୟାସବଶତଃ ଗୁରୁଣ୍ଡି ଗୁରୁଣ୍ଡି ଘର ଭିତରକୁ ପଶିଲେ । ଏପଟ ସେପଟ ହୋଇ କିଛି ସମୟ ନିରୀକ୍ଷଣ କରି ପୁଣି ବାହାରି ଆସିଲେ ।

ମୁଖିଆ ପଚାରିଲା - ଘର ଦେଖିଲ ? ହଇ, ହେଲେ ଆମର କୁଲିମୁଣ୍ଡା କାଇଁ ?

କାରଖାନା ତରଫରୁ ଆସିଥିବା ଲୋକଟି ତା' ପାଖକୁ ଯାଇ ପଚାରିଲା କ'ଣ ଚାହୁଁଛ, କୁହ ମୋତେ କୁହ !

ମୁଖିଆ କହିଲା - ଆମମାନଙ୍କ ଘର ଆଗରେ କୁଲି ମୁଣ୍ଡା ଥାଏ । ଯେଉଁଠାରେ ଆମେ ପୂଜା ପାର୍ବଣରେ ବଳି ଦେଉ ଗାଆଁର ତଥା ଘରର ସୁଖସମୃଦ୍ଧି ଓ ଆମର ଦେହ ପା' ପାଇଁ । ଏଠି ସେଇଟା ନାହିଁ ତ । ସେଥିପାଇଁ ସେମାନଙ୍କ ମନ ଊଣା ହେଉଛି ।

ଓହୋ । ଇଏ ଗୋଟେ କଥା ? ତମେ ଏଇନେ ରହିଯାଅ, ତମର ଯାହାଯାହା ଦରକାର ଆମେ ସବୁ ତିଆରି କରାଇଦେବୁ ।

ଦଳେ ଧାଙ୍ଗିଡ଼ି ଯେଉଁମାନେ ଟିକେ ବାଆଁରେଇ ବୁଲୁଥିଲେ । ମୁଖିଆ ପାଖକୁ ଆସି କରି କହିଲେ - ଆମର ଆଦିସ୍ ବେଟା କାହିଁ, ଏଠିତ ସେମିତିକା ଘର ନାହିଁନା ?

ଆଚ୍ଛା - ଆଚ୍ଛା, ସେମିତି ଏକ ଘର ଆମେ ବି ଏଠି ତିଆରି କରିଦେବୁ । ଦେଖ ଏବେ ମନ୍ତ୍ରୀଙ୍କ ଆସିବା ବେଳ ହୋଇଗଲାଣି । ତମେ ତମ ଲୋକମାନଙ୍କୁ କୁହ ସେମାନେ ତାଙ୍କର ପାରମ୍ପରିକ ବେଶଭୂଷାରେ ଯେମିତି ମନ୍ତ୍ରୀଙ୍କୁ ସ୍ୱାଗତ କରିବେ ।

ନିର୍ଦ୍ଦିଷ୍ଟ ସମୟର କେତେ ଘଣ୍ଟା ପରେ ମନ୍ତ୍ରୀ ଆସିଲେ । ସେ ପହଞ୍ଚିବା କ୍ଷଣି ଚଞ୍ଚଳ ହେଇ ଉଠିଲା ପରିବେଶ । ପ୍ରସ୍ତାବିତ କାରଖାନାର ବହୁ ପଦସ୍ଥ କର୍ମଚାରୀ ପାଛୋଟିନେଲେ ମନ୍ତ୍ରୀଙ୍କୁ, ସେହି ଆଦିବାସୀ ଲୋକମାନେ ମଧ ତାଙ୍କର ବିଭିନ୍ନ ପ୍ରକାରର ବେଶଭୂଷା ଓ ବାଦ୍ୟ ବଜାଇ ନାଚି ନାଚି ସ୍ୱାଗତ କରିଥିଲେ ମନ୍ତ୍ରୀଙ୍କୁ ।

ମନ୍ତ୍ରୀ ମହୋଦୟ ବିସ୍ଥାପିତ ପୁନର୍ବାସ ଯୋଜନାରେ ନିର୍ମିତ ହୋଇଥିବା ବସ୍ତିଟିର ଚାରିପଟେ ଥରେ ବୁଲି ଆସି ସନ୍ତୋଷ ହେବାପରି ମନୋଭାବ ପ୍ରକାଶ କଲେ । ମନ୍ତ୍ରୀଙ୍କର ସନ୍ତୋଷ ଭାବ ଦେଖି କାରଖାନାର କର୍ମଚାରୀମାନେ କୃତକୃତ୍ୟ ହେଉଥିଲେ । ଜଣେ ବରିଷ୍ଠ ଅଧିକାରୀ ମନ୍ତ୍ରୀଙ୍କୁ କହିଲେ - ଏମାନେ ଜଙ୍ଗଲି ମଣିଷ ସାର୍ । କମ୍ କଷ୍ଟ କରାଇଯାଇନି ଏମାନଙ୍କୁ ବୁଝାଇ ଶୁଝାଇ ଏଠିକୁ ଆଣିବା ପାଇଁ । ସେମାନଙ୍କର ସେହି ଗୋଟିଏ ଜିଦ୍ ଆମର ଡଙ୍ଗର ଭଲ ତ ଆମେ ଭଲ । ତମ କାରଖାନା ପାଇଁ ଆମେ କାହିଁକି ଗାଆଁ ଛାଡ଼ିବୁ । ବହୁ କଷ୍ଟରେ ସେମାନଙ୍କ ମୁଖିଆ ରାଜି ହେଲା । ତାଙ୍କ ମନକୁ ପାଇବା ପାଇଁ ଏ ଘରଗୁଡ଼ିକୁ ମଧ ଆକର୍ଷଣୀୟ କରାଯାଇଛି । ତାଙ୍କ ପରମ୍ପରାକୁ ଚାହିଁ ଆଉ ଯାହା ଯାହା ସେମାନେ ଚାହୁଁଛନ୍ତି, ସେ ସବୁ କରିଦେବାର ପ୍ରତିଶ୍ରୁତି ଦେଇଛୁ ।

ସ୍ୱାଗତ ସମ୍ବର୍ଦ୍ଧନାର ପର୍ବ ସରିବା ପରେ ଆରମ୍ଭ ହେଲା ଭାଷଣ ପର୍ବ । କାରଖାନାର ପରିଚାଳନା ନିର୍ଦ୍ଦେଶକ ସ୍ୱାଗତ ଭାଷଣ ଦେବା ପରେ ପ୍ରଥମେ ଅନୁରୋଧ କଲେ କୁଟିଆ ନେତା କାରୁଙ୍କୁ ଅଭିଭାଷଣ ଦେବା ପାଇଁ । ସେ ମଞ୍ଚ ତଳରୁ ଉଠିକରି ମଞ୍ଚକୁ ଗଲେ ଭାଷଣ ଦେବା ପାଇଁ । ମନ୍ତ୍ରୀ ତା ମୁହଁକୁ ବିସ୍ମୟରେ ଥରେ ଚାହିଁଦେଇ, ଅନେଇଲେ, ପରିଚାଳନା ନିର୍ଦ୍ଦେଶକଙ୍କ ମୁହଁକୁ । ସେ ମନ୍ତ୍ରୀଙ୍କ ମନୋଭାବକୁ ଠିକ୍ ରୂପେ ପଢ଼ି ନେଇ ନିଜର କାନଟିକୁ ମନ୍ତ୍ରୀଙ୍କ ପାଟି ପାଖକୁ ଘୁଞ୍ଚାଇ ଆଣିଲେ । ମନ୍ତ୍ରୀ କହିଲେ - ୟାକୁ ତ ମୁଁ ନୟନଗିରି ଆନ୍ଦୋଳନ ସମୟରେ ବହୁବାର ଟି.ଭି.ରେ ଦେଖିଛି । ଲମ୍ବା ଲମ୍ବା ବାଳକୁ ତେଲ ମାରି ପାରିକରି କୁଣ୍ଡାଇ ତା’ ଉପରେ ଦଶ ପନ୍ଦରଟି ହେୟାର କ୍ଲିପ୍ ମାରିଥାଏ ଓ ପଛରେ ଖୋଷିଥାଏ କାଠ ପାନିଆଟେ । ମାତ୍ର ଦାବିଗୁଡ଼ିକୁ ଶୁଦ୍ଧ ଓଡ଼ିଆରେ ଏମିତି କହେ ଯେ ମୋରତ ତାକୁ

ଦେଖି ସନ୍ଦେହ ହେଉଥିଲା ଇଏ କୁଟିଆ କନ୍ଧ ପିଲା ବୋଲି । ସିଏ ତ କାରଖାନାର କଟ୍‌ଟର ବିରୋଧୀ ।

ଆପଣ ତାକୁ ଠିକ୍ ଚିହ୍ନିପାରିଛନ୍ତି ସାର୍ । ଏଇ ପିଲା ଏଠିକାର ଗୋଟିଏ ଏନ୍.ଜି.ଓ.ରେ କାମ କରି ସେମାନଙ୍କ ସହ ମିଶୁଥିଲା । କାରଖାନା ବିରୋଧୀ ଆନ୍ଦୋଳନରେ ଯେତେବେଳେ ବହୁ ନେତା ଏଠାକୁ ଆସୁଥିଲେ ସେ ଇଣ୍ଟରପ୍ରିଟର ଭାବେ କାର୍ଯ୍ୟକଲା । ଏ କାମ କରୁକରୁ ସେ କୁଟିଆ କନ୍ଧମାନଙ୍କର ସ୍ୱୟଂ ଘୋଷିତ ନେତା ହୋଇଗଲା । ହେଲେ ସିଏତ ଏଠାରେ ବିସ୍ଥାପନ ବିରୋଧରେ କହିବ । ନା – ସାର୍, ତା'ର ସେ ସ୍ୱର ଆମେ ଆଉ ରଖି ନାହୁଁ । ସିଏ ପ୍ରଥମେ ପ୍ରଥମେ ଏଠିକାର ସବୁଜ ବାହିନୀରେ ମିଶି ଖୁବ୍ ହାଲ୍ଲା – ହୋଲ୍ଲା କରୁଥିଲା । ସବୁଜ ବାହିନୀ ନେତାଙ୍କ ସହ ମିଶି ଦିଲ୍ଲୀ ଯାଇଥିଲା ଦାବି ଜଣାଇବାକୁ । ସେ ଦିଲ୍ଲୀରେ ପହଞ୍ଚିବା କ୍ଷଣି ଆମର କର୍ପୋରେଟ ଅଫିସ୍ ତାକୁ ସେଠାରେ ଧରି ପକାଇଲେ । ସେଠାରୁ ଫେରିବା ପରେ ତା'ର ସ୍ୱର ଏକଦମ ବଦଳି ଯାଇଛି । ଆପଣ ଦେଖିବେ ନାହିଁକି ? ଶୃଗାଳଟିଏ ବାଘଛାଲ ପିନ୍ଧି କେତେଦିନ ରହି ପାରିଥାଆନ୍ତା ? ଦି'ଟା ବିଡ଼ାରେ ସେ ପାଟି ଚୁପ୍ କରି ପକ୍ଷ ବଦଳାଇ ଦେଲା, ହେଲେ ଆଗାମୀ ନିର୍ବାଚନକୁ ଆଖି ଆଗରେ ରଖି ସେ ବେଶ ବଦଳାଇପାରିନାହିଁ । ସେ କୁଟିଆ କନ୍ଧ ନୁହେଁ ଆଜ୍ଞା ।

ମନ୍ତ୍ରୀ ଆଗ୍ରହ ସହକାରେ କାନ ପାତିଲେ ତା'ର ଭାଷଣକୁ । ସେ ଆରମ୍ଭ କଲା ଶିଳ୍ପ ବିପ୍ଳବରେ କେମିତି ପ୍ରଗତି ଆସିବ । କେମିତି ତୁଚ୍ଛା ରାଜନୀତିକ ଉଦ୍ଦେଶ୍ୟରେ ବିରୋଧୀ ଦଳର ସ୍ଥାନୀୟ ନେତା ତାକୁ ଭୂଆଁ ବୁଲାଉଥିଲେ । ସଭ୍ୟତାଠାରୁ ଦୂରରେ, ପ୍ରଗତିଠାରୁ ଦୂରରେ ରହି, ପ୍ରକୃତିର ମଣିଷ କହି ଆମେ ନିଜକୁ ଅନ୍ଧାର ଭିତରେ ଆଉ କେତେ ଦିନ ଅବା ରଖିଥାଆନ୍ତୁ । ଏ ଅଞ୍ଚଳରେ ଶିଳ୍ପ ପ୍ରତିଷ୍ଠା ଯୋଗୁ ପ୍ରଗତି ଆସିବ ଏବଂ ସେ ପ୍ରଗତିର ଫଳତ ମୋ ଭାଇମାନେ ପାଇବେ, ଏହି ଆଶା ଓ ବିଶ୍ୱାସ ରଖି ମୁଁ ଚାହିଁଲି ଏଠି କାରଖାନା ପ୍ରତିଷ୍ଠା ହେଉ । ଏ କାରଖାନା କେବଳ ଏକ କାରଖାନା ନୁହଁ ଏହା ଆମମାନଙ୍କର ପ୍ରଗତିର ପ୍ରତୀକ ।

ମନ୍ତ୍ରୀ ଆଶ୍ୱସ୍ତ ହେଲେ ଯେ ପିଲାଟି କୌଣସି ସରକାର ବିରୋଧୀ ମନ୍ତବ୍ୟ ନ ଦେଇ କାରଖାନା ପ୍ରତିଷ୍ଠାକୁ ସମର୍ଥନ କଲା । ପରବର୍ତ୍ତୀ ବକ୍ତା ହିସାବରେ ମନ୍ତ୍ରୀ ମହୋଦୟ ଭାଷଣ ଦେବାକୁ ଉଠିବା ବେଳକୁ ବହୁମାତ୍ରାରେ ଉତ୍ସାହୀ ହୋଇ ପଡ଼ିଥିଲେ ।

ମନ୍ତ୍ରୀ ମହୋଦୟ ଭାଷଣ ଆରମ୍ଭ କରି କହିଲେ ଆମ ସରକାର ପ୍ରଗତିରେ ବିଶ୍ୱାସ କରେ । ଆମେ ଶିଳ୍ପ ପ୍ରତିଷ୍ଠାର ଧୂଆଁବାଣ ସୃଷ୍ଟି କରି ହଜାରେ ଦିନରେ ହଜାରେ ଶିଳ୍ପ କଥା କହୁନା । ପ୍ରାକୃତିକ ସମ୍ପଦରେ ଭରପୂର ଆମ ରାଜ୍ୟ ସେ ପ୍ରକୃତି ପ୍ରଦତ୍ତ ସମ୍ବଳକୁ ବିନିଯୋଗ କରି କିପରି ସାଧାରଣ ଲୋକଙ୍କର ମଙ୍ଗଳ କରିପାରିବ ଏକଥା ଚିନ୍ତା କରୁଛି । ଆମେ କାରଖାନା ବସାଉଛୁ । ଏଥିପାଇଁ ଲୋକେ ବିସ୍ଥାପିତ ହେଉଛନ୍ତି, ହେଲେ ଆମର ଜନମଙ୍ଗଳକାରୀ ବିସ୍ଥାପନ ନୀତି ଆଜି ବିଶ୍ୱରେ ପ୍ରଶଂସିତ । ଏଇ ଗୋଟିଏ ଉଦାହରଣ ଏଇ ଲୋକମାନଙ୍କ ପାଇଁ ନିର୍ମିତ ଘର, ଏମାନଙ୍କୁ ଯୋଗାଇ ଦିଆଯାଇଥିବା ସୁବିଧା ସୁଯୋଗ ହିଁ ଯଥେଷ୍ଟ ଆମ ସରକାରଙ୍କର ମାନବ ସମ୍ବେଦୀ ବିସ୍ଥାପନ ନୀତିର ।

ଏଠି କେବଳ ବିସ୍ଥାପିତମାନଙ୍କୁ ଘର ଯୋଗାଇ ଦେଇ ଆମେ ଆମର ଦାୟିତ୍ୱ ସରିଗଲା ବୋଲି ଭାବୁନୁ । ସେଥିପାଇଁ ପ୍ରତ୍ୟେକ ପରିବାରକୁ ଚାଷ ଜମି, ଚାଷ କରିବା ପାଇଁ କୃଷିଋଣ ଏବଂ ଅନ୍ୟାନ୍ୟ ବୃତ୍ତି ଓ ବ୍ୟବସାୟ କରିବାକୁ ମଧ୍ୟ ଋଣ ଯୋଗାଇ ଦେବାର ବ୍ୟବସ୍ଥା କରିଅଛୁ । ଏଥି ସହ ଆପଣମାନଙ୍କର ସଂସ୍କୃତିର ସୁରକ୍ଷା ଦିଗରେ ମଧ୍ୟ ଆମେ ଯତ୍ନବାନ୍ । ଏଠାରେ ଯଦିଓ ଆମେ ଆପଣମାନଙ୍କୁ ନିଘଞ୍ଚ ଜଙ୍ଗଲ ଘେରା ପରିବେଶ ଦେଇପାରବୁ ନାହିଁ, ତଥାପି ଆପଣମାନଙ୍କର ନାଚଗୀତ, ପର୍ବପର୍ବାଣି କିଭଳି ଆଗଭଳି ବଜାୟ ରହିପାରିବ ସେ ଦିଗରେ ଦୃଷ୍ଟି ଦେବାକୁ ମୁଁ କାରଖାନା କର୍ତ୍ତୃପକ୍ଷଙ୍କୁ ନିର୍ଦ୍ଦେଶ ଦେଇଛି ।

ମନ୍ତ୍ରୀଙ୍କ ଭାଷଣ ସରିଲା, ଭୋଜିଭାତ ବି ସରିଲା, ଧୀରେ ଧୀରେ ସଭାସ୍ଥଳରୁ ଫାଙ୍କା ହୋଇଗଲା ଗୋଟିଏ ପରେ ଗୋଟିଏ ଗାଡ଼ି । କାରଖାନା ତରଫରୁ ଯେଉଁ ଲୋକ ଜଣଙ୍କ କୁଟିଆ କନ୍ଧମାନଙ୍କୁ ଏଠାକୁ ଆଣି ରଖାଇବାର ଦାୟିତ୍ୱ ନେଇଥିଲେ ସେ ବି ଖୁବ୍ ଉଶ୍ୱାସରେ କହିଲେ – ଯାଅ, ଏବେ ତମେମାନେ ଯେଝା ଯେଝା ଘରକୁ ଯାଅ । କିଛି ଅସୁବିଧା ହେଲେ ମୋତେ ଜଣାଇବ । ମୁଁ ଏବେ ଘରକୁ ଯାଉଛି ।

ସବୁ ଚାଲିଯିବା ପରେ ମଧ୍ୟ ସେ ଲୋକମାନେ ମେଳି ହୋଇ ବସି ରହିଥିଲେ । ସମସ୍ତେ ଥିଲେ ଚୁପ୍‌ଚାପ୍ । କେବଳ ଯା' ମଝିରେ ମଝିରେ ସେମାନଙ୍କ ପାଳିତ ଶିକାରୀ କୁକୁରଗୁଡ଼ିକ ଭୁକି ଉଠି ସେ ସ୍ଥାନର ନୀରବତାକୁ ଭଂଗ କରୁଥିଲେ । ମୁଖିଆ ବଡ଼ କଷ୍ଟରେ କହିଲା – ଯାଅରେ ଯେଝା ଯେଝା ଘର ଭିତରକୁ ଯାଅ ।

ସେମାନଙ୍କ ଭିତରୁ କେତେକ ପୁରୁଷ ଓ ସ୍ତ୍ରୀଲୋକ ଥରେ ଥରେ ସେ ଘର ଭିତରକୁ ପଶିଯାଇ ବାହାରକୁ ବାହାରି ଆସୁଥାଆନ୍ତି । ସମସ୍ତଙ୍କ ମୁହଁରେ ଫୁଟି ଉଠୁଥିଲା ବ୍ୟଥାର ଗଭୀର ଆଭାସ, ଯେମିତି ମୁକ୍ତ ଆକାଶର ଦଳେ ବିହଙ୍ଗ ହଠାତ୍ ଶିକାରୀ ଜାଲରେ ପଡ଼ିଯାଇ ବନ୍ଦୀ ହୋଇଯାଇଛନ୍ତି ।

ଧୀରେ ଧୀରେ ବଢୁଥିଲା ରାତି, ଅଥଚ କେହି ପଶୁ ନ ଥିଲେ ନିଜ ନିଜର ଘର ଭିତରକୁ । ଶେଷରେ ମୁଖିଆ ତା'ର ଶିଙ୍ଗା ବାହାର କରି ଜୋର୍‌ରେ ଫୁଙ୍କିଲା । ମୁଖିଆର ଶିଂଗା ଫୁଙ୍କା ଦେଖି ସମସ୍ତେ ଠିଆ ହୋଇ ପଡ଼ିଲେ ମୁଖିଆର ପରବର୍ତ୍ତୀ ନିର୍ଦ୍ଦେଶ ଶୁଣିବାକୁ । ମୁଖିଆ କହିଲା ଆମର ଡଂଗର ଭଲ ତ ଆମେ ଭଲ । ଆମେ ଏଠି ନାହିଁ ଚଳିପାରିବା । ଚାଲ ଜଙ୍ଗଲକୁ ଚାଲ ।

ବାସ୍- ମୁଖିଆ ତୁଣ୍ଡରୁ ଯେମିତି ଏତକ ଶୁଣିବାକୁ ସମସ୍ତେ ଅପେକ୍ଷା କରିଥିଲେ । ତା'ପରେ ଆଉ କାହାରିକୁ ଡର ନଥିଲା ନିଜ ନିଜ ଜିନିଷପତ୍ରର ବୁଜୁଳା ଧରି ଜଙ୍ଗଲ ଆଡକୁ ଧାଇଁବାରେ ।

ପରଦିନ ସକାଳୁ ଖବର ପାଇ କାରଖାନା କର୍ତ୍ତୃପକ୍ଷ ଆସିଲା ବେଳକୁ ସେଠାରେ କେବଳ ପଡ଼ିଥିଲା ଗତକାଲିର ସଭା ପାଇଁ ଆସିଥିବା ମଉଳା ଫୁଲ ଓ ଭୋଜିଭାତ ଖିଆ ଯାଇଥିବା ଖଲିଦନା । ଭୁଲରେ କିଏ ବୋଧେ ଛାଡ଼ି ଦେଇଯାଇଥିବା କୁକୁରଛୁଆଟିଏ ଅର୍କ୍ଷିତ ପରି ଏପଟସେପଟ ହୋଇ ହୋଇ କୁଁ - କୁଁ କରି ଘୂରି ବୁଲୁଥିଲା । ଜଣେ ତାକୁ ଆ - ଆ, ଚୁ - ଚୁ କରି ଡାକିଲା ବେଳକୁ ସେ ମଧ୍ୟ ଅତର୍କ୍ଷ ଦୌଡ଼ିଲା ଜଙ୍ଗଲ ଭିତରକୁ ସେମାନଙ୍କ ଗନ୍ଧ ଶୁଂଘି ଶୁଂଘି ।



# ଭିଟାମାଟି

ଖବର ଆସି ପହଞ୍ଚିଲା କାଳିମାଟିର ଜଣେ ଲୋକ ଛାଡ଼ି ନାହିଁ ଘର। ସ୍ୱତନ୍ତ୍ର ଭୂ - ଅର୍ଜନ ଅଧିକାରୀ ହୋଇ ପଡ଼ୁଥିଲେ ବ୍ୟସ୍ତ। କମିଶନରଙ୍କ ପ୍ରୋଗ୍ରାମ ଅଛି। ଜଣେ ଲୋକ ବି ଯଦି ଘର ନ ଛାଡ଼ିଥାଏ, ତେବେ ରିପୋର୍ଟ ଦେଇ ହେବ ନାହିଁ ଯେ ସେ ଗାଆଁର ସମ୍ପୂର୍ଣ୍ଣ ବିସ୍ଥାପନ ହୋଇ ସାରିଛି ବୋଲି। ନିଜର ବିବଶତାକୁ ଚପାଇ ରଖିବାକୁ ଯାଇ ସେ ରାଗି କରି ପ୍ରଶ୍ନ କଲେ - କାହିଁକି ସେ ଛାଡ଼ିଲା ନାହିଁ ଘର ? କ'ଣ ତା'ର ଆଉ ରହିଗଲା ବାକି ?

ଆର୍.ଆଇ. ବିପ୍ରନନ୍ଦନ ଜାଣୁଥିଲେ ଘଟଣାର ପରିଣାମକୁ। ସେ ବଡ଼ ବିନୀତ ହୋଇ କହିଲେ - ତା'ର ଜମିଜମା, ଘରବାଡ଼ି, ଗଛବୃଛ ସବୁକୁ ହିସାବ କରି ତାକୁ ଚେକ୍ ଧରାଇ ଦିଆଯାଇଛି। ସେ ଲୋକଟା ଟିକେ ଅଡ଼ଙ୍ଗା କରିବ ବୋଲି ଆଶଙ୍କା କରି ତା'ର କଚ୍ଚା ଘରକୁ ପକ୍‌କା ଘର, ହାଲ୍ ଜମିକୁ ବାହାଲ କରି, ତା' ବାଡ଼ିରେ ଯେତେ ଗଛବୃଛ ନଥିଲା ତା'ଠାରୁ ଢେର ଅଧିକ ଦର୍ଶାଇ ତାକୁ କ୍ଷତିପୂରଣ ଦେଇଥିଲୁ ସାର୍।

ଏସବୁ ସତ୍ତ୍ୱେ ସେ ଛାଡୁ ନାହିଁ ଘର! କ'ଣ ଚାହୁଁଛି ସେ।

ବଳପୂର୍ବକ ତା'ର ସମସ୍ତ ଜିନିଷ ଟ୍ରାକ୍ଟରରେ ଭର୍ତ୍ତି କରି ତାକୁ ଖାଲି କରାଯାଇ ପାରିଥାଆନ୍ତା ସାର୍, ହେଲେ ଆମେ ଟିକିଏ ଆଗପଛ ଚିନ୍ତା କଲୁ।

କ'ଣ ଆଗପଛ ଚିନ୍ତା କଲେ ?

ଏବେ ବିଧାନସଭା ଚାଲିଛି। ବିସ୍ଥାପନ ନୀତି ପୁନର୍ନିର୍ଦ୍ଧାରଣ କରାଯିବାର ବିଲ୍ ମଧ୍ୟ ଅଛି ବିଧାନସଭାରେ। ବିସ୍ଥାପନ ଉପରେ ଏଇନେ ମାଛି ପଡ଼ିଲେ ନବଖଣ୍ଡ। ବିସ୍ଥାପନ ବିରୋଧୀ ମଞ୍ଚ ତ ଟାକି କରି ବସିଛନ୍ତି ଏମିତି ଘଟଣା ସବୁକୁ। ସେଥିକୁ ଏ ପ୍ରେସ୍‌ବାଲା, ଟି.ଭି. ବାଲା ତ ତିଳକୁ ତାଳ କରୁଛନ୍ତି। ତା' ଉପରେ ପୁଣି ଆମ

କମିଶନରଙ୍କ ହୁକୁମ - ଇଭାକ୍ୟୁଏସନ୍ ଉଇଥ୍ ଏ ହ୍ୟୁମାନ ଫେସ୍ । ଏହି ସବୁ କଥାକୁ ଦୃଷ୍ଟିରେ ରଖି ଆମେ ତା' ଉପରେ ବଳପ୍ରୟୋଗ କରିବାଟାକୁ ଉଚିତ ମନେ କଲୁ ନାହୁଁ ।

ହଁ ଠିକ୍ କଲ । ଭଲ କଲ । ହେଲେ ସେ ଲୋକଟା ଚାହୁଁଛି କ'ଣ ? ତା' ଗାଆଁର ସବୁ ଲୋକ ଘର ଛାଡ଼ିଯିବା ପରେ ସେ କ'ଣ ସେଇଠି ଏକୁଟିଆ ଥିବ ନା ସେଇ ଜଣକ ପାଇଁ ଆମେ ସେ ଗାଆଁଟାକୁ ଛାଡ଼ି ଦେଇପାରିବା ?

ସେ କ'ଣ ଚାହୁଁଛି କହିନି ସାର୍ ।

ତମେ ତାକୁ ପଚାରିଥିଲ ?

ପଚାରିବାକୁ ଯାଇ ବହୁ ଚେଷ୍ଟା ଓ କଷ୍ଟରେ ଯାଇ ତା' ପାଖରେ ପହଞ୍ଚିଥିଲୁ ।

କ'ଣ କହିଲା ସିଏ ?

ଆମେ ପହଞ୍ଚିବା ବେଳକୁ ସେ ତା' ଘର ପାଖ ଡଙ୍ଗର ଭିତରେ ଥିବା ଏକ ପାହାଡ଼ ଖୋଳରେ ଥିଲା । ଖୋଜି ଖୋଜି ସେଠି ଯାଇଁ ପହଞ୍ଚିଲୁ ବି । ହେଲେ ଆମେ ପହଞ୍ଚିବା ବେଳକୁ ସେ ସେହି ଖୋଳ ଭିତରେ ଥିବା ମାଆ ଦୁଆରସୁଣୀଙ୍କ ପୂଜାରେ ବସିଥିଲା । ଅପେକ୍ଷା କଲୁ ଢେର ସମୟ ଯାଏ, ହେଲେ ତା'ର ପୂଜା ସରିଲାନି କି ଧ୍ୟାନ ଭାଙ୍ଗିଲା ନାହିଁ । ଆଉ ସେଇ ପୂଜା ସମୟରେ ତାକୁ କିଛି ପଚାରିବା ପାଇଁ ମୁଁ ଭୟ ପାଇଲି ସାର୍ । ମୁଁ ଜାଣେ ସାର୍, ଏ ଆଦିବାସୀ ଲୋକଙ୍କ ପୂଜାରେ ସାମାନ୍ୟ ବିଘ୍ନ ହେଲେ ସେମାନେ ପୂଜି ଦେବାକୁ ବି ପଛାଇବେ ନାହିଁ ।

ଓଃ - ସେଇଠୁ ତମେ ଡରିକରି ପଳାଇ ଆସି ମୋତେ ଏ ଖବରଟା ଦେଉଛ ନୁହେଁ ? ସେ ଲୋକଟା କ'ଣ ତାନ୍ତ୍ରିକଟାଏ କି ?

ସେ ଗାଆଁର ଦିଶାରୀ ଥିଲା । ମାଆ ଦୁଆରସୁଣୀଙ୍କ ପୂଜକ ଓ ଭକ୍ତ ।

ତା' ମାନେ ସେ ତା'ର ସବୁ ପ୍ରାପ୍ୟ ପାଇସାରିବା ପରେ ମଧ ଗାଆଁ ଛାଡ଼ିବ ନାହିଁ ଓ ଆମେ ଆଖି ବୁଜି ଚୁପ୍‌ଚାପ୍ ରହିବା ।

ମୁଁ କ'ଣ କହୁଥିଲି କି ସାର - ସେ ଲୋକଟାର ଘର, ପାହାଡ଼ ଓ ଜଙ୍ଗଲ ମଧ୍ୟରେ ଏମିତିକା ଜାଗାରେ ଯେ ସେଠାକୁ କେହି ଯାଇପାରିବେ ନାହିଁ । ଏବେ କମିଶନରଙ୍କ ଗସ୍ତ ସମୟରେ ଆମେ ଯଦି ସମ୍ପୂର୍ଣ୍ଣ ବିସ୍ଥାପନ ସରିଛି ବୋଲି ରିପୋର୍ଟ ଦେଇଦେବା ତେବେ କିଛି ଅସୁବିଧା ହେବ ନାହିଁ ।

ହଇହୋ ବିପ୍ରବାବୁ– ତମେ ମନେ ମନେ ନିଜକୁ ଏକୁଟିଆ ଚାଲାକ ଭାବୁଛ ନୁହେଁ? କମିଶନର ଆସିବା କ୍ଷଣି ତ ଏ ସାମ୍ବାଦିକମାନେ ତାଙ୍କୁ ଘେରି କରି ବସିବେ । ସେମାନଙ୍କ ଭିତରୁ ଯଦି କିଏ ଏକଥା ଜାଣିଥାଏ ଆଉ ଜଣାଇ ଦିଏ, ତେବେ ମୋ ଚାକିରି ରହିବ ତ ? ନିଜର ବିଫଳତାକୁ ଘୋଡ଼ାଇବାକୁ ଯାଇ ଏଭଳି ମିଥ୍ୟାର ଆଶ୍ରୟ ନେବାକୁ ତମକୁ ନିଜକୁ ଖରାପ ଲାଗୁ ନାହିଁ ? ସେସବୁ କଥା ଛାଡ଼ି କାଲି ସକାଳୁ ବାହାର ମୋ ସାଙ୍ଗରେ । ସେ ଲୋକକୁ ଓ ତା' ଘର ମୋତେ ଦେଖାଇ ଦେବ, ଦେଖିବା କେମିତି ନଛାଡୁଛି ଘର ।

ସକାଳୁ ସକାଳୁ ସମସ୍ତେ ବାହାରିଲେ କାଳିମାଟି । କିଛି ବାଟ ଜିପ୍‌ରେ ଯିବା ପରେ ଆଉ ଆଗକୁ ଜିପ୍ ଯିବା ଭଳି ରାସ୍ତା ନ ଥିଲା । ଜିପ୍‌ରୁ ଓହ୍ଲାଇ ପଡ଼ି ସ୍ୱତନ୍ତ୍ର ଭୂ – ଅର୍ଜନ ଅଧିକାରୀ ପଚାରିଲେ – ଏଇଠୁ କେତେ ଦୂରରେ ସେ ରହୁଛି ?

ବାଟ ତ ବେଶିଦୂର ନୁହେଁ, ହେଲେ ଜଙ୍ଗଲ ଓ ପାହାଡ଼ିଆ ରାସ୍ତା । ସେଠିକୁ ପହଁଚିବାକୁ ହେଲେ ଘଣ୍ଟାଏ ଦେଢ଼ଘଣ୍ଟାରୁ କମ୍ ଲାଗିବ ନାହିଁ ।

ଘଣ୍ଟାଏ ଦେଢ଼ଘଣ୍ଟା ଚାଲିବାକୁ ପଡିବ ଭାବି କିଛି ସମୟ ଥଥ – ମମ ହୋଇ ଚିନ୍ତା କଲେ ସେ । ତା'ପରେ କହିଲେ – ହଉ ଆସିଛନ୍ତି ଯେତେବେଳେ ସେଠି ତ ଯାଇ ପହଞ୍ଚିବାକୁ ପଡ଼ିବ । ଚାଲ ତମେ ଆଗେ ଆଗେ ଆମକୁ ବାଟ ଦେଖାଇ ଚାଲ । ଡ୍ରାଇଭରକୁ କହିଲେ ତୁ ଥା' ଜିପ୍‌କୁ ଜଗିକରି ।

ଜଙ୍ଗଲର କଣ୍ଟା ଝଣ୍ଟା ଅଡ଼େଇ ଅଡ଼େଇ, ନାଳ, ଖାତ, ଖମାର ଡେଇଁ, ମଝିରେ ମଝିରେ ମୁଣ୍ଡିଆ ପାହାଡ଼ର ଚଟରା ଚଢ଼ି ସେମାନେ ଅଗ୍ରସର ହେଉଥିଲେ ଗନ୍ତବ୍ୟସ୍ଥଳକୁ । କିଛି ବାଟ ଚାଲିବା ପରେ ଥକ୍‌କା ହୋଇ ଗୋଟେ ଚଟରା ଉପରେ ବସିଯାଇ ସ୍ୱତନ୍ତ୍ର ଭୂ– ଅର୍ଜନ ଅଧିକାରୀ ପ୍ରଶ୍ନ କଲେ – ତମେ କ'ଣ ସତରେ ତା' ଘରକୁ ଯାଇ ତାକୁ ଭେଟିଛ ?

ହଁ ସାର, ନ ଯାଇ କ'ଣ ମିଛ କହି ଆପଣଙ୍କୁ ସେ ଜାଗାକୁ ନେଇ ଏତେ କଷ୍ଟ ଦେଉଛି ।

ଏଠିକି ଆସି ସରଜମିନ୍ ତଦନ୍ତ ନ କରିଥିଲେ ଏ କଷ୍ଟଠାରୁ ବଳି ପଡ଼ିଥାଆନ୍ତା ଆମ ହାକିମଙ୍କ ରୋକଡ଼ । ସେ ତ କିଛି ବୁଝିବେ ନାହିଁ, କଥା କଥାକେ କହୁଥିବେ ୟୁସ୍‌ଲେସ୍, ତମଦ୍ୱାରା କିଛି ହେବନି, ତମକୁ ସସ୍‌ପେଣ୍ଡ କରିବି, ଡିସ୍‌ମିସ୍ କରିବି ଇତ୍ୟାଦି ଇତ୍ୟାଦି । ସେ କାହିଁକି ବୁଝିବେ ଫିଲ୍‌ଡରେ କାମ କରିବା ଏଠି କେତେ କଷ୍ଟ

ବୋଲି । ମୁଁ ତ ଏଇ ଆସିବା ଭିତରେ ସ୍ଥିର କରିସାରିଲିଣି - ଯଦି ମୋ ବୁଝାଇବା ସତ୍ତ୍ୱେ ବି ଲୋକଟା ଘର ନ ଛାଡ଼େ, କମିଶନରଙ୍କୁ ପଚାରିବି ବଳ ତ ପ୍ରୟୋଗ କରିବୁ ନାହିଁ, କେମିତି ବିସ୍ଥାପନ କରିବୁ କୁହନ୍ତୁ ? ମୁଁ ଜାଣେ ସେତେବେଳକୁ ପାଟି ପୂରା ବନ୍ଦ ହୋଇଯିବ । କାଗଜପତ୍ରରେ ଅର୍ଡର ଝାଡ଼ିବାଟା ଯେତେ ସହଜ ଅସଲ କାମଟା ସେତେ ସହଜ ନୁହେଁ ।

ବିପ୍ରନନ୍ଦନ ମନେ ମନେ ଖୁସି ହେଉଥିଲେ ତାଙ୍କ ହାକିମଙ୍କର ଏ ଉପଲବ୍ଧି ପାଇଁ ।

ପୁଣି କିଛି ବାଟ ଚାଲିବା ପରେ ସ୍ୱତନ୍ତ୍ର ଭୂ-ଅର୍ଜନ ଅଧିକାରୀ ପ୍ରଶ୍ନକଲେ - ସତରେ କ'ଣ ସେ ଗାଆଁ ସାରା ସବୁ ଯାଇପାରିବା ପରେ ମଧ୍ୟ ଲୋକଟି ଏକୁଟିଆ ରହିଛି ?

ହଁ ସାର୍ ।

ଏକୁଟିଆ ଏ ଜଙ୍ଗଲ ଭିତରେ କେମିତି ପଡ଼ିରହିଛି ? ତା'ର କ'ଣ ଡର ଭୟ ନାହିଁ ? କିଛି ଗୋଟେ ବିପଦ ଆପଦ ପଡ଼ିଲେ କେହି ତ ଜଣେ ନାହାନ୍ତି ସାହାଯ୍ୟ କରିବା ପାଇଁ, କେଉଁ ମୋହରେ ପଡ଼ି ରହିଛି ଲୋକଟା ?

ଭିଟାମାଟିର ମୋହ ଆଜ୍ଞା ।

ମାର ଗୁଲି ସେ ଭିଟାମାଟିକୁ । ନା ଏଠି ଅଛି ରାସ୍ତାଘାଟ, ନା ଅଛି ହାଟବଜାର । ନା ଅଛନ୍ତି ପଡ଼ା ପଡ଼ୋଶୀ, ନା ଭାଇ ବନ୍ଧୁ କୁଟୁମ୍ବ । କେଉଁ ମୋହରେ ଏକୁଟିଆ ବାନ୍ଧି ହୋଇ ପଡ଼ିଛି ଏଠାରେ ସେ ?

ମୋର ଯାହା ଧାରଣା - ଭିଟାମାଟିର ମୋହ ନିଶ୍ଚୟ ।

ହଇହୋ ବାବୁ - ଏଇମିତି ଭିଟାମାଟି, ଭିଟାମାଟି ହୋଇ ହୋଇତ ଏମାନେ ଆଜିଯାଏଁ ପଛରେ ପଡ଼ି ରହିଥିଲେ । କେବେ ବନ୍ୟାତ  କେବେ ମରୁଡ଼ି, କେବେ ପଙ୍ଗପାଳ ଲାଗିଲେ ତ କେବେ ହାତୀ ନଷ୍ଟ କରିଦେଲେ, ଏମିତି ଭାବରେ ତ ବର୍ଷ ବର୍ଷ ଧରି ଉଜୁଡୁଥିଲା ସେମାନଙ୍କର ଚାଷବାସ । ଏ ଜଙ୍ଗଲ ଉପରେ ନିର୍ଭର କରି, ଯେଉଁ ସମୟରେ ଯାହା ମିଳିଲା - ଆମ୍ବ ଦିନେ ଆମ୍ବ ଓ କୋଇଲି, ମକା ସମୟରେ ମକା, ବାଜରା ସମୟରେ ବାଜରା, ମାଣ୍ଡିଆ ସମୟରେ ମାଣ୍ଡିଆ, କିଛି ନ ମିଳିଲେ ବଣର କନ୍ଦା ଖାଇ ବଞ୍ଚୁଥିଲେ ଏମାନେ । ଏମିତିକା ଜୀବନ ବଞ୍ଚି ଲାଭ କ'ଣ ଥିଲା ସେମାନଙ୍କର ? ସରକାର ସିନା ଡ୍ୟାମ୍ ତିଆରି ପାଇଁ ତମର ଭିଟାମାଟି ଉଜାଡ଼ି ଦେଲେ, ହେଲେ ଯେଉଁଠି

ରଖୁଛନ୍ତି ତ ଏହାଠାରୁ ଢେର ସୁବିଧା ଜାଗା । ରହିବା ପାଇଁ ବନାଇ ଦିଆଯାଇଛି ଘର, ଯିବା ଆସିବା ପାଇଁ ରାସ୍ତାଘାଟ, ପିଇବା ପାଇଁ ନଳକୂଅର ପାଣି, ପିଲାଙ୍କ ପାଠପଢ଼ା ପାଇଁ ସ୍କୁଲ, ଦେହ ପା', ଭଲମନ୍ଦ, ଜରବାଧକ ପାଇଁ ଡାକ୍ତରଖାନା । ଏଠିକା ଜୀବନଠାରୁ ତ ସେମାନଙ୍କ ନୂଆ ଜୀବନ ଶହେଗୁଣ ଭଲ ।

ହଁ ସାର୍, ଏମାନଙ୍କ ପାଇଁ ଯେଉଁ ନୂଆ ବସତି ହେଉଛି ଏଠିକା ଅପେକ୍ଷା ଢେର ଭଲ, ହେଲେ ସେଠି ଭିଟାମାଟିର ବାସ୍ନା ନାହିଁ ।

ତମେ ତ ଖାଲି ଭିଟାମାଟି, ଭିଟାମାଟି ହେଉଛ, ଆମର କ'ଣ ଭିଟାମାଟି ନାହିଁ? କାହିଁ ଆମକୁ ତ ବାନ୍ଧି ରଖି ପାରୁନି ଭିଟାମାଟି ? ମ୍ୟାଟ୍ରିକ ପାସ୍ କଲା ପରେ ମୁଁ ଗାଆଁ ଛାଡ଼ିଥିଲି । ପାଠପଢ଼ା ବେଳେ ଗାଆଁକୁ ଯା' ଛୁଟିରେ ଯାଉଥିଲି । ପଢ଼ା ସାରି ଚାକିରି କଲା ପରେ ସେତକ ବି ବନ୍ଦ ହୋଇଗଲା । କେବଳ ଗାଆଁକୁ ଯିବାର ବାଧ ବାଧକତା ଥିଲେ ବାପା ଓ ବୋଉ । ବାହାଘର ପରେ ସେମାନଙ୍କୁ ପାଖକୁ ନେଇ ଆସିବା ପରେ ସେତକ ବି କଟିଗଲା । ଏବେ ତ ମୁଁ ଘର କରିଛି ଭୁବନେଶ୍ୱରରେ । ମୁଁ ସିନା କେବେ କେବେ ଘର କେଉଁଠି ପଚାରିଲେ ଗାଆଁ ନାଁ କହୁଛି, ହେଲେ ମୋ ପିଲାଏ ତ କେବଳ ଜାଣିଛନ୍ତି ତାଙ୍କ ଘର ଭୁବନେଶ୍ୱରରେ ବୋଲି । ବାପାଙ୍କର ଶେଷ ଇଚ୍ଛାକୁ ସମ୍ମାନ ଦେବା ପାଇଁ ତାଙ୍କ ଶବ ସଂସ୍କାର ପାଇଁ ପହଞ୍ଚିଥିଲି ଗାଆଁରେ । ସେ ଦଶବାର ଦିନ କାଳ ଯେତିକି ହୀନସ୍ତା ହୋଇଛି ମୋ ମନ ବୁଝିଛି । ସେଇଠୁ ତ ମୁଁ ମନେ ମନେ ଶପଥ କରି ନେଇଥିଲି ଆଉ ଗାଆଁକୁ ଆସିବି ନାହିଁ ବୋଲି ।

ଗାଆଁକୁ ନ ଫେରିବାର ଶପଥ କିପରି କରି ପକାଇଲେ ସାର୍ ?

କରିବି ନାହିଁ - ହଇହୋ, ଆମେ ବାହାରେ ରହୁଥିଲୁ । କେବଳ ଶୁଦ୍ଧିକାର୍ଯ୍ୟ କରିବାକୁ ଗାଆଁରେ ପହଞ୍ଚିଥିଲୁ । ସେଥିରେ ଏତେ ନବରଙ୍ଗ, ଏତେ ରୀତିନିୟମ ବାହାରିଲା ଯେ ତାକୁ ଶୁଣି ଶୁଣି ମୁଁ ବାଇଆ ହୋଇଗଲି ।

ଠିକ୍ କଥାଟିଏ କହିଲେ ସାର୍ - ଗାଆଁର ସେହି ନୀତିନିୟମ ଭିତରେ ବାନ୍ଧି ହୋଇ ରହିଛି ଗାଆଁର ମୋହ । ଶବସଂସ୍କାର ମଧ ଗାଆଁର ଏକ ସାମୂହିକ କାର୍ଯ୍ୟ ଓ ଦାୟିତ୍ୱ, ସେଇଟା ସହର ନୁହେଁ ଯେ ଗୋଟିଏ ଫ୍ଲାଟ୍‌ରେ ଗୋଟିଏ କ୍ୱାର୍ଟରରେ ଶବ ପଡ଼ିଥିଲେ ଆର କ୍ୱାର୍ଟରବାଲାର କିଛି ଯା' ଆସ ନାହିଁ । ଶବ ସିଧା ଉଠିବ, ଲଦା ହେବ ଗାଡ଼ିରେ ଏବଂ ପହଞ୍ଚିବ ଯାଇ ଇଲେକ୍‌ଟ୍ରିକ ଚୁଲାରେ । ମାଛ ଶୁଖୁଆ ପୋଡ଼ିବା ପରି ଶବକୁ ପୋଡ଼ିଦେଇ ଘରକୁ ଫେରିବା ପରେ ସବୁ ସ୍ୱାଭାବିକତା ପୁଣି ଫେରି

ଆସିବ । ଗାଆଁରେ ଧୋବା, ଭଣ୍ଡାରୀ, ବ୍ରାହ୍ମଣ, ନାହାକଠାରୁ ଆରମ୍ଭ କରି ଜ୍ଞାତି କୁଟୁମ୍ବ ଓ ସାହିଭାଇ ଯାଏ ସମସ୍ତଙ୍କର ଯେଉଁ ମିଳିତ ଆବେଗ ଥାଏ ପରଲୋକଗତ ଆତ୍ମା ପାଇଁ ତାହା କ'ଣ ସହରୀ ସଭ୍ୟତାରେ ଦେଖିବାକୁ ମିଳେ ? ଏଠି ତ କେବଳ ଶୋକବାର୍ତ୍ତାଟିଏ କିମ୍ବା ଶବାଧାର ଉପରେ ଫୁଲତୋଡ଼ାଟିଏ ରଖିବା ଯାଏଁ ସମ୍ପର୍କ ସୀମିତ ।

ହଁ ଯେ - ଜଣେ ତ ମରିଗଲା, ଗଲା । ଏତେ ସବୁ ଆନୁଷ୍ଠାନିକ ଫର୍ମାଲିଟିର ଆବଶ୍ୟକତା କ'ଣ ?

ହଁ ସାର୍ - ଆମେ ଯେଉଁମାନେ ଶିକ୍ଷିତ ଓ ସଭ୍ୟ ବୋଲି ନିଜକୁ କହୁଛୁ, ମୃତ୍ୟୁକୁ ଜୀବନର ଅନ୍ତ ବୋଲି ଧରି ନେଉଛୁ । ହେଲେ ପୁରୁଣାକାଳିଆ ଲୋକମାନେ ମୃତ୍ୟୁକୁ ଆତ୍ମାର ଘଟ ପରିବର୍ତ୍ତନ ବୋଲି ଭାବୁଥିଲେ । ସେମାନଙ୍କ ରୀତିନୀତି ଓ ସଂସ୍କାର ଥିଲା ଘଟ ପରିବର୍ତ୍ତନ ପରେ ଆତ୍ମା ପୁନର୍ଜନ୍ମ ପାଇବା ଯାଏ ତା'ର ଗନ୍ତବ୍ୟ ମାର୍ଗକୁ ସୁଗମ ଓ ସୁନ୍ଦର କରିବା ।

ଯୁଗ ଯାଇ କେଉଁଠି ପହଞ୍ଚିଲାଣି ଆପଣ ସେହି ପୁରୁଣା ମାନସିକତାରେ ଅଛନ୍ତି ଦେଖୁଛି । ତମେ ଯାହା ଭାବିଲେ ଭାବ, ବାପାଙ୍କ ଶୁଦ୍ଧିକ୍ରିୟାର ହୀନସ୍ତା ପାଇଁ ବୋଉ ବେଳକୁ ଆଉ ଗାଆଁକୁ ଯାଇ ଏତେସବୁ ଫାର୍ଶ କରିବାକୁ ମୁଁ ମନ ବଳାଇ ନଥିଲି । ତା'ର ବି ଏକା ଜିଦ୍ ଥିଲା ସେ ଗାଆଁରେ ପୋଡ଼ା ହେବ ବୋଲି । ମାତ୍ର ତାକୁ ପୁରୀ ସ୍ୱର୍ଗଦ୍ୱାର ମୋହ ଦେଖାଇ ସେଥିରୁ କ୍ଷାନ୍ତ କରିଥିଲି । ବାସ୍, ବୋଉର ମୃତ୍ୟୁ ପରେ ପରେ ଆମେ ଭୁଲିଯାଇଛୁ ଆମର ଗୋଟେ ଗାଆଁ ଥିଲା ବୋଲି । ଆମକୁ ତ କାହିଁ ଭିଟାମାଟିର ମୋହ ଏମିତି ଆକର୍ଷିତ କରିପାରୁନାହିଁ ? ବୁଝିଲେ ଏମାନଙ୍କର ଏଇ ଭିଟାମାଟି ନେଇ ଯେଉଁ ଅଯଥା ଭାବପ୍ରବଣତା ରହିଛି ସେଥିପାଇଁ ସେମାନେ ଆଜି ଏମିତି ପଛରେ ପଡ଼ି ରହିଛନ୍ତି ।

ଆପଣ ସାର୍ କେବେ ବାସ୍ତୁହରା ହୋଇ ନାହାନ୍ତି ତ, ସେଥିପାଇଁ ଏମାନଙ୍କର ଭାବପ୍ରବଣତାକୁ ଆପଣ ବୁଝିପାରିବେ ନାହିଁ ।

ମାନେ !

ମୁଁ ସେ ଦୁଃଖକୁ ଅଙ୍ଗେ ନିଭାଇଛି । ଅବଶ୍ୟ ସେତେବେଳେ ଭିଟାମାଟିକୁ ନେଇ ଭାବପ୍ରବଣ ହେବା ପରି ବୟସ ମୋର ହୋଇନଥିଲା, ମାତ୍ର ମୁଁ ଏତେ ଛୋଟ ନଥିଲି ଯେ ମୋ ବାପା, ବୋଉ, ଜ୍ଞାତି ପରିଜନମାନଙ୍କର ମାନସିକ ଅବସ୍ଥାକୁ

ବୁଝିପାରିବି ନାହିଁ । ଆଜି ଭଳି ସେତେବେଳେ ଏମିତି ସଶକ୍ତ ଗଣମାଧ୍ୟମ ନଥିଲା । ଯାହା କିଛି କତିପୟ ଗଣମାଧ୍ୟମ ଥିଲା ତାହା ଥିଲା ଶାସକ ଗୋଷ୍ଠୀର ହାତବାରିସି । ଆଜି ଯାହା ହେଲେ ବି ଏମାନେ ତାଙ୍କ ଜମିଜମା, ଘରବାଡ଼ି, ଗଛବୃଛର ନିର୍ଦ୍ଧାରିତ ମୂଲ୍ୟ ପାଉଛନ୍ତି । ହେଲେ ସେତେବେଳେ ମୋ ବାପ ଦାଦି ଓ ଆମ ଗାଆଁ ଲୋକେ ପାଇଥିଲେ କ'ଣ ?

ତମେ କେଉଁ ପ୍ରୋଜେକ୍ଟ ଦ୍ୱାରା ବିସ୍ଥାପିତ ହୋଇଥିଲ କି ?

ହୀରାକୁଦ । ହୀରାକୁଦ ସାର୍ । ହୀରାକୁଦ ଜଳଭଣ୍ଡାରରେ ବୁଡ଼ି ଯାଇଥିବା ଗୋଟିଏ ଗାଆଁ ସର୍ଗିପାଲି । ସେଇଟା ଆମର ଗାଆଁ ଥିଲା । ଶାଗ, ମାଛ ଦରରେ ଜମିଜମା, ଘରଦ୍ୱାରର ଯାହା ମୂଲ୍ୟ ନର୍ଦ୍ଧାରଣ କରାଗଲା, ତାକୁ ଧର ଓ ଗାଆଁ ଛାଡ଼ର ନୋଟିସ୍ । କେହି ଜାଣି ନ ଥିଲେ ଗାଆଁ ଛାଡ଼ିଲେ କୁଆଡ଼େ ଯିବେ ।

ତାଙ୍କ ପାଇଁ ନିରୂପିତ ହୋଇ ନ ଥିଲା କୌଣସି ସ୍ଥାନ କିମ୍ବା ଏ ବିଷୟରେ ଧ୍ୟାନ ଦେବାର ଆବଶ୍ୟକତା ଅଛି ବୋଲି କେହି ବିଚାରୁ ନ ଥିଲେ । ଟଙ୍କା ଦେଇସାରିବା ପରେ ପିଟା ହୋଇ ଯାଉଥିଲା ଡେଙ୍ଗୁରା ଗାଆଁ ଛାଡ଼ିବା ପାଇଁ । ଡେଙ୍ଗୁରା ପିଟା ଦିନଠାରୁ ଗାଆଁ ଛାଡ଼ିବା ଯାଏ ସମୟତକ ଥିଲା ଫାଶୀ ପାଇଁ ଅପେକ୍ଷା କରିଥିବା ଆସାମୀର ସମୟ ପରି । ସେ ସମୟରେ କିଏ ବାନ୍ଧୁଥିବ ପେଡ଼ି ପୁଟୁଳା ତ, କିଏ ଭାଙ୍ଗୁଥିବ ଦେଇପିଣ୍ଡି । କିଏ ଖାଲି କରୁଥିଲା ଅମାର ତ କିଏ ଲିଭାଉଥିଲା ଷଠୀଦୂତି । କିଏ ସଜାଡୁଥିଲା ଠାକୁର ଖଟୁଲି, ଚନ୍ଦନ ପେଡ଼ି, ଘଣ୍ଟି, ଶଙ୍ଖ ତ କିଏ ଭାଙ୍ଗୁଥିଲା ହଳ, ଯୁଆଳି, ବିଦା ଓ ମହୀ । କେଉଁଠି ବୁଢ଼ୀଟିଏ ସଜାଡୁଥିଲା ତା'ର କୋଥଳୀ ତ, କେଉଁଠି ପାନକୁଟା ତ କେଉଁଠି ତିଳକଚିତା, ଜପାମାଳି । ଏସବୁ ଭଙ୍ଗା, ଗଢ଼ା କାମ ଭିତରେ ଯଦି କେଉଁଠୁ ଗୋଟେ ଭାସି ଆସିବ କାନ୍ଦଣାର ଲହରି ତ ଥମ୍ କରି ବନ୍ଦ ହୋଇ ଯାଉଥିବ ସମସ୍ତଙ୍କ ହାତ ଗୋଡ଼ । ଲାଗିଯିବ ଧାଆଁ ଦଉଡ଼ କାନ୍ଦଣା ଜାଗାକୁ । କା' ପାଟି ଜାବ ପଡ଼ି ଯାଉଥିବ ତ କିଏ ଜଣେ ଧାଇଁଯାଇ ପାଣି ଆଣି ଛାଟୁଥିବ ମୁହଁରେ । ଦିନ ଦିନ ଧରି କାହାରି ଘରେ ଜଳୁ ନ ଥିବ ଚୁଲି । ସମସ୍ତେ ଭାଙ୍ଗି ପଡୁଥିବେ ଭିତରେ ଭିତରେ କୋହରେ – ଅଥଚ ପ୍ରତିବାଦ କଲାଭଳି ଶକ୍ତି ନଥିବ କାହାରି ତୁଣ୍ଡରେ । କେବଳ ଗାଳି ଓ ଅଭିସମ୍ପାତ ଦେଉଥିବେ ସରକାର ଉପରେ । ସେତେବେଳେ କେହି ଜାଣୁ ନ ଥିଲେ ସରକାର କ'ଣ । କେବଳ ମୁଁ ଛୋଟ ଥିଲି ବୋଲି ନୁହଁ ଗାଆଁରେ ପ୍ରାୟ ସମସ୍ତଙ୍କର

ଗୋଟେ ଧାରଣା ଥିଲା – ସରକାର ବୋଲି କିଏ ଜଣେ ଲୋକ ଅଛି, ଯାହାର ଆଦେଶରେ ସେମାନେ ଆଜି ହେଉଛନ୍ତି ବାସ୍ତୁହରା ।

ଉଜୁଡ଼ି ଯାଇଥିଲା ଆମ ଗାଆଁ ଯୁଦ୍ଧବିଧ୍ୱସ୍ତ କୁରୁକ୍ଷେତ୍ର ପରି । କିଏ କୁଆଡ଼େ ଗଲେ କେହି ରଖିଲେନି ଠିକଣା । ନିଜ ନିଜ ସୁବିଧା ଦେଖି ଯିଏ ଯେଉଁଠି ପାରିଲେ ରହିଗଲେ । ହେଲେ ଆଜିଯାଏଁ ଭିଟାମାଟିର ମୋହ ନେଇ ମୁଁ ଖୋଜି ଚାଲିଛି ଆମ ଗାଆଁ ମନ୍ଦିର ପୂଜକ ବିଷ୍ଣୁ ଗୋସାଇଁ, ଗାଆ ନାହାକ ବଟ ନାହାକ, ରମେଇ ଧୋବଣୀ, ଚଇତା ବାରିକ, ସୁଲି କେଉଟୁଣୀ, ମନୁ କାଚରା ଓ ମାଧ ଗୁଡ଼ିଆଙ୍କୁ । ଖୋଜି ଚାଲିଛି ଆମ ଗାଆଁ ଶୁଲୁଣୀ ଧୋଇଆ ବୋଉକୁ, ଗାଆଁରେ କାହା ଘରେ ପାଦ ଭାରୀ ହେଲେ ନିତିନିତି ଯା'ର ପଡୁଥିଲା ନିଶୁଳ୍କ ହାଜିରା । କୁଆଡ଼େ ବି ହଜିଗଲେ ବସ୍ତାନି ଭିତରର କେଉଁ କଣରେ ଲୁଚି ରହି ଯାଇଥିବା ମାଟି ଖଡ଼ିର ଅସ୍ତିତ୍ୱ ପରି ମୋ ପିଲାଦିନର ସାଙ୍ଗ ରମା, ରାଧୁଆ, ଅନନ୍ତ, ବୁଲା ଓ ବାଉଲାଏବଂ ଚାଟଶାଳୀରେ ଛାଟ ମାରି ମୁଣ୍ଡୁଳାରୁ ବିଦ୍ୟା ଆରମ୍ଭ କରାଇଥିବା ସର୍ବେଶ୍ୱର ଗୁରୁଜୀ । ଏବେ ମୁଁ ସହରରେ ବସା ବାନ୍ଧିଛି, ହେଲେ ଆଜିଯାଏଁ ସେ ଘରେ ମୁଁ ଖୋଜି ପାଉନାହିଁ ଭିଟାମାଟିର ଗନ୍ଧ ।

ଆର୍.ଆଇ, ବାବୁ – ତମେ ଏ ଭିଟାମାଟି ନେଇ ଏତେ ଭାବପ୍ରବଣ ବୋଲି ମୁଁ ଜାଣି ନଥିଲି । କାହିଁ କେବେ ତ ଏ ବିଷୟରେ କିଛି କହୁ ନ ଥିଲ ?

କ'ଣ ଆଉ କହିଥାଆନ୍ତି ସାର୍ । ଏହାକୁ ମୋ ଚାକିରିର ଦାୟିତ୍ୱ ବୋଲି ଧରି ନେଇଛି, ହେଲେ ଏହା ବାରମ୍ବାର ଉଖୁରାଇ ଚାଲିଛି ମୋର ଶୈଶବର ସ୍ମୃତିକୁ । ଏବେ ଏମାନଙ୍କର ବିସ୍ଥାପନକୁ ଦେଖି ଏତିକି ସାନ୍ତ୍ୱନା ପାଉଛି ଯେ ଆମମାନଙ୍କର ସେତେବେଳର ବିମର୍ଷ ଭାଗ୍ୟ ପରି ଏମାନଙ୍କ ଅବସ୍ଥା ନୁହେଁ । ଯଦି ସେଦିନ ସେ ଲୋକଟିର ଭାବାବେଗ ପ୍ରତି ମୁଁ ସମ୍ବେଦନଶୀଳ ହୋଇ ନ ଥାନ୍ତି, ତେବେ ଆଜି ଆମକୁ ଏତେ କଷ୍ଟ କରି କାହିଁକି ଯିବାକୁ ପଡୁଥାଆନ୍ତା ।

ହଉ – ଢେର୍ ହୋଇଗଲା ଆମର ବିଶ୍ରାମ, ଏବେ ଯିବା ।

ଆମେ ଆକଳନ କରିଥିବା ସମୟଠାରୁ ଢେର୍ ଅଧିକ ସମୟ ପରେ ପହଞ୍ଚିଲୁ ଆମ ଗନ୍ତବ୍ୟସ୍ଥଳ କାଳିମାଟିରେ । ଗୋଟିଏ ପରିତ୍ୟକ୍ତ ସେନା ଛାଉଣୀ ପରି ଇତସ୍ତତଃ ପଡ଼ି ରହିଥିଲା ଭଙ୍ଗା ଘରମାନଙ୍କର କାଠ, ବାଉଁଶ ଓ ଖପର । ଯୁଆଡ଼କୁ ଆଖି ବୁଲାଇଲେ ଦିଶୁଥିଲା ଖାଁ-ଖାଁ । କେବଳ ଯା' ଜଙ୍ଗଲର ସବୁଜିମା ଓ ପାହାଡ଼ର ଅସ୍ତିତ୍ୱ କିଛି ପିରମାଣରେ ପ୍ରତିହତ କରୁଥିଲା ସେ ଶୂନ୍ୟତାକୁ । ଏମିତି ଏକ ପରିବେଶରେ

ଠିଆ ହୋଇ ରହିଥିଲା ଗୋଟିଏ ମାତ୍ର ଘର । ଘର ମାନେ ଗୋଟେ ଦୁଇ ବଖରିଆ ନୂଆଁଣିଆ ଦେଶିଆ ଖପର କୁଡ଼ିଆ । ସେଠି ରହୁଥିଲେ ମାତ୍ର ତିନିଜଣ - ସ୍ୱାମୀ, ସ୍ତ୍ରୀ ଓ ବୁଢ଼ି ମାଆ ।

ଆମେ ପହଞ୍ଚିବା କ୍ଷଣି ଘର ଭିତରୁ ବାହାରି ଆସିଲା ଲୋକଟି । ଅଣ୍ଟା ଭାଙ୍ଗି ଜୁହାରଟେ ପକାଇ ଦେଇ ଧାଇଁଗଲା ପୁଣି ଘର ଭିତରକୁ । ବୋହି ଆଣିଲା ଦଉଡ଼ିଆ ଖଟିଆଟେ । ଖଟିଆଟି ବାହାରେ ପକାଇ ଦେଇ କହିଲା - ବସନ୍ତୁ ମହାପ୍ରୁ ।

ମୁଁ ଚାଲିଚାଲି ଥକ୍‌କା ହୋଇ ଯାଇଥିବାରୁ ଲଥ୍ କରି ଖଟିଆ ଉପରେ ବସିଯାଇ ପଚାରିଲି - ତମ ନାଁ କ'ଣ ?

ବାସୁ ମାଝୀ, ବାପା ନାଁ ସହଦେବ ମହାପ୍ରୁ ।

ତମେ ତମର ସବୁ ପ୍ରାପ୍ୟ ପାଇ ସାରିଛ ?

ସେ ବୁଝି ନ ପାରି ଏପଟ ସେପଟ ଚାହିଁବାରୁ କହିଲି -ମାନେ ଏଇ ଘର ଦ୍ୱାର, ଜମିବାଡ଼ି, ଗଛବୃଛ ପାଇଁ ଟଙ୍କା ।

ସେ ମୁଣ୍ଡ ଟୁଙ୍ଗାରି ସମ୍ମତି ଜଣାଇଲା ।

ସବୁ ପାଇସାରିବା ପରେ ତମେ ଗାଆଁ ଛାଡ଼ି ଯାଉନା କାହିଁକି ?

ଗାଆଁ ଛାଡ଼ି ସାରିଥାଆନ୍ତି ଯେ ମହାପ୍ରଭୁ, ହେଲେ ମୋର ମାଆ କାଯେ ସବୁ ଲଟ୍‌କିଛେ ।

କ'ଣ ହୋଇଛି ତମ ମାଆର ?

କିଛି ନାଇଁ ବାବୁ - ବୟସ ହେଲାଣି, ମର୍‌ବା ମର୍‌ବା ହେଉଛେ । କତ୍‌ରାଲଗା ହୋଇପଡ଼୍‌ଛେ ଢେର ଦିନ ହେଲାଣି । ହେଲେ ତା' ପିଣ୍ଡରୁ ପ୍ରାଣ୍ ନାହିଁ ଛାଡ଼ିବାର । ସମିଆ ଆସିନି ।

ସମୟ କେବେ ଆସିବ କ'ଣ ସେଥିପାଇଁ ସରକାର ଅପେକ୍ଷା କରି ବସିଥିବେ ତମର ଗାଆଁ ଛାଡ଼ିବାକୁ ?

କ'ଣ ଆଉ କର୍‌ବା ମହାପ୍ରୁ, ମୋ ମାଆର ଏକ୍‌କା ଜିଦ୍ ସେ ଭିଟାମାଟି ଥେଇଁ ମର୍‌ବା ହିଁ ମର୍‌ବା । ସଭେଁ ଚାଲିଗଲେ ମୁଁ କ'ଣ ଗାଆଁ ନାଇଁ ଛାଡ଼ିଥାନ୍ତି, ହେଲେ ମାଆର ବାଧରେ ପଡ଼ିରହିଛେ । ଆଉ ବେଶି ଡେରି ନାହିଁ ମହାପ୍ରୁ - ଆଉ ଦିନ ଦି'ଟା ମାତର୍ ।

ତମେ କେମିତି ଜାଣିଲ ଦିନ ଦୁଇଟା ଆଉ ଅଛି ବୋଲି ? ସେ ତ ଗୋଟିକିଆ ପକାଇଲାଣି, ମାଆ ଦୂଆରସୁଣୀ ବି କହିଛେ ଅମେଇସା ରାଏତ୍ ବଲି । ବାସ୍ ତା'

ପିଣ୍ଡରୁ ପ୍ରାଣ ଛାଡ଼ିଲା କ୍ଷଣି ଆମେ ବୁଢ଼ାବୁଢ଼ୀ ଦିଇଟା ଚାଲିଲୁ ଏ ଗାଆଁ ଛାଡ଼ି । ଜନମ କଲା ମାଆତ, ଶେଷ ଇଚ୍ଛାଟା ପୂରଣ କଲେ ଯାଏଁ ମନ୍‌କୁ ସନ୍ତୋଷ ମିଳିବ ।

ମାଆର ଶେଷ ଇଚ୍ଛା ଶବ୍ଦଟି ଶୁଣି ଭାବୁକ ହୋଇପଡ଼ିଲେ ସ୍ୱତନ୍ତ୍ର ଭୂ-ଅର୍ଜନ ଅଧିକାରୀ । ମନେ ମନେ ଭାବୁଥିଲେ ଜଙ୍ଗଲରେ ରହୁଥିବା ଆଦିବାସୀ ଲୋକଟିଏ ମାଆର ଶେଷ ଇଚ୍ଛା ପୂରଣ ପାଇଁ ,ଏକ୍‌ଲା ପଡ଼ି ରହିଛି ଏ ଅଗ୍‌ନାଅଗ୍‌ନୀ ଜଙ୍ଗଲ ଭିତରେ । ଭାଇ, ବନ୍ଧୁ, ସାହିପଡ଼ିଶା ସାଙ୍ଗ ଦେବାକୁ କେହି ନାହାନ୍ତି । ସବୁ ଚାଲିଗଲେଣି ଯେଝା ବାଟରେ ଯିଏ ଯୁଆଡ଼େ । ହେଲେ ମାଆର ଅନ୍ତିମ ଇଚ୍ଛାକୁ ସମ୍ମାନ ଜଣାଇବା ପାଇଁ ଇଏ ଏଠି ଭୋଗୁଛି ବନବାସ, ମାତ୍ର ଗାଆଁର ଅସୁବିଧାକୁ ମନେ ପକାଇ ବୋଉର ଶେଷ ଇଚ୍ଛାକୁ ସମ୍ମାନ ନ ଜଣାଇ ସେ ସଂସ୍କାର କରିଥିଲେ ସ୍ୱର୍ଗଦ୍ୱାରରେ । ମନେ ମନେ ଧିକ୍‌କାରିଲେ ନିଜର ପୁଅପଣିଆକୁ । କିଛି ସମୟ ପରେ ସ୍ୱାଭାବିକ ହୋଇ ପଚାରିଲେ - ତମେ ତ ଘରଦ୍ୱାର କିଛି ଭଙ୍ଗାଭଙ୍ଗି କରିନ, ଦୁଇଦିନ ପରେ କେମିତି ଚାଲିଯିବ ବୋଲି କହୁଛ ?

ଘରଦ୍ୱାର କାହିଁକି ଭାଙ୍ଗିବି ମହାପ୍ରୁ- ଏ ଘର ପରା ସରକାର କିଣି ନେଇଛି ପଇସା ଦେଇ । ମୋ ବାଡ଼ିର ଗଛବୃଛକୁ ବି ତ ସରକାର କିଣି ନେଇଛେ । ବିକିଲା ଜିନିଷକୁ ମୁଁ କାଇଁକି ଲୋଭ କରିବି । ଆର ଜନମରେ କାଏଁ ଅପ୍ରାଧ କରିଥିଲୁ ବଲି ଏ ଜନମେ ବୁଢ଼ା ବୟସେ ବାସ୍ତୁହରା ହେଲୁ । ଏବେ ପୁଣି ବିକିଲା ଜିନିଷକୁ ଲୋଭ କରି ପାପ୍ କରିବି ? ମୋର ଯାହା ନେବା କଥା ସଜିଲ୍ କରି ରଖି ସାରିଛି । କାଠ ବି ସଜିଲ୍ କରି ରଖିଛି, ପିଣ୍ଡରୁ ପ୍ରାଣ ଛାଡ଼୍‌ବା କ୍ଷଣି ସଂସ୍କାର କରିଦେବାକେ ।

କ'ଣ ସବୁ ନେବ ବୋଲି ସଜିଲ୍ କରି ରଖିଛ ?

ଘର ଭିତରକୁ ପଶିଗଲା ସିଏ, ସଙ୍ଗେ ସଙ୍ଗେ ବାହାର କରି ଆଣିଲା ଗୋଟିଏ ମାଟିର କଳସୀ ଯାହାକୁ ସେ ଚିତ୍ରେଇଥିଲା ବିଭିନ୍ନ ରଙ୍ଗରେ ଓ ମୁହଁରେ ବାନ୍ଧିଥିଲା ଗୋଟେ ନାଲିକନା ।

କ'ଣ ଅଛି ଏଥିରେ ?

କିଛି ନାଇଁ ବାବୁ - କେବଳ ଏ ଡିହର ମାଟି ଓ ମାଆ ଦୁଆରସୁଣୀର ପିଣ୍ଡ । ଏହା ସହ ସାଙ୍ଗରେ ନେବି ମୋ ମାଆ ଅସ୍ଥିରୁ ଖଣ୍ଡେ । ଯେଉଁଦିନ ଏ ଗାଆଁ ବୁଡ଼ିଯିବ ପାଣିରେ, ସେଦିନ ମୋ ଗାଆଁ ଉପରେ ଆଣି ବିସର୍ଜନ କରି ଦେଇଯିବି । ମୋ ମାଆର ଇଚ୍ଛା ଇଏ ।



# ମିଛରାତି

ଚାଳରୁ କଖାରୁ ଓହ୍ଳାଉ ଓହ୍ଳାଉ ପୁରୁଣା ଚାଳର ଘୁଣଖିଆ ବତା ଭାଙ୍ଗିଯିବାରୁ ଦୁଲ୍‌କିନା ତଳକୁ ଖସିପଡ଼ିଲା ସମ୍ପିବୁଢ଼ୀ । ହାଁ ହାଁ କରି ଧାଇଁ ଆସିଲେ ପାଖ ପଡୋଶୀଏ । ଚେତା ନ ଥିଲା ବୁଢ଼ୀର । ତାକୁ ପିଣ୍ଡା ଉପରକୁ ଉଠାଇ ଦେଇ ମୁହଁରେ ପାଣି ଛାଟି ସାଷ୍ଟାଂଗ କରିବାରେ ଲାଗିପଡ଼ିଲେ । ପାଖରେ ଗିଲିଦଣ୍ଡା ଖେଳୁଥିବା ଚଗଲା ପିଲାଏ ବାଉଁଶରାଣୀ ଖେଳ ଦେଖିଲାପରି ଘେରି ଠିଆ ହୋଇଥିଲେ ଚାରି ପଟରେ । ବୁଢ଼ୀର ଚେତା ଫେରାଇବା ପାଇଁ ଗୋଟେ ତାଳପତ୍ର ବିଂଚଣାରେ ତା ମୁହଁ ପାଖରେ ବିଂଚୁଥିବା ମହିଳା କହିଲା – ତାଟ ପକାଇ ଦେଇ କ'ଣ ସବୁ ଦେଖୁଛ ଏଠି ? କ'ଣ ଯାନିଯାତରା ନା ମେଲଣ ? ଘୁଂଚ, ବାଟ ଛାଡ଼ ପନବ ଟିକେ ଆସୁ । ଶ୍ରୀଧର ଗଲା କୁଆଡ଼େ ?

କିଏ ଗୋଟେ ବଗୁଲା ପିଲା କହିଲା – ଶ୍ରୀଧର ମାଇଚିଆ ତ ? ବିଂଚୁଥିବା ଲୋକଟି ପିଲାଟିକୁ ଆଖି ତରାଟି କହିଲା, ବୁଢ଼ୀର ହୋସ୍ ନାହିଁ, ନହିଲେ ତୋତେ ଗୋଟା ଚୋବେଇ ଖାଇଥାଆନ୍ତା ଏଇନେ । ଯା' ତାକୁ ଟିକେ ଖବର ଦେଇ ଦେ ତା' ବୋଉ ଚାଳରୁ ଖସିପଡ଼ିଛି ବୋଲି ।

– "ସିଏ କୋଉଠି ଥିବା ମୁଁ କ'ଣ ଜାଣିଛି" ?

ଆରେ ସେ ଯାଇ ଯାଇ କୁଆଡ଼େ ଯାଇଥିବ ? କେଉଁ ମାଇପି ପଲରେ ବସି ତାସ୍ ଖେଳୁଥିବ, କୋଉ ବୁଢ଼ୀମୁଣ୍ଡରୁ ଉକୁଣୀ ବାଛୁଥିବ କି କାହା ଗୋଡ଼ରେ ବସି ଅଳତା ଲଗାଇ ଦେଉଥିବ ।

ଆଉ ଗୋଟେ ପିଲା କହିଲା, ନା ନା, ସେ ନଈକୂଳ ପାଳରେ ବାଇଗଣମନ୍ଦା ଖୁସଉଥିଲା, ମୁଁ ଗାଧୋଇବାବେଳେ ଦେଖିଥିଲି । ତା'ଠାରୁ ସୂଚନା ପାଇବା ମାତ୍ରେ ଜଣେ ଧାଇଁଗଲା ତାକୁ ଡାକି ଆଣିବା ପାଇଁ ।

ପଡୋଶୀମାନେ ଲାଗିଥିଲେ ବୁଢ଼ୀକୁ ସାଷ୍ଟାଂଗ କରିବାରେ । ହେଲେ ବୁଢ଼ୀର ଫେରୁ ନଥାଏ ଚେତା । କିଏ ଜଣେ ପଚାରିଲା – ଶ୍ରୀମନ୍ତ କ'ଣ ସ୍କୁଲ ଯାଇଛି କି ?

– "ସ୍କୁଲ ପା ଛୁଟି, ସେ ହାଟକୁ ଯାଇଛି, ଫେରି ଆସୁଥିବ ବୋଧେ । ଆଘାତ ବୋଧେ ଜୋର୍‌ରେ ଲାଗିଛି, ନ ହେଲେ ଏତେ ସମୟ ହେଲାଣି ଚେତା ଫେରୁନି କାହିଁକି ? ଆରେ ଝଂକାଟିଏ ସଜିଲ କରରେ । ଯଦି ଚେତା ନ ଫେରେ, ତେବେ ତା ଦି'ପୁଅ ଆସିବାକ୍ଷଣି ତାକୁ ନେଇଯିବା ଡାକ୍ତରଖାନା । ମଗଜରେ ବୋଧେ ଆଘାତ ଲାଗିଛି ।"

– "ନାଇଁମ ମଗଜରେ କାହିଁକି ଆଘାତ ଲାଗିବ ? ସେଠି ଆଘାତ ଲାଗିଥିଲେ ପାଟିରୁ ଫେଣ ବାହାରି ପଡ଼ନ୍ତାଣି । ଉଚ୍ଚରୁ ଖସିପଡ଼ିଲା ବେଳେ ଭୟରେ ଚେତା ଚାଲିଯାଇଛି ।"

ଜଣେ ଚଗଲା ପିଲା ତା'ର ଶିଶୁସୁଲଭ ଭୟ ଯୋଗୁ କହିଲା, "ସମ୍ପିବୁଢ଼ୀର ଚେତା ଫେରିଲେ ଆମମାନଙ୍କୁ ଦେଖି ସେ ତ ସମ୍ପାକଟା କରିବ ନିଶ୍ଚେ !"

ସମ୍ପାକଟା ଯଦି ନ କରିବ, ତମେମାନେ ତାକୁ ସମ୍ପିବୁଢ଼ୀ ବୋଲି କେମିତି ଡାକିବ ? ତା' ବାପଘର ନାଁ ଥିଲା ସୁମା । ତା' ଶାଶୁବୁଢ଼ୀ ତାକୁ ସେଇ ନାଆଁରେ ଡାକୁଥିଲା ବହୁବର୍ଷ ଯାଏ, ଯେତେଦିନ ଯାଏ ଏ ଶ୍ରୀଧର ଜନ୍ମ ହୋଇ ନଥିଲା । ଡାକେ ଦି ଡାକରେ ଯଦି ନ ଶୁଣୁଥିଲା ବୁଢ଼ୀ, ତା ଶାଶୂ ଡାକ ଛାଡ଼ିବ – ଲୋ ସୁମା, ଲୋ ବାଂଝ, ଲୋ ବଉଁଶବୁଡ଼େଇ, କୁଆଡ଼େ ଗଲୁ କି କିଲୋ ?" ଏ ଶ୍ରୀଧର ଜନ୍ମ ପରେ ତା ଶାଶୂ ବୁଢ଼ୀର ମନ ଉଶ୍ୱାସ ହେବାରୁ ସେ 'ସୁମା' ଡାକ ଭୁଲି ଡାକିଲା ଶ୍ରୀଧିଆ ମାଆ । ଆମେ ସବୁ ତାକୁ ଜାଣିଥିଲୁ 'ଶ୍ରୀଧିଆମାଆ' ନାଁରେ । ହେଲେ ତମେ ପିଲେ କେତେବେଳେ ତାକୁ ଏ ନୂଆ ନାଆଁଟା ଦେଇଦେଲ ? କ'ଣ ସେ ସମ୍ପାକଟା କରିବାରୁ ତମେମାନେ ତା'ର ନାଆଁ ରଖିଛ ସମ୍ପିବୁଢ଼ୀ ?

ବୁଢ଼ୀକୁ ଘେରି ଛିଡ଼ା ହୋଇଥିବା ପିଲାମାନେ ଏ ପ୍ରଶ୍ନର ଉତ୍ତର ନ ଦେଇ କେବଳ ପରସ୍ପର ମୁହଁକୁ ଚାହିଁ ହସାହସି ହେଉଥିଲେ । ଏହି ସମୟରେ ବାଆଁ ହାତରେ ଖୁରୁପି ଓ ଡାହାଣହାତରେ ନିଜ ଗଂଜି ଉପରେ ପକାଇଥିବା ଗାମୁଛା, ଯେଉଁଟି ଦୌଡ଼ିବା ଫଳରେ ବାରମ୍ବାର ଖସି ଯାଉଥିଲା, ତାକୁ ଛାତି ଉପରକୁ ପକାଇ ପକାଇ, 'ମୋ ବୋଉର କ'ଣ ହେଲା', 'ମୋ ବୋଉର କ'ଣ ହେଲା ଲୋ' କହି ଧଇଁସଇଁ ହୋଇ ଆସି ପହଞ୍ଚିଲା ଶ୍ରୀଧର । 'ହାଁ – ମୋ ବୋଉଲୋ', କହି ହାତରେ ଧରିଥିବା ଖୁରୁପିଟିକୁ ଫିଙ୍ଗିଦେଇ ଲଥ୍‌କିନା ବୋଉ ମୁଣ୍ଡ ପାଖରେ ବସିଯାଇ ତା ମୁଣ୍ଡକୁ ହଲାଇ ଏକରକମ ବାହୁନା ଆରମ୍ଭ କରିଦେଲା ଶ୍ରୀଧର ।

– "ୟା ହାପ – ମାଇକିନାଙ୍କ ପରି କାନ୍ଦୁଛୁ କ'ଣ, ବ୍ୟବସ୍ଥା କର ଡାକ୍ତରଖାନାକୁ ନବା ପାଇଁ ।"

"– ହଁ – ହଁ, ଠିକ୍ କହିଲା ସାଆନ୍ତ । ମୋ ବୋଉକୁ ନେଇଯିବା ଡାକ୍ତରଖାନା । ଆମ ଶ୍ରୀମନ୍ତ ଯାଇଥିଲା ହାଟକୁ, ହେଇ ଆସୁଥିବ, ଟିକେ ସବୁର କରି ସେ ଆସିଲେ ବୋଉକୁ ନେଇଯିବା ଡାକ୍ତରଖାନା । ପରିଆ ଦା' ତମେ ଟିକେ ମୋ ବୋଉର ମୁଣ୍ଡକୁ ବିଂଚୁଥା', ମୁଁ ତା' ଗୋଡ଼ହାତକୁ ଆଉଁଶି ଦେଉଛି । ହେ ପିଲେ, ତମ ତାଟ ଟିକେ ଭାଂଗରେ, ମୋ ବୋଉ ଦିହରେ ଟିକେ ପବନ ବାଜୁ । ବଇଁଶୀ ଖୁଡୀ, ଆଉ ଢାଳେ ପାଣି ଦିଅ ତ, ଆଉଟିକେ ଛିଂଚିଦେବା ମୁହଁରେ ।"

ହାତରେ ଚଳାଏ ପାଣି ନେଇ ଶ୍ରୀଧର ପକାଇଲା ବୋଉ ମୁହଁରେ । ମୁହଁରେ ପାଣି ପଡ଼ିବାରୁ ବୁଢ଼ୀ ଆଖି ଫିଟାଇଲା । ବୁଢ଼ୀର ଆଖି ଫିର୍‌କା ଦେଖି ବୁଢ଼ାଜଣେ କହିଲା, "ଆଉ ବ୍ୟସ୍ତ ହବାର କିଛି ନାହିଁ, ଚେତା ଆସିଲାଣି ।"

– "ମାଧ ସାଆନ୍ତ, ତମ ତୁଣ୍ଡ ସୁତୁଣ୍ଡ ହେଉ । ମୋ ବୋଉର କିଛି ନ ହେଉ, ଫେରି ଆସୁ ଚେତା । ହେ ବାବା ସାମେଶ୍ୱର ମହାଦେବ, ମୋ ବୋଉକୁ ଠିକ୍ କରିଦେ' ମୁଁ ସାତ ସଅଁବାର ତୋ ମୁଣ୍ଡରେ କ୍ଷୀର ଢାଳିବି । ଶହେ ଆଠ ବେଲପତ୍ର ଓ ଶହେ ଆଠ ଦୁଦୁରା ଫୁଲ ଚଢ଼ାଇବି, ତୋ ବଡ଼ସିଂହାର ବେଶ କରିବି ।

ବୁଢ଼ୀ ଧୀରେ ଧୀରେ ଆଖି ଖୋଲିଲା । ବୋଉର ଆଖି ଖୋଲିବା ଦେଖି ଶ୍ରୀଧର ସଂଗେ ସଂଗେ ପିଣ୍ଡା ଉପରେ ଢୋ ଢୋ କରି ମୁଣ୍ଡ ପିଟି ସାମେଶ୍ୱର ମହାଦେବଙ୍କ ଉଦ୍ଦେଶ୍ୟରେ ଜୁହାର ହେଲା । ଚେତା ଆସିବାକ୍ଷଣି ବୁଢ଼ୀ ଏପଟସେପଟ ମୁଣ୍ଡକୁ ଗଡାଇ ଚାରିପଟେ ଦୃଷ୍ଟି ବୁଲାଇଲା । ସେ ବୋଧେ ଖୋଜୁଥିଲା, ତା'ର କଖାରୁଟି କୁଆଡ଼େ ଗଲା ବୋଲି । ବୋଉର ଖୋଜିବା ଖୋଜିବା ଆଖିରୁ ତା'ର ମନକଥା ଜାଣିପାରି ଶ୍ରୀଧର କହିଲା, "ମାର୍ ଗୁଲି ସେ କଖାରୁକୁ । ସେଇଟା ପାଇଁ ତ ତୋର ଏ ଦଶା । ସେ ଯେଉଁଠି ପଡ଼ିଥିଲେ, ପଡ଼ିଥାଉ । ତୁ ଉଠିକି ବସ୍ ତ ଆଗ ।" ବୋଉର ବେକ ତଳେ ହାତ ଦେଇ ତାକୁ ଉଠାଇ କାନ୍ଥକୁ ଆଉଜାଇ ବସାଇଲା ଶ୍ରୀଧର ।

ବୁଢ଼ୀ ହାତଠାରି କହିଲା, ପାଣିଗିଲାସେ ପିଇବାକୁ ଦେବା ପାଇଁ । ପାଣି ଟିକେ ପିଇସାରିବା ପରେ ଅତି ଆସ୍ତେ ଆସ୍ତେ କହିଲା, ଆରେ ଶ୍ରୀଧର, ମୋ ବାଆଁଗୋଡ଼ ଓ ହାତଟା କାହିଁକି ଗୋଦରା ଗୋଦରା ଲାଗୁଛି ।

ବୋଉର ଗୋଡ଼ହାତକୁ ଆଉଁଶି ଦଉ ଦଉ ଶ୍ରୀଧର କହିଲା – "କଟି ହୋଇପଡ଼ିଗଲୁ ତ । କେଉଁଠି ଗୋଟିଏ ଶିର ଚାପି ହୋଇ ଯାଇ ରକ୍ତ ଚାଲୁ ନ ଥିବ, ସେଥିପାଇଁ ଗୋଦରା ଲାଗୁଥିବ । ବ୍ୟସ୍ତ ହଅନି । ମୁଁ ତେଲ ମାଲିସ କରି ସବୁ ଠିକ୍ କରିଦେବି । ଶ୍ରୀମନ୍ତ ବି ଆସୁଥିବ ହାଟରୁ, ସେ ଆସି ପହଞ୍ଚିଲାକ୍ଷଣି ମୁଁ ତତେ ଡାକ୍ତର ଦେଖେଇବାକୁ ନେଇଯିବି । ଓଷଦ ଖାଇଦେଲେ ସବୁ ଠିକ୍ ହୋଇଯିବ ।"

ଶ୍ରୀଧର ପାଟିରୁ କଥା ସରିଛି କି ନାହିଁ, ଧଇସଇଁ ହୋଇ ଆସି ପହଞ୍ଚିଲା ଶ୍ରୀମନ୍ତ । ବୋଧେ ଗାଆଁମୁଣ୍ଡରେ ପହଞ୍ଚୁ ପହଞ୍ଚୁ କେହି ତାକୁ ତା' ବୋଉର ପଡ଼ିଟିବାର ଖବରଟା ଦେଇ ଦେଇଛି, ପହଞ୍ଚୁ ପହଞ୍ଚୁ ପଚାରିଲା – କ'ଣ ହେଇଛି ବୋଉର ଭାଇ ?"

– "ଚାଳରୁ ଖସିପଡ଼ି ଚେତା ନଥିଲା । ସାମେଶ୍ୱର ମହାଦେବଙ୍କୁ ଡାକିବାରୁ ଏବେ ଚେତା ଫେରିଲାଣି । କହୁଛି ତା ବାଆଁପଟ ଗୋଡ଼ ଓ ହାତ ଟିକେ ଗୋଦରା ଗୋଦରା ଲାଗୁଛି । ମୁଁ ତୋତେ ଖାଲି ଜଗିଥିଲି, ଆସିଲେ କଣ୍ଟିପୁର ଡାକ୍ତରଖାନାକୁ ଧରି ଯିବା ପାଇଁ ।"

– "ହଉ – ମୁଁ ଆମ ବୋତିପୂରା ଝଂକାରେ କନ୍ଥା ଓ ତକିଆ ପକାଇ ଦେଉଛି, ସାଂଗେ ସାଂଗେ ନେଇଯିବା ।"

ଦି' ପୁଅଯାକ ବୁଢ଼ୀକୁ ଝଂକାରେ ବସାଇ କାନ୍ଧେଇ କାନ୍ଧେଇ ନେଇଗଲେ ଡାକ୍ତରଖାନା । ସେଠି କେବଳ ବାଆକୁ ବତା ଭଳି ଡାକ୍ତରଟିଏ । ନା ଔଷଧ ଅଛି, ନା ଯନ୍ତ୍ରପାତି ଅଛି ପରୀକ୍ଷା କରିବାକୁ । ତଥାପି ଡାକ୍ତରଜଣକ ଭଲ ଓ ଅଭିଜ୍ଞ । ସେ ଦେଖି ସାରିବା ପରେ କହିଲେ ମେରୁଦଣ୍ଡରେ ମାଡ଼ ହୋଇ ଗୋଟିଏ ସାଇଡ୍ ପାରାଲିସିସ୍ ହୋଇଯାଇଛି । ଏହାର ଚିକିତ୍ସା ତ ଏଠି ହୋଇପାରିବ ନାହିଁ । ବାହାରେ ମଧ୍ୟ ଏହାର ସେମିତି କୌଣସି ଚିକିତ୍ସା ନାହିଁ । କେବଳ ଫିଜିଓଥେରାପି କଲା ପରେ ଯଦି ଧୀରେ ଧୀରେ ସ୍ୱାଭାବିକ ଅବସ୍ଥାକୁ ଆସିଗଲା, ଭାଗ୍ୟର କଥା ।

ଫିଜିଓଥେରାପି କ'ଣ, ବୁଝିପାରିଲାନି ଶ୍ରୀଧର । କେବଳ ଡାକ୍ତରଙ୍କ ମୁହଁକୁ ବଲବଲ କରି ଚାହିଁଲା । ଶ୍ରୀମନ୍ତକୁ ଚିମୁଟିଦେଇ କହିଲା, ଆରେ ମୁଁ ସିନା ପାଠ ପଢ଼ିନି ବୋଲି ବୁଝିପାରୁନି ଡାକ୍ତରଙ୍କ କଥା, ତୁ ପରା ନବମରେ ପଢ଼ିଲୁଣି । ବୁଝୁଛୁ ତ କ'ଣ କରିବାକୁ ପଡ଼ିବ ?

ଶ୍ରୀମନ୍ତର ନ ବୁଝିପାରିବାର ଅସହାୟତାକୁ ଲକ୍ଷ୍ୟ କରି ଡାକ୍ତର କହିଲେ – ଫିଜିଓଥେରୋପି ମାନେ ଔଷଧ ମାଲିସ୍ ସହ କେତେଗୁଡ଼ିଏ ବ୍ୟାୟାମ କରାଯାଏ । ମୁଁ

ତୁମ୍ଭମାନଙ୍କୁ ବତାଇଦେଉଛି ତା'ର ପ୍ରଣାଳୀ ଓ ଲେଖି ଦେଉଛି ଔଷଧ । ଚେଷ୍ଟାକର, ଯଦି ଭଲ ହୋଇଗଲା ତ ତମର ଭାଗ୍ୟ ଏଥିରେ ଅପରେସନ୍ ବି କରାଯାଇ ଲୋକ ଭଲ ହେଉଛନ୍ତି, ମାତ୍ର ସେ ଅପରେସନ୍‌ର କୌଣସି ଗ୍ୟାରେଣ୍ଟି ନାହିଁ ଆଉ ତା'ର ଖର୍ଚ୍ଚ ଏତେ ଯେ ତାହା ତମ ସାଧ ବାହାରେ ।"

ବୋଉକୁ ଡାକ୍ତରଖାନାରୁ ନେଇ ଫେରିବା ପରେ ଗୁମ୍ ଖାଇ ବସିରହିଲା ଶ୍ରୀଧର । କେତେ ସମୟ ପରେ ଶ୍ରୀମନ୍ତକୁ କହିଲା, "ବୋଉ ସିନା ଗାଈପଟେ, ଛେଳି ଦି'ପଟ ପାଳି ଆମକୁ ଆଜିଯାଏ ଚଳାଇ ଆସିଥିଲା । ସିଏ ତ ଏବେ ଉଠିପାରିବନି । ଆଉ ଆମର ବା ଜମି କେତେ, ସେଇ ନଈ କୂଳରେ ଦି'ପା ପାଳଜମି ତ ଯେଉଁଠି ପ୍ରତିବର୍ଷ ଧୋଇଯାଉଛି ଧାନ, ଯାହା କେବଳ ପାଳ ପନିଅରକୁ ଭରସା । ବାପା ମଲା ପରେ ସିଏ ଆମ ପାଇଁ ଏତେ କଲା, ଆମେ ଯଦି ଏବେ ତାକୁ ଚିକିତ୍ସା କରାଇ ନ ପାରିବା, ଧିକ୍ ହୋଇଯିବ ଆମର ପୁଅଜନମ । ବନାଦାଦା ମୋତେ କହିଥିଲା, କଲିକତାରେ ପାଣିପାଇପ୍ କାମରେ ଲଗାଇଦେବ ବୋଲି । ମୁଁ ଭାବୁଛି, ମୁଁ ଏବେ କଲିକତା ପଳାଇଯିବି । କିଛି ପଇସା ରୋଜଗାର କଲେ ଅନ୍ତତଃ ବୋଉକୁ ଡାକ୍ତର ଦେଖାଇ ଭଲ କରିପାରିବା । ତୁ ଏଠି ତୋ' ପାଠ ପଢ଼ା ସହ ବୋଉର ଦାୟିତ୍ୱ ସମ୍ଭାଳ । ପୁଅ ହିସାବରେ ଆମକୁ ତ କଷ୍ଟ କରିବାକୁ ପଡ଼ିବ ନା ।"

ଶ୍ରୀଧରର କଲିକତା ଯିବା କଥା ଶୁଣି ମନାକଲା ବୋଉ । କହିଲା, "ଦରକାର ନାହିଁ ମୋର ଭଲ ହେବା । ମୋର କଉ ନଅଟା ନା ଛଅଟା । ମାଡ଼ି ମାଡ଼ି ଷଠୀଦୂତି ଦୟାରୁ ତ ଦିଇଟା । ସେଥିରେ ତୁ କଲିକତା ଗଲେ, ମୁଁ କଣା ହୋଇଗଲା ପରି ଲାଗିବ । ଦରକାର ନାହିଁ, ଏଇଠି ମୂଲମଜୁରି କରି ଗାଈ ଦି'ପଟ ପାଳିଦେଲେ ଆମ ଗୁଜୁରାଣ ମେଣ୍ଟିଯିବ ।

- "ବୋଉଲୋ - ଏବେ କେବଳ ଗୁଜୁରାଣ ମେଣ୍ଟିବା କଥା ପଡ଼ିନି, ତୋ ଚିକିତ୍ସା ସହିତ ଶ୍ରୀମନ୍ତର ପାଠପଢ଼ା ବି ଅଛି । ସେତକ ନ କରିପାରିଲେ ମୁଁ କି ପୁଅ ।ତୁ ମନା କରନି, ତା'ପରେ କଲିକତା କେଉଁ ଦୂରବାଟ କି, ରାତିରେ ବସ୍‌ରେ ପରା ବସିଲେ ସକାଳୁ ଆସି ଘରେ ।

ବୋଉର କଥା ନ ମାନି ଶ୍ରୀଧର ଚାଲିଗଲା କଲିକତା । ବନାଦାଦା ପାଖରେ ପାଣିପାଇପ୍ କାମ କଲା । ଏପେଟେ ଶ୍ରୀମନ୍ତ ଯାହିତ୍ୟାହି ଗଣ୍ଡେ ଫୁଟେଇଦେଇ ବୋଉକୁ ଖାଇବାକୁ ଦେଇସାରି ସ୍କୁଲକୁ ଯାଏ । ବୁଢ଼ୀ ଦେଖିଲା ଦି' ପୁଅଙ୍କର ଦୁଃଖ

ଓ ହଇରାଣ । ମନସ୍ଥ କଲା ଏଥର ମଗୁଣୀରକୁ ଶ୍ରୀଧରକୁ ଦି'ହାତ କରିଦେବ। ଅଣ୍ଡିରିପୁଅଟା ଆଉ କେତେ ଦିନ ତାକୁ ରୋଷେଇ କରିଦେଉଥିବ? ଏମିତି ଘୁଷୁରି ଘୁଷୁରି ଆଉ କେତେ ଦିନ ଅବା ଏ ଜୀବନ ରହିଥିବ? ଆଖି ବୁଜିବା ପୂର୍ବରୁ ଅନ୍ତତଃ ବୋହୂ ମୁହଁଟା ଦେଖିନେବ।

ବାହାଘର ନାଆଁ ଶୁଣି ଖାଲି ଡେଇଁଲା ଶ୍ରୀଧର, "ମୁଁ ସେ ଝମେଲାକୁ ସମ୍ଭାଳିପାରିବିନି। ଆଉ ଦି'ଚାରିବର୍ଷ ସବୁର କରିଯା', ଶ୍ରୀମନ୍ତର ପଢ଼ା ସରୁ ତାକୁ ଦି'ହାତ କରିଦେଲେ ହେଲା।"

– "କାହିଁକି ତୁ କ'ଣ ଭୀଷ୍ମ ପିତାମହ ହେବୁନା କ'ଣ? ମୁଁ ତ ପାକଲା ତାଳ ଥିଲି, ସେଥକୁ ପୁଣି ଏ ଅଖଂଜ ଅବସ୍ଥା। ତୁ କ'ଣ ଭାବୁଛୁ ମୁଁ ଏ ପକ୍ଷା ଘାତରେ ବେଶିଦିନ ଉଦ୍ଧେଇବି ନା କ'ଣ? ମଲା ପୂର୍ବରୁ ନାତିନାତୁଣୀ ଦେଖିବାର ସ୍ୱପ୍ନ ନାହିଁ କି ମୋର ସେତେ ଲମ୍ବ ଆୟୁଷ ନାହିଁ। କେବଳ ଯା ବୋହୂ ମୁହଁ ଟିକେ ଦେଖିଦେଲେ ମୋର ଅବସୋସ ମେଣ୍ଟିଯିବ।

ବିବାହ ଭଳି ଏକ ଦାୟିତ୍ୱକୁ ଯେ ଶ୍ରୀଧର ତୁଲାଇପାରିବ, ଏ ଭରସା ତା ଭିତରେ ହେଉ ନ ଥିଲା। ସେ ବି ବେଳେ ବେଳେ ଆଶ୍ଚର୍ଯ୍ୟ ହୁଏ ଯେ ଏତେ ବୟସ ସତ୍ତ୍ୱେ, ଦୈହିକ କ୍ଷୁଧା ମେଣ୍ଟାଇବାକୁ ବିବାହର ଆବଶ୍ୟକତାକୁ ସେ କେମିତି ଉପଲବ୍ଧି କରୁନି ବୋଲି। ମନେ ମନେ ଶଂକିଯାଏ, କ'ଣ କିଛି ଖଇଚ଼ ରହିଯାଇଛି କି ଭିତରେ। ପୁଣି ପରମୁହୂର୍ତ୍ତରେ ଭାବେ, ଥିଲେ ଥାଉ, ବାହା ତ ନ ହେଲେ ଗଲା। ଏବେ କିଂତୁ ପଡ଼ିଗଲା ଅଠାକାଠିରେ। ବୋଉର ମନ ଭାଙ୍ଗିବାକୁ ମନ ବଳିଲାନି। କେବଳ କହିଲା, 'ହଉ ତୋ କଥା ମାନି ବାହା ହୋଇ ପଡୁଛି, ହେଲେ ଯାହା ଭଲ ମନ୍ଦ ହେବ ତୁ ବୁଝିବୁ।"

ଖୋଜି ଖୋଜି ବୋହୂଟିଏ କଲା ସମ୍ପିବୁଢ଼ୀ। ବୋହୂ ନୁହେଁ ତ ଚାନ୍ଦଟିଏ। ନିହାତି ଗରିବ ଘର, ଦୁଇଓଳି ଦୁଇମଠା ପେଟ ଚିନ୍ତା ଘାରୁଥିଲା ବେଳେ ବାହାଘର ପାଇଁ ଯେତେବେଳେ ଶ୍ରୀଧର ଘରୁ ପ୍ରସ୍ତାବ ଗଲା, ଏଥିରେ ତାଂକ ଘରେ ଅରାଜି ହେବାର କିଛି ନ ଥିଲା। ଜୋଇଁ କଲିକତାରେ ପାଣିପାଇପ୍ କାମ କରୁଛି, ଘରେ ଦି'ପ୍ରାଣୀ ଖାଇବାକୁ, ଏଥିରେ ସେମାନେ ବା କାହିଁକି ଅରାଜି ହୋଇଯାଆନ୍ତେ? ତେଣୁ ଝିଅ ଟେକିଦେଲେ ସେମାନେ।

ବାହାଘରର ପହିଲି ଦିନରେ ହିଁ ଶ୍ରୀଧର ଚିହ୍ନାଇଦେଲା ସୁଲତାକୁ – "ଦେଖ୍, ଇଏ ମୋ ବୋଉ, ଯାହା ମୁହଁ ଚାହିଁ ମୁ ବାହା ହେବାକୁ 'ହଁ' ଭରିଲି । ନଚେତ୍ ବାହାଘର କିଏ ନା ମୁଁ କିଏ ? ଆଉ ଇଏ ମୋ ଭାଇ ଶ୍ରୀମନ୍ତ । ମୋଠାରୁ ଢ଼େର୍ ସାନ, ହେଲେ ତୋ ଠାରୁ ବେଶି ସାନ ହୋଇ ନଥିବ । ମୁଁ ତାକୁ ଭାଇ ଭଳି ଦେଖେନା, ଦେଖେ ପୁଅ ଭଳି । ପାଠ ପଢୁଛି, ପାଠ । ପାଠ ପଢ଼ି ଚାକିରି କରିବ । ବୋଉର ଓଷଦ କିଣା ଓ ତା'ର ପାଠପଢ଼ା ପାଇଁ ତ ମୁଁ ଗାଆଁ ଛାଡ଼ି ସହର ଯାଇଛି, ନ ହେଲେ କଲିକତା କିଏ ନା ମୁଁ କିଏ, ଏଇଠି କ'ଣ ମୋ ପେଟ ଅପୋଷା ରହିଥାନ୍ତା ? ଏମାନଙ୍କର ଯତ୍ନ ଓ ଦାୟିତ୍ୱ ନେବୁ ।"

ସୁଲତା କେବଳ ଓଢ଼ଣା ତଳୁ ଏମାନଙ୍କୁ ଥରେ ଥରେ ଚାହିଁଲା ଏବଂ ଆକଳନ କଲା ନିଜ ଦାୟିତ୍ୱ ।

ଅଷ୍ଟମଂଗୁଳା ସରୁ ସରୁ ବାଇବିଛୁ ହୋଇ ଶ୍ରୀଧର ବାହାରିପଡ଼ିଲା କଲିକତା ଯିବାପାଇଁ । ବୋଉକୁ ଯାଇ କହିଲା – "ବୋଉଲୋ ମୁଁ କାଲି କଲିକତା ବାହାରି ଯାଉଛି ।"

ବୋଉ ବିଛଣା ଉପରେ ପଡ଼ିରହି ହାଁ କରି ଶ୍ରୀଧରକୁ ଚାହିଁ କହିଲା – "ତୋ ବାହାଘର ଅଳତା ଗୋଡ଼ରୁ ଲିଭିଲାଣି ନା ତୁ ବାହାରି ପଡ଼ିଲୁଣି କଲିକତାକୁ । ଯାଉ ଆଉ ଦିନାକେତେ । ନୂଆ ବୋହୂଟା ମୋର, ଏ ଘରେ ତା' ମନ ଧରି ନ ଥିବ ।

– "ନାଁ ଲୋ ବୋଉ – ସେପଟେ ଢ଼େର କାମ । ଅଳପ ଦିନ ପାଇଁ କହିକରି ଆସିଥିଲି, ରହୁ ରହୁ ରହିଗଲିଣି ଆସି ଢ଼େର ଦିନ ।"

– "ହଁ ମ – କ'ଣ ସରକାରୀ ଚାକିରି ହୋଇଛି ଯେ ଏତେ ଡର ?"

– "ନା, ତୁ ମତେ ଆଉ ବାଧ କରନି ବୋଉ, ମୁଁ କାଲି ଚାଲିଯିବି ।"

– " ହଉ ଆଜି ରାତି ପାହୁ, କାଲିକଥା କାଲିକୁ ଦେଖିବା ନାହିଁ କି ।"

ପରଦିନ ବଡ଼ି ଭୋଅରୁ ଶ୍ରୀଧର ଗାଧୋଇ ପାଧୋଇ ରେଡ଼ି ହୋଇ ବୋଉର ବିଛଣା ପାଖକୁ ଗଲା କହିବାକୁ "ବୋଉ ମୁଁ ବାହାରିଲିଣି" ବୋଲି । ଡାକ ପକାଇଲା – "ବୋଉ, ବୋଉ, ମୁଁ ଯିବା ପାଇଁ ସଜିଲ୍ ହେଉଛି ।"

ବୋଉର ଭାରି ପତଳା ନିଦ, ଡାକକରେ ଜବାବ ଦିଏ । ଦି ଡାକରେ ଜବାବ୍ ନ ଦେବାରୁ, ସେ ରାଗିଛି ବୋଲି ଭାବି ଶ୍ରୀଧର ତାକୁ ହଲାଇଦେଇ କହିଲା, ତୁ ଆଉ ମନା କରନି ବୋଉ, ସବୁ ଦାୟିତ୍ୱ ତ ମୋରି ଉପରେ ନା ?

ବୋଉକୁ ହଲାଇଦେବା କ୍ଷଣି ଚମକି ପଡ଼ିଲଣ ଶ୍ରୀଧର । ଇଏ କ'ଣ, ବୋଉର ହାତଗୋଡ଼ ସବୁ କାଠି ହୋଇଯାଇଛି । ପୁଣିଥରେ ହଲାଇଲା । ମାତ୍ର କାଠଗଡ଼ଟିଏ ପରି ପଡ଼ିରହିଲା ବୋଉ । ଶ୍ରୀଧର କେବଳ ଚିତ୍କାରଟିଏ କଲା - "ଛାଡ଼ି ଚାଲିଗଲୁ ନା ବୋଉ ? ଠକି ଦେଲୁ ନା ?

ଶ୍ରୀଧରର ଚିତ୍କାର ଶୁଣି କ'ଣ ହେଲା ବୋଲି ଧାଇଁ ଆସିଲେ ସୁଲତା ଓ ଶ୍ରୀମନ୍ତ ।

ଶ୍ରୀମନ୍ତକୁ ଦେଖି ଶ୍ରୀଧର ଜୋର୍‌ରେ କାନ୍ଦଣା ଲହରି ଛୁଟାଇ କହିଲା - "ସବୁ ସରିଗଲାରେ ଶ୍ରୀମନ୍ତ, ଆମର ବୋଉ ଡାକ ଆଜିଠୁ ସରିଗଲା ।"

ଶ୍ରୀମନ୍ତ ମୁଣ୍ଡ ପିଟି କାନ୍ଦିଲା ବୋଉର ଗୋଡ଼ ତଳେ ଓ ନୂଆ କରି ବୋହୂ ଆସିଥିବାରୁ ଓଢ଼ଣା ଚିପି କାନ୍ଦିଲା ସୁଲତା ।

ବୋଉର ଶୁଦ୍ଧକ୍ରିୟା ସରିବା ପରେ ଶ୍ରୀଧର, ସୁଲତା ଓ ଶ୍ରୀମନ୍ତକୁ ପାଖରେ ବସାଇ କହିଲା - " ବୋଉ ଥିଲା ବେଳେ ଆମର ଚିନ୍ତା ନ ଥିଲା । ବାୟା ଚଢ଼େଇର କି ଯାଏ, ବାଆ କଲେ ବସା ଦୋହଲୁଥାଏ । କିଂତୁ ଏବେ ଆମ ଦାୟିତ୍ୱ ବଢ଼ିଗଲା । ଏବେ ଘର ଚଳାଇବା ସାଙ୍ଗକୁ ତୋ'ପାଠପଢ଼ା ଅଛି । ମୁଁ ଭାବୁଛି ଆଉ ଡେରି ନ କରି ଚାଲିଯିବି କଲିକତା । ହେଲେ, ତମେ ଦୁହେଁ ପରସ୍ପରର ଦାୟିତ୍ୱ ନେବ ।"

ସୁଲତା ବୁଝିପାରୁ ନ ଥିଲା - ସତରେ କ'ଣ ପରିବାରର ଦାୟିତ୍ୱ ଉଠାଇବା ପାଇଁ ଇଏ ଏମିତି ତରବର ହେଉଛନ୍ତି କଲିକତା ଚାଲିଯିବା ପାଇଁ ନା ମୁକୁଳିଯିବାକୁ ଚାହୁଁଛନ୍ତି ବିଫଳ ପୌରୁଷର ଅସଫଳ ପରିଧିରୁ । ଅଥଚ ସେ ମୁହଁ ଖୋଲି ତାଂକୁ ଅଟକାଇ ପାରୁ ନ ଥିଲା, ଗୋଟେ ଗ୍ରାମୀଣ ସଂସ୍କାରରେ ପରିପାଳିତ ହୋଇଥିବା ନିଜର ଲଜ୍ଜାଶୀଳତା ପାଇଁ ।

ଶ୍ରୀଧର ଚାଲିଗଲା କଲିକତା, ଚାଲିଗଲାନି ତ ଯେମିତି ବନ୍ଧନମୁକ୍ତ ହୋଇଗଲା ପତ୍ନୀର ଦାୟ ଓ ଦାୟିତ୍ୱରୁ ।

ଦିନ ଯାଇ ସଂଜ ହେଲା । ଚଉଁରା ମୂଳେ ସଂଜବତୀ ଜଳାଇ ଲଣ୍ଠନ ଜଳାଇଲା ସୁଲତା । ଡିବିରି ଲଗାଇ ବସାଇଲା ଭାତହାଣ୍ଡି । ଶ୍ରୀମନ୍ତକୁ କହିଲା, "ତମେ ଏଇ ପାଖରେ ବସ, ମୋତେ ଟିକେ ଡର ଡର ଲାଗୁଛି ।"

ଶ୍ରୀମନ୍ତକୁ ବି ଲାଗୁଥିଲା ଡର । ଅଥଚ ସେ ଲାଜରେ କହିପାରୁ ନଥିଲା ସେ କଥା । ଭାଉଜଙ୍କ କଥା ଶୁଣି କହିଲା, " ମୋତେ ବି ଛାନିଆ ଲାଗୁଛି । ଲାଗୁଛି, ବୋଉ ଯେମିତି ଶୋଇଛି ତା' ବିଛଣା ଉପରେ ।"

– "ହଁ – ଦିନାକେତେ ଏମିତି ଲାଗିବ । ଧୀରେ ଧୀରେ ଦେହସୁହା ହୋଇଗଲେ ଛାଡ଼ିଯିବ ଡର ।"

ରୋଷେଇସାରି ଖିଆପିଆ ସରିବା ପରେ ଦିଅର ଭାଉଜ ବସି ଗପିଲେ ବହୁ ରାତି ଯାଏ । କେହି କାହାରିକୁ କହି ପାରୁ ନ ଥିଲେ ଯେଝା ଯେଝା କୋଠରିକୁ ଯାଇ ଶୋଇବାକୁ । ଉଭୟଙ୍କୁ ଲାଗୁଥିଲା ଡର । ଶେଷକୁ ବାଧ୍ୟ ହୋଇ ସୁଲତା କହିଲା – "ଚାଲ ମୋ ଘରକୁ, ତମେ ସେଠି ଖଟ ଉପରେ ଶୋଇପଡ଼ିବ, ମୁଁ ତଳେ ସପଟିଏ ପକାଇ ଶୋଇପଡ଼ିବି । ଏକା ଏକା ଡରଡର ଲାଗିବ ମୋ ଆଖିକୁ ତ ଜମା ନିଦ ଲାଗିବ ନାହିଁ ।

ଶ୍ରୀମନ୍ତର ମନକଥା କହିଦେଲେ ଭାଉଜ । ସେ କହିଲା ନା – ନା, ତମେ ଖଟ ଉପରେ ଶୋଇପଡ଼ିବ, ମୁଁ ତଳେ ଶୋଇଯିବି ।

'ତମେ ଖଟରେ ମୁଁ ତଳେ' – 'ତମେ ଖଟରେ ମୁଁ ତଳେ' ...ଏମିତି ଭାବରେ କିଛି ସମୟ ପେଲାଠେଲା ଲାଗିଲା ଦିଅର ଭାଉଜଙ୍କ ଭିତରେ । ତା'ପରେ ନିଷ୍ପତ୍ତି ହେଲା – ଉଭୟ ଶୋଇବେ ଖଟ ଉପରେ । ସୁଲତା କହିଲା – ତୁମେ ତ ମୋର ଦିଅର, ପୁଅ ପରି । ମାଆ ପୁଅ ସାଙ୍ଗ ହୋଇ ଶୁଅନ୍ତି ନାହିଁ କି ?

ଶ୍ରୀମନ୍ତକୁ ଲାଗୁଥିଲା ଲାଜଲାଜ । ସେ ସାଙ୍କୁଡ଼ିହୋଇ ଶୋଇଲା ଖଟର ଗୋଟିଏ କଡ଼ରେ କାନ୍ଥକୁ ଲାଗି ।

ସୁଲତା ଗପି ଚାଲିଥିଲା ନାନା କଥା । ମଝିରେ ମଝିରେ ଥରେ ଥରେ ପଚାରିଦିଏ, "ଶୋଇପଡ଼ିଲଣି ନା ଶୁଣୁଛ ?" ଶ୍ରୀମନ୍ତ 'ହୁଁ' ମାରେ ଶୁଣୁଛି ବୋଲି । ଗପ ଯୋଡ଼ିବା ଭିତରେ ସୁଲତା ଭାବେ ପଚାରିଦେବ କି ଶ୍ରୀମନ୍ତକୁ, ସେ ତା'ଭାଇକୁ କିପରି ଜାଣେ ବୋଲି, ପୁଣି ଭାବେ ନା – ଥାଉ, ହୁଏତ ସେ ଜାଣି ନ ଥିବ ତା' ଭାଇର ଖଇଚା ବିଷୟରେ ।

ସୁଲତା ପଚାରିଲା – "ତମ ଭାଇ ସିନା ଏବେ ଏବେ କଲିକତା ଗଲେ, ଆଗରୁ ଗାଆଁରେ କ'ଣ କରୁଥିଲେ ?"

– "କ'ଣ ଆଉ କରିବ ଭାଇ – ସେ ତ ଗାଆଁରେ ଥିଲାବେଳେ ମାଇପି ପଲରେ ତାସ୍ ଖେଳିବା, କାହା ମୁଣ୍ଡରୁ ଉକୁଣୀ ବାଛିବା, କାହା ପାଦରେ ଅଳତା ଦେବା, ଝିଅମାନେ ଓଷା କଲେ ତାଂକ ପାଇଁ ଫୁଲ ଯୋଗାଡ଼ କରିବା, କାଗଜରେ ଫୁଲ କାଟି ସଜେଇବା, ମୁରୁଜ ଓ ଝୋଟି ପକାଇବାରେ ତାଂକର ସମୟ ଯାଉଥିଲା ।

ଯେଉଁମାନଙ୍କ ପାଇଁ ସେ ଏସବୁ କରେ, ସେଇମାନେ ହିଁ ତାକୁ ବେଖାତିର କରି ମାଇଚିଆ ବୋଲି ଡାକନ୍ତି । ସେଇଥିପାଇଁ ତ ବୋଉ ସବୁଦିନ ଗାଆଁରେ ସମ୍ପାକଟା କରେ । ତେଣୁ ବୋଉକୁ ଏ ଗାଆଁର ପିଲାମାନେ ଡାକୁଥିଲେ ସମ୍ପିବୁଢ଼ୀ । ପ୍ରଥମେ ପ୍ରଥମେ ବୋଉ ଚିଡୁଥିଲା ସେ ନାଆଁ ଶୁଣି, ମାତ୍ର ଧୀରେ ଧୀରେ ସେ ବି ସେ ନାଆଁରେ ବାନ୍ଧି ହୋଇଗଲା ।

ସୁଲତାର ଅନୁମାନଟା ଏବେ ସତ୍ୟରେ ପରିଣତ ହୋଇଗଲା । ଶ୍ରୀଧରକୁ ସେ ଯାହା ଭାବୁଥିବଲା, ସିଏ ସେଇଆ । ନଚେତ୍ ବାହାଘରର ଆଠଦିନ ଯାଏ କିଏ କ'ଣ କେବଳ ସ୍ତ୍ରୀ ସହ ଗପି ଗପି ରାତି ପୁହାଇଦିଏ ।

ସୁଲତା ଚାହିଁଲା, ଖଟକଡ଼ରେ କାନ୍ଥକୁ ଲାଗି ଶୋଇଥିବା ଶ୍ରୀମନ୍ତ ଆଡ଼େ । ଡର ଲାଗୁଛି ବୋଲି ଜଳାଇ ରଖିଥିଲା ଲଣ୍ଠନ । ଲଣ୍ଠନ ଆଲୁଅରେ ସେ ଦେଖିଲା ଶ୍ରୀମନ୍ତର ମୁହଁକୁ । ଗଜୁରି ଆସୁଛି ନିଶ । ଚାହିଁଲା ତା' ଦେହକୁ । ଶାଳଗଜା ପରି ହାତଗୋଡ଼ । ମୁଠୁଣେ ଚଉଡ଼ାର ଛାତି । ଲାଗୁଥିଲା ଗୋଟେ ସୁଠାମ ପୁରୁଷ ପରି ।

ସୁଲତା ଭିତରେ ଉଠୁଥିଲା ଖରଶ୍ୱାସ । ଭିତରେ ଭିତରେ ଭିଡ଼ିମୋଡ଼ି ହେଉଥିଲା ଦେହ । ତାତି ବଢ଼ିଯାଇଥିଲା ଛାତିରେ । ସେ ପୁଣି ଥରେ ଧୀରେ ଧୀରେ ଡାକିଲା – "କ'ଣ ଶୋଇପଡ଼ିଲଣି କି ?

ଏଥର ଶ୍ରୀମନ୍ତ ମୁହଁରୁ ଶୁଭିଲାନି 'ହୁଁ' । ସୁଲତା ଘୁଂଚିଗଲା ଶ୍ରୀମନ୍ତ କଡ଼କୁ । ତା' ଉପରେ ପକାଇଲା ହାତ । ଶ୍ରୀମନ୍ତ ଥିଲା ନିଶ୍ଚଳ ଯେମିତି ସେ ଶୋଇଯାଇଛି ନିଦରେ । ତା' ଛାତି ଉପରେ ମୁହଁ ଗୁଂଜିଲା ସୁଲତା । ତଥାପି ନିଶ୍ଚଳ ଥିଲା ଶ୍ରୀମନ୍ତ । ହାତ ବୁଲାଇଲା ଶରୀରର ଥାନ ଅଥାନରେ । ଏଥର କେବଳ ଶୁଭିଲା ଶ୍ରୀମନ୍ତର ଘନ ଘନ ନିଃଶ୍ୱାସ । ଧୀରେ ଧୀରେ ତା' ଲୁଂଗିର ଖୋଷଣି ଖୋଲିଲା ସୁଲତା । ନିଃଶ୍ୱାସ ଘନରୁ ଘନତର ହେଲା । ଏଥର ଆଖି ଖୋଲିଲା ଶ୍ରୀମନ୍ତ । ଧୀରେ କରି କହିଲା – ଏହା ପାପ ନା ?

ସୁଲତା ପଚାରିଲା – "କେଉଁଟା ପାପ ?"

– "ଦିଅର ଭାଉଜ ସଂପର୍କ ଭିତରେ ...."

– " 'ଦିଅର' କହିଲ ଯେ, ତମେ ଯାହାକୁ 'ଭାଇ' କହୁଛ ସେ କ'ଣ ଜଣେ ପୁରୁଷ ?

– "ଆଉ ?"

– "ସେ ଗୋଟେ ହିଂଜଡ଼ା । ତମେ କହୁଥିଲ ନା ତମ ଗାଆଁ ପିଲାଏ ତାଂକୁ ମାଇଚିଆ ଡାକନ୍ତି । ତାଂକ ଡାକଟା ଠିକ୍ । ନିଜ ବିଷୟରେ ସବୁ ଜାଣି ସେ ବାହା ହୋଇପଡ଼ିଲେ । ମୁଁ ମାନୁଛି, ଆମର ଅତି ଗରିବ । ସେମାନେ ଭାବୁଥିଲେ, ଦେଲୁ ନାରୀ ହେଲୁ ପାରି । ତା ଅର୍ଥ ନୁହେଁ ଯେ, ଜଣେ ହିଂଜଡ଼ା ସହ ସାରା ଜୀବନ ଛନ୍ଦିହୋଇ ରହିବା । ଯଦି ତମେ ଏହାକୁ ପାପ ବୋଲି ବିଚାରିବ । ତେବେ କେଉଁ ସୁଖପାଇଁ ମୁଁ ଏ ଘରେ ପଡ଼ିରହିବି ? ବରଂ ଚାଲିଯିବି ବାପଘର, ସେଠି ପରର ପାଇଟି କରି ପେଟ ପୋଷିବି ।"

ସୁଲତାର ବାପଘରକୁ ଚାଲିଯିବା କଥାଟାକୁ ମୋଟେ ଗ୍ରହଣ କରିପାରିଲାନି ଶ୍ରୀମନ୍ତ । କେଣ୍ଣୁ କହିଲା, "ତମେ ସେ କଥା ଜମା କହିବ ନାହିଁ । ତମର ସବୁ ଇଚ୍ଛା ମୋର ଇଚ୍ଛା । ତମର ସବୁ ସୁଖ ମୋର ସୁଖ ।"

ଖୋଲିଗଲା ସୂକ୍ଷ୍ମ ପରଦା ଆଢୁଆଳରେ ଥିବା ସମ୍ପର୍କର ସୂତାଖିଅ । ପାପର ପରିଭାଷା ପୁଣ୍ୟ ହୋଇ ଠିଆ ହେଲା ଆଗରେ । ଶ୍ରୀମନ୍ତର ନବତାରୁଣ୍ୟର ଉନ୍ମାଦନା ଲିଭାଇଦେଲା ସୁଲତା ମନରୁ ବିବାହର ପ୍ରଥମ ରାତିର ସ୍ୱପ୍ନଭଂଗର ଦୃଶ୍ୟ । ପାପ ହେଉ ପଛେ ଦେହ ଲାଗିଲା ଉଲ୍ଲସିତ ଏବଂ ମନରେ ଭଡ଼ିଲେ ପ୍ରଜାପତି ।

ଥରେ ଆରମ୍ଭ ହୋଇଥିବା ଖେଳର ଆଉ ଅନ୍ତ ନ ଥିଲା । ସୁଲତାର ମଧ୍ୟ ନ ଥିଲା ଶ୍ରୀଧରର ଅଣପୁରୁଷା ପାଇଁ ଅବସୋସ । ଶ୍ରୀଧର ପଠାଉଥିଲା ଟଙ୍କା, ସୁଖରେ ଚଳୁଥିଲା ସଂସାର । ମଝିରେ ମଝିରେ ସେ ଆସେ, ଦଶ ପନ୍ଦର ଦିନ ଘରେ ରହେ । ଆସିଲାବେଳେ କଲିକତାରୁ ଆଣିଥାଏ ନାନାଦି ପ୍ରସାଧନ – ସ୍ନୋ, ପାଉଡ଼ର, ସାବୁନ, ଅତରଠାରୁ ଅଳତା ରିବନ ଯାଏ । ସେ ଯେତେ ଦିନ ଘରେ ରହେ, କେବଳ ସଜାଏ ସୁଲତାକୁ । ତା' ମୁଣ୍ଡରେ ଜୁଡ଼ା ବାନ୍ଧିଦିଏ । ପାଦରେ ଲଗାଇଦିଏ ଅଳତା । ପାର୍ଲୋରର ପେସାଦାର ବିଉଟିସିଆନଙ୍କ ପରି ଫେସ୍ ମେକ୍‌ଅପ୍ କରାଇ ଦିଏ ସୁଲତାର । ବିଛଣାରେ ପକାଏ ଅତର, ବିଛାଏ ଫୁଲ । ଅଥଚ କେବେ ମଧ୍ୟ ଥରେ, ବିଫଳ ହେଉ ପଛେ ସମ୍ଭୋଗର କାମନା ବ୍ୟକ୍ତ କରେ ନାହିଁ । କେବଳ କଥାବାର୍ତ୍ତା ଓ ଆଖି-ସୁଖ ମଧ୍ୟରେ ସୀମିତ ରହେ ତା'ର ସୋହାଗ ଓ ଦାମ୍ପତ୍ୟର ପରିଧି ।

ଶ୍ରୀଧରର ସ୍ନେହ ଓ ସୋହାଗ ପାଇଁ ସୁଲତା ହୁଏ କୃତଜ୍ଞ । ଅଭିଯୋଗ ବି କରେନା ତା'ର ଯୌନ ଅକ୍ଷମତା ପାଇଁ କିମ୍ବା ଅନୁତାପ ବି କରେନା ନିଜ ପତ୍ନୀତ୍ୱର

ପ୍ରବଂଚନା ପାଇଁ । ବରଂ କୃତଜ୍ଞ ରହେ ଯେ ତା'ର ପେଟର ଭୋକ ମେଣ୍ଟାଇବା ପାଇଁ ତ ସେ ପଡ଼ି ରହୁଛି ବିଦେଶରେ ।

ଛୁଟି ସରିଗଲା ପରେ ବାହାରେ କଲିକତା । ଶ୍ରୀମନ୍ତକୁ କହେ, "ଘରର ଦାୟିତ୍ୱ ନେବୁ, ତୋ ଭାଉଜର ଦେହପା', ଭଲମନ୍ଦ ବୁଝିବୁ । ମନଦେଇ ପଢ଼ାପଢ଼ି କରିବୁ । ତୁ' ପଢ଼, ଯେତେ ପଢ଼ିବାର ଅଛି ପଢ଼ । ପଇସାପାଇଁ ଚିନ୍ତା କରିବାର ନାହିଁ ।"

ଶ୍ରୀମନ୍ତ ସବୁଥିରେ ହଁ ଭରେ । ଭାଇର ସରଳତା ପାଖରେ କୃତଜ୍ଞ ହୁଏ ଓ ଅକ୍ଷମତା ପାଇଁ ଦୁଃଖ କରେ ଏବଂ ଦୁଃଖ କରେ ଯେ ଭାଇ ତାକୁ ପାଠ ପଢ଼ାଇ ଯେଉଁ ବଡ଼ ମଣିଷ କରିବାର ସ୍ୱପ୍ନ ଦେଖୁଛି, ତାହା ଆଉ ସଫଳ ହୋଇପାରିବ ନାହିଁ ବୋଲି । କାରଣ ଏବେ ତା'ର ପାଠ ଆଉ ଆଦୌ ମନରେ ରହୁନି । ବହି ଖୋଲିଲେ ଭାଉଜ ଓ ବହି ବନ୍ଦ କଲେ ଭାଉଜ । ଧୀରେ ଧୀରେ ପାଠ ତା'ର ରସାତଳକୁ ଯାଉଛି । ସେ ତା'ର କାରଣ ଜାଣୁଥିଲେ ମଧ୍ୟ ନିରାକରଣର ଉପାୟ ପାଉ ନଥିଲା । ପାପ ଓ ପାଠ ମଧ୍ୟରେ ସେ ସନ୍ତୁଳି ହେଉଥିଲା ।

ଧୀରେ ଧୀରେ ବୟସ୍କ ହେଉଥିଲା ଶ୍ରୀମନ୍ତ । ମାଟ୍ରିକ ପରୀକ୍ଷା ଚାରିପାଞ୍ଚଥର ଫେଲ୍ ହେବା ପରେ ସେ ନିଷ୍ପତ୍ତି ନେଲା, ଆଉ ପାଠ ନୁହେଁ ଏବେ ଅନ୍ୟ କିଛି କରିବ । ଚାଷ କରିବାକୁ ଇଚ୍ଛା ଥିଲେ ମଧ୍ୟ ଜମିର ପରିମାଣ ଏତେ କମ୍ ଥିଲା ଯେ, ତାକୁ ନେଇ କିଛି କରିହେବ ବୋଲି ତା'ର ଭରସା ପାଉ ନ ଥିଲା । ଭାବିଲା ବ୍ୟବସାୟ କରିବ । ମାତ୍ର ପୁଞ୍ଜି ଆସିବ କେଉଁଠୁ ? ମନର କଥାକୁ ସେଦିନ ରାତିରେ ପ୍ରକାଶ କଲା ଭାଉଜଙ୍କ ଆଗରେ । ଭାଉଜ କହିଲେ, "ତମ ଭାଇଙ୍କୁ ଏ ବିଷୟରେ ପଚାରିବା । ଯଦି ସେ କିଛି ପୁଞ୍ଜି ଯୋଗାଡ଼ କରିପାରିବେ ଭଲ କଥା । ମୋ ମନ କିନ୍ତୁ କହୁଛି, ସେ ପାରିବେ ବୋଲି ।"

– "ଆଚ୍ଛା, ମୁଁ ଆଉ ଗୋଟେ କଥା ପଚାରିବି – କହିବ ?

– "କ'ଣ ପଚାର ।"

– "ଭାଇ ସିନା ଅଣପୁରୁଷା – ହେଲେ ମୁଁ ବି କ'ଣ... ? କାହିଁ ଏତେ ଦିନ ହେଲା ତମେ କଢ଼ି ତ ଧରିଲ ନାହିଁ ?"

–ଭଲ କଥାଟିଏ ପଚାରିଲ – ତମ ଭାଇ ଅଣପୁରୁଷା ବୋଲି କ'ଣ ଜାଣି ନାହାନ୍ତି ସଂସାର ରହସ୍ୟ । ସବୁ ଜାଣିଛନ୍ତି ସେ । ଯେ କୌଣସି ବିଶାରଦ ଠାରୁ ବି

ଅଧିକ । ତମେ କ'ଣ ଭାବୁଛ, ମୁଁ ସନ୍ତାନସମ୍ଭବା ହୋଇଥିଲେ ସେ ବିଶ୍ୱାସ କରିଯାଇଥାଆନ୍ତେ ନିଜକୁ ଏବଂ ନିଜ ପିତୃତ୍ୱକୁ । ମୁଁ ତାଙ୍କ ମନକୁ ଠିକ୍ ରୂପେ ପଢ଼ିନେଇଥିଲି । ପ୍ରତ୍ୟେକ ନାରୀ ଯଦିଓ ମାତୃତ୍ୱ କାମନା କରେ... ତଥାପି ମୁଁ ନିଜକୁ ସେଥିରୁ ନିବୃତ୍ତ ରଖିଲି । ଫୁଲ ଫୁଟିବା ଆଗରୁ ହିଁ ମୁଁ ଦଳିମକଚି ଦେଇଛି ପ୍ରତିଥର କଢ଼ିକୁ ।"

– "କିନ୍ତୁ ଏବେ ମୁଁ ଆଉ ଗୋଟେ କଥା ଭାବୁଛି ।"

– "କ'ଣ ?"

– "ତମେ ତମର ବେପାର ଆରମ୍ଭ କର, ମୁଁ ତମ ପାଇଁ ପାତ୍ରୀ ସନ୍ଧାନ କରୁଚି ତମର ବାହାଘର ପାଇଁ ।"

– "ତମ ମୁଣ୍ଡଫୁଣ୍ଡ ଖରାପ ହେଲାଣି ବୋଧେ, ତେଣୁ ତମେ ଏକଥା କହୁଛ । ତମେ କ'ଣ ଯଥେଷ୍ଟ ନୁହଁ କି, ଆଉ ବାହାଘର କ'ଣ ?"

– "ଏଇଟା ଯେଉଁଟା ହେଉଥିଲା, ତାହା କେବଳ ଥିଲା ଦେହସୁଖ ଏବଂ ବିଶେଷ କରି ମୋ ଦେହସୁଖ । ମୁଁ ଭାବୁଛି, ଯେତିକି ଦେହସୁଖ ମୋ ଭାଗ୍ୟରେ ଥିଲା, ମୁଁ ପାଇସାରିଲଣି । ଏବେ ଏ ବଂଶ କଥା ଚିନ୍ତା କରିବାକୁ ପଡ଼ିବ । ଏ ବଂଶଲତାକୁ ଆଗକୁ ମଡ଼ାଇବାକୁ ପଡ଼ିବ । ଏହା ବ୍ୟତୀତ ଆମେ ଗାଆଁରେ ଘର କରି ରହିଛନ୍ତି । ଲୋକମତକୁ ସମ୍ମାନ ଓ ଲୋକଲଜ୍ଜାକୁ ତ ଭୟ କରିବାକୁ ପଡ଼ିବ । ଆଜିଯାଏ ଆମ ସମ୍ପର୍କକୁ କେହି ଆଙ୍ଗୁଳି ଉଠାଇ ନାହାନ୍ତି । ମାତ୍ର ତମ ବୟସ ଗଡ଼ିଗଲେ ଏବଂ ତମେ ବାହା ନ ହେଲେ ଆଙ୍ଗୁଳି ତ ଉଠିବ ନିଶ୍ଚୟ ।"

– "ମୁଁ ତମ ଇଚ୍ଛାକୁ ସବୁବେଳେ ସମ୍ମାନ ଦେଇ ଆସିଛି । ତବ ଇଚ୍ଛା ସେହି ମମ ଦୀକ୍ଷା ଏବଂ ତମ ଆଦେଶ ଶିରୋଧାର୍ଯ୍ୟ । ଯଦି ଏଥିରେ ତମେ ସୁଖୀ ହୋଇପାରିବ, ତେବେ ମୋର କିଛି କହିବାର ନାହିଁ, ମାତ୍ର ଯାହା ନିଷ୍ପତ୍ତି ନେବ ଭାବିଚିନ୍ତି ନେବ ।"

ଶ୍ରୀଧର ଦୋକାନ କରିବା ପାଇଁ ଆବଶ୍ୟକୀୟ ପୁଞ୍ଜି ଯୋଗାଇଦେଲା । ଗାଆଁରେ ଗୋଟେ ତେଜରାତି ଦୋକାନ ଖୋଲିଲା ଶ୍ରୀମନ୍ତ । ଦୋକାନ ଖୋଲା ହେଲା ବେଳକୁ ଶ୍ରୀଧର ଆସିଥିଲା କଲିକତାରୁ । ତାକୁ ସୁଲତା କହିଲା – "ତମେ ଏବେ ଗୋଟେ ଭଲ ପାତ୍ରୀ ନିଘାକର । ଶ୍ରୀମନ୍ତକୁ ଦି' ହାତ କରିଦେଲେ ଆମ ଦାୟିତ୍ୱ ସରିବ ।"

ସୁଲତା ପାଟିରୁ କଥା ନ ସରୁଣୁ ଶ୍ରୀଧର କହିଲା – "ଇଏ ଗୋଟେ କଥା ! ତୁ ଚାହୁଁଛୁ, ତାହା ପୁଣି ପୂରଣ ହେବ ନାହିଁ ! ରହ, ଦେଖ, ମାସ ଦିଇଟାରେ ମୁଁ କେମିତି

ଖୋଜି ଖୋଜି ଆଣିବି ସୁନାନାକୀ ଝିଅ । ତୋ ରୂପ ବି ତା ପାଖରେ ଫିକା ପଡ଼ିଯିବ । ସେତେବେଳେ ଈର୍ଷାରେ ଜଳି ମୋତେ ଆଉ ଦୋଷ ଦେବୁନୁ ଆଗରୁ କହି ଦେଉଛି ।"

ସତକୁ ସତ ଗୋଟିଏ ଚାଉଳରେ ଗଢ଼ା ଝିଅଟିଏ ବାଛି ଶ୍ରୀମନ୍ତକୁ ବାହା କରାଇଦେଲା ଶ୍ରୀଧର । ଚଉଠି ରାତି ଦିନ ସୁଲତା ନେଇଗଲା ଶ୍ରୀମନ୍ତକୁ ତା ଶୋଇବାଘର ପାଖକୁ । ତାକୁ ଘର ଭିତରକୁ ଠେଲିଦେବା ପୂର୍ବରୁ କହିଲା – "ଯେଉଁ ଅଧ୍ୟାୟ ଏଇଠୁ ଶେଷ ହେଉଛି, ତାକୁ ଆଉ କେବେ ମନକୁ ଆଣିବ ନାହିଁ । ଏବେଠୁ ମୁଁ ତମର ଭାଉଜ ନୁହେଁ ମାଆ ମଧ୍ୟ ।"

ଅଷ୍ଟମଙ୍ଗଳା ପରେ ପରେ ବାପଘରକୁ ଲେଉଟାଣି ଗଲା ଶ୍ରୀମନ୍ତର ସ୍ତ୍ରୀ । ବନ୍ଧୁବାନ୍ଧବ ଯିଏ ଆସିଥିଲେ ସମସ୍ତେ ଯାଇ ସାରିଥିଲେ । ଶ୍ରୀଧର ବି ବାହାରି ଯାଇଥିଲା କଲିକତା । ଖିଆପିଆ ସରିବା ପରେ ସୁଲତା ଶୋଇଗଲା ତା' କୋଠରିର ଦୁଆର ବନ୍ଦ କରି । ଶ୍ରୀମନ୍ତ ଆଖିକୁ ଆସୁ ନ ଥାଏ ନିଦ । ବସିଥାଏ ପଲଙ୍କ ବାଡ଼କୁ ଆଉଜି । ମନେ ମନେ ଭାବୁଥାଏ, ସତରେ କ'ଣ ଭାଉଜ ଖୁସି ଅଛନ୍ତି ମୋ ବାହାଘର କରାଇ ଦେଇ ? ମୋ ବାହାଘର ସହ ତାଙ୍କର କାମନା କ'ଣ ନିର୍ବାପିତ ହୋଇଗଲା ? ନା – ସେ ଏମିତି ଖୁସି ହେବାର ଅଭିନୟ କରୁଛନ୍ତି ? ସେ ଖୁସିର ଅଭିନୟ ଯଦି ବା କରୁଛନ୍ତି, ମୁଁ କାହିଁକି ସେ ଅଭିନୟରେ ଖୁସି ହୋଇପାରୁନାହିଁ ?

କେତେବେଳେ ଅନ୍ୟମନସ୍କ ହୋଇ ନିଜ କୋଠରିରୁ ବାହାରି ଭାଉଜଙ୍କ ଦୁଆର ପାଖରେ ଠିଆ ହୋଇଛି ଶ୍ରୀମନ୍ତ, ନିଜେ ବି ଜାଣିପାରିଲା ନାହିଁ । ଭାଉଜଙ୍କ ଦୁଆରର ଜଞ୍ଜିରଟିକୁ ଝଣ୍‌ଝଣ୍ କଲା । କିଛି ସମୟ ଯାଏ ଶୁଣିଲେନି ଭାଉଜ । ପୁଣି ଥରେ ଝଣ୍‌ଝଣ୍ କଲାରୁ ଯେମିତି ଗଭୀର ନିଦରୁ ଭାସି ଆସିଲା ସ୍ୱରଟିଏ – କିଏ, କିଏ ?

– "କବାଟ ଖୋଲ ଭାଉଜ – ମୁଁ ଶ୍ରୀମନ୍ତ ।"

ଭାଉଜ ଦୁଆର ଖୋଲି କବାଟକୁ ଦରଆଉଜା କରି ପଚାରିଲେ – "ତମେ ଏଯାଏଁ ଶୋଇନ ଶ୍ରୀମନ୍ତ ?"

– "ଶୋଇ ପାରୁଛ କେଉଁଠି ?"

– "କ'ଣ ଚାନ୍ଦ କଥା ମନେ ପଡୁଛି ?"

– 'ନାଁ – ଚାନ୍ଦ ନୁହେଁ, ତମ କଥା ।"

– "ମୋ କଥା ! ମୁଁ ପରା ତମକୁ କହିଥିଲି, ସେ ଅଧ୍ୟାୟେ ସେଇଠୁ ସରିଲା ବୋଲି, ଆଉ କେବେ ତାକୁ ମନେ ପକାଇବ ନାହିଁ ।"



# ମିଛି ମିଛିକା ଫଟୋ

ଗୋଟିଏ ଛୋଟିଆ ମିଛ, ନା ବରଂ ପ୍ରତାରଣା କହିଲେ ଠିକ୍ ହେବ, ଯାହା ଜୀବନସାରା ମୋତେ ଏମିତି ସନ୍ତୁଳିବ ଏକଥା ମୋ କଳ୍ପନାର ବାହାରେ ଥିଲା । ଗୋଟେ ନିରୀହ ଓ ନିର୍ମାୟା ମଣିଷର ସରଳ ଆବେଗକୁ ଠକାଇବା ବେଳେ ମନରେ ଥିଲା କିଛିଟା କାର୍ପଣ୍ୟ ଭାବ ଓ ତା'ର ଅଜ୍ଞତାକୁ ସହଜରେ ଠକି ଦେଇପାରିବାର ଦୁଷ୍ଟାମି । ସେତେବେଳେ ତାକୁ ନ ଠକାଇ ତା' ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିଥିଲେ ଯେ ସେ ଆହତ ହୋଇଥାଆନ୍ତା, ଏମିତି ବ୍ୟକ୍ତିତ୍ୱ ସମ୍ପନ୍ନ ମଣିଷଟିଏ ସେ ନଥିଲା । ମାତ୍ର ସେକଥା ନକରି, ଆମ ଚାଲାଖିପଣରେ ତାକୁ ଠକି ଗୋଟିଏ ମିଛ ସୁଖ ଦେବାର ମୋହ ଏବଂ ଆମର ଆବଶ୍ୟକ ସମୟତକ ତାକୁ ବଶମ୍ବଦ କରି ରଖିବାର ଆଗ୍ରହ ଆମକୁ ପ୍ରେରିତ କରିଥିଲା ସେପରି ଏକ ଖେଳ ଖେଳିବାକୁ । ମହାଭାରତର ସେହି କନ୍ଦୁକଟି ଭୀମଙ୍କ ହାତରେ ଘୋରି ହୋଇ ହୋଇ ନଦୀ ଗର୍ଭରେ ପତିତ ହେବା, ତାକୁ ମାଛ ଗିଳିବା, ସେ ମାଛକୁ ଧୀବର ଧରିବା ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ସେଥିରୁ ଶର ପ୍ରସ୍ତୁତ କରି ଜାରା କୃଷ୍ଣଙ୍କୁ ବଧ କରିବା ପରି, ମୋତେ କ'ଣ ଜଣାଇଥିଲା ଯେ ସେହି ଖେଳ ଖେଳର ମିଛଟି ଦିନେ ଜାରାର ଶର ହୋଇ ମୋ ହୃଦୟକୁ ବାରମ୍ବାର ବିଦ୍ଧ କରି ମୋତେ ଲହୁଲୁହାଣ କରାଇବ । ମୁଁ ଏବେ ନା ସତ୍ୟପ୍ରକାଶ କରି ସେଥିରୁ ମୁକୁଳି ପାରୁଛି ନା ସେଇଟା ଗୋଟିଏ ମିଥ୍ୟା ଅଭିନୟ ଥିଲା ବୋଲି କହି ଦେଇ ମୋ କାନ୍ଧରେ ସବାର ହୋଇଥିବା ବେତାଳର ବୋଝକୁ ହାଲ୍‌କା କରିପାରୁଛି ।

ଶୁଣିଛି ବହୁ ଅପ୍ରକାଶ୍ୟ ପାପର ବୋଝ ଘାଣ୍ଟିଛି ବହୁ ଲୋକଙ୍କୁ ମରଣ ଶଯ୍ୟାରେ । ସାରାଜୀବନ ହରିନାମ ସଂକୀର୍ତ୍ତନରେ ବିତାଇଥିବା ଆମ ଗାଆଁର ପଞ୍ଚୁ ସାମଲର ପ୍ରାଣ ତା' ଶରୀରକୁ ଛାଡ଼ି ନଥିଲା ବହୁଦିନଯାଏ । ମୃତ୍ୟୁ ଆସନ୍ନ ଜାଣି ପରିବାର ଲୋକେ ଗୋ', ଭୂମି, ଅନ୍ନ, ବସ୍ତ୍ର ଇତ୍ୟାଦି ଦାନ କରି ସାରିଥିଲେ । ଏପରିକି ଧୋବା ଡକାଇ ବାଡ଼ିରେ ଥିବା କରଞ୍ଜ ଓ କାଟଣ୍ଡା ଗଛର ଡାଳ କଟାଇ, କାଳେ ହୁଏତ ବର୍ଷାଦିନ ବୋଲି

କୁଇ ଠିକ୍ ଜଳିବନି ବୋଲି ସେ କାଠକୁ ଶୁଖାଇ ରଖିଥିଲେ । ମାତ୍ର ମୃତ୍ୟୁର ସମୟକୁ ନେଇ ସମସ୍ତଙ୍କର ପୂର୍ବାନୁମାନ ଭୁଲ ପ୍ରମାଣିତ କରି ସେ ବଞ୍ଚି ରହିଥିଲେ । ବିଛଣାରେ ପଡ଼ି ପଡ଼ି ତାଙ୍କ ପିଠିର ଚମଡ଼ା ଉତୁରି ଯାଇଥିଲେ ମଧ୍ୟ ତାଙ୍କ ପ୍ରାଣପକ୍ଷୀ ଛାଡୁନଥିଲା ଶରୀର । ଅନୁମାନଠୁ ତାଙ୍କ ମୃତ୍ୟୁ ଅପେକ୍ଷାର ଆୟୁଷ ଦୀର୍ଘତର ହେଉଥିବାରୁ ସମସ୍ତେ ଭିତରେ ଭିତରେ ବ୍ୟସ୍ତ ହୋଇ ପଡୁଥିଲେ । ଗାଆଁ ଜ୍ୟୋତିଷଙ୍କ ପାଖରେ ତାଙ୍କ ଜାତକ ବିଚାର କଲାରୁ ଜଣାପଡ଼ିଲା ଯେ, ସେ ତାଙ୍କର ସମ୍ପୂର୍ଣ୍ଣ ଆୟୁଷ ଜିଇଁ ସାରିଲେଣି । କିଛି ଗୋଟେ ହୁଏତ ଗୋପନୀୟ ପାପ ରହିଯାଇଛି, ଯାହା ପ୍ରକାଶ ନ କଲାଯାଏ ପ୍ରାଣପକ୍ଷୀ ଛାଡୁନି ଶରୀର ।

ସମସ୍ତେ ବିସ୍ମୟ ହୋଇ ଜ୍ୟୋତିଷଙ୍କ ଗଣନା ଉପରେ ସନ୍ଦେହ ପ୍ରକଟ କଲେ । ଜୀବନସାରା ହରିନାମ ସଂକୀର୍ତ୍ତନ କରି କଟାଇଥିବା ଲୋକଟିର ଜୀବନ ତ ଏକ ଖୋଲା ବହି, ସେଠି ଆଉ କେଉଁଠି ରହିଲା ଅପ୍ରକାଶ୍ୟ ପାପର ପାପବୋଧ ? ଆପାତତଃ ଅନ୍ୟମାନଙ୍କଠାରୁ ବିଜ୍ଞ ଥିବା ତାଙ୍କର ଜଣେ ପୁଅ କହିଲା – ଆମେ ହୁଏତ ବାପାଙ୍କର ଆଲୋକିତ ଦିଗଟିକୁ ଦେଖିଥିବା, ସେଥିପାଇଁ ଏକଥା ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହନ୍ତି । ପ୍ରତ୍ୟେକ ମଣିଷ ଜୀବନରେ କିଛି ବ୍ୟକ୍ତିଗତ ଗୋପନୀୟତା ଥାଏ । ଆମେ ଥରେ ତାଙ୍କୁ ପଚାରିଦେଲେ କ୍ଷତି କ'ଣ ?

ସମସ୍ତଙ୍କ ନିଷ୍ପତ୍ତି ଅନୁଯାୟୀ ତାଙ୍କ ବଡ଼ପୁଅ ଶଯ୍ୟା ଧାରରେ ଯାଇ ଠିଆ ହୋଇ ପଚାରିଲେ – ବାପା ! ଆଉ କାହାକୁ କିଛି କହିବାର ଥିଲା କି ?

ଅତି କଷ୍ଟରେ ଆଖି ଖୋଲି ସେ ଚାହିଁଲେ ପୁଅ ଆଡ଼େ । କିଛି ସମୟ ଅପଲକ ନୟନରେ ଚାହିଁଲେ ଶୂନ୍ୟକୁ । ବୋଧହୁଏ ସେହି ଚାହିଁବା ଭିତରେ ସେ ଶକ୍ତି ସଞ୍ଚୟ କରୁଥିଲେ ଗୋପନୀୟ ପାପର ରହସ୍ୟ ଉନ୍ମୋଚନ କରିବାକୁ । ଶେଷକୁ ଗୋଟେ ଗମ୍ଭୀର। ଭିତରୁ ଉଠୁଥିବା ସ୍ୱରରେ ସେ କହିଲେ – ମୋର ଆଜୀବନ ହରିନାମ ସଂକୀର୍ତ୍ତନର ପୁଣ୍ୟ ଯଥେଷ୍ଟ ହେଉନି ଗୋଟିଏ ପାପକୁ ଧୋଇବାକୁ । ମୁଁ ଜାଣିସାରିଲିଣି ସେ ପାପଟିକୁ ପ୍ରକାଶ ନ କଲା ଯାଏଁ ଏ ପିଣ୍ଡରୁ ପ୍ରାଣ ଯିବନି ।

ପାପ ! ଆପଣ କି ପାପ କରିଥିବେ ବାପା ? ଏହା ଆପଣଙ୍କ ମନର ଭ୍ରମ ହୋଇପାରେ ।

ନା – ଭ୍ରମ ନୁହେଁ ସତ୍ୟ । ମୁଁ ଗୋମାତା ହରଣ କରିଥିବା ଏକ ବିରାଟ ପାପୀ ।

ସେଠାରେ ଉପସ୍ଥିତ ଥିବା ସମସ୍ତ ଆତ୍ମୀୟସ୍ୱଜନ କେବଳ ବିସ୍ମୟ ବିସ୍ତାରିତ ନେତ୍ରରେ ପରସ୍ପରକୁ ଚାହିଁଥିଲେ, ମାତ୍ର କେହି ସେ ପାପକୁ ପୁନଃ ଉଚ୍ଚାରଣ କରିନଥିଲେ । କେହି କାହାରିକୁ କିଛି କହି ନପାରି ଗୋଟି ଗୋଟି ହୋଇ ସେ ସ୍ଥାନ ଛାଡ଼ି ବାହାରି ଆସିଲେ । ଯେମିତି ଆକାଶ ଛିଡ଼ି ପଡ଼ିଛି ମୁଣ୍ଡରେ ସେମିତି ଥିଲା ସମସ୍ତଙ୍କର ମୁହଁ । ସେ ଘଟଣାର ଘଣ୍ଟାଏ ନ ପୂରୁଣୁ ଘରର ସାନବୋହୂର କାନ୍ଦଣାର ଲହରୀ ସୂଚାଇ ଦେଲା ଯେ ବୁଢ଼ାଙ୍କ ପିଣ୍ଡରୁ ପ୍ରାଣ ବିଦାୟ ନେଲା ବୋଲି ।

ଏମିତି ବହୁ କଥା ଶୁଣି ଶୁଣି ମୋ ଭିତରେ ଗୋଟେ ଭୟ ଆସେ ଯେ ମୁଁ ଖେଳିଥିବା ସେହି ମିଛର ଖେଳଟି କ'ଣ ଏମିତି ଏକ ପାପର ସଂଜ୍ଞା ନେଇ ଠିଆ ହେବ ମୋ ମୃତ୍ୟୁଶଯ୍ୟାରେ ? ପର ମୁହୂର୍ତ୍ତରେ ପୁଣି ଭାବେ, ଏଇଟା କାହିଁକି ପାପ ହେବ ? ଘଟଣାଟି ପାଇଁ ମୁଁ ଯେ ଦୁଃଖ ଓ ଅନୁତାପ ନ କରିଛି ବା ନକରୁଛି ସେ କଥା ନୁହଁ, ମାତ୍ର ଯାହା ଘଟିଯାଇଛି ତାହାକୁ ସଂଶୋଧନ କରିବା ମୋ ସାଧ ବାହାରେ । ମୋତେ କ'ଣ ଜଣାଥିଲା ଯେ ସେ ଘଟଣାର ପରିଣତି ଏତେ ବାଟକୁ ଆସିବ ବୋଲି ।

ମୁଁ ସେ ବର୍ଷ ନୂଆ କରି କଲେଜ ଯାଇଥାଏ । ମୋର ମ୍ୟାଟ୍ରିକ ପାସ୍ କରିବାଟା କେବଳ ଆମ ପରିବାର କାହିଁକି ଆମ ଅଞ୍ଚଳ ପାଇଁ ଥିଲା ପ୍ରଥମ । ଖୁସିରେ ଘରେ କାହାରି ଗୋଡ଼ ତଳେ ଲାଗୁନଥାଏ । ମୁଁ ଯେଉଁଦିନ କଟକରେ ପଢ଼ିବା ପାଇଁ ଘରୁ ଗୋଡ଼ କାଢ଼ିଲି, କଲିକତାରେ ଥିବା ମୋର ଦାଦା ଉପହାର ସ୍ୱରୂପ ଦେଇଥିଲେ ଗୋଟେ ଛୋଟ ବାକ୍ସ ପରି ଦେଖାଯାଉଥିବା ଆଇସୋଲି କ୍ୟାମେରା । ମୋର ମ୍ୟାଟ୍ରିକ ପାସ୍ କରିବା ଖୁସିଠାରୁ ସେଭଳି ଏକ କ୍ୟାମେରାର ଅଧିକାରୀ ହୋଇ ମୁଁ ଥିଲି ଗର୍ବିତ । ଆଜିକାଲିର କ୍ୟାମେରା ପରି ସେଥିରେ ରଙ୍ଗିନ ଫଟୋ ଉଠୁନଥିଲା ସତ, ମାତ୍ର ସେ ସମୟ ପାଇଁ ତାହା ଥିଲା ପ୍ରଗତିସୂଚକ । ଯଦିଓ ମୁଁ ଗ୍ରାମାଞ୍ଚଳରୁ ଯାଇଥିଲି, ମାତ୍ର ଏକ ମୂଲ୍ୟବାନ୍ ଫଟୋ ଉଠା ଯନ୍ତ୍ରର ଅଧିକାରୀ ଥିବାରୁ ସହରର ପିଲାଙ୍କ ପାଖରେ ମୁଁ କେବଳ ଈର୍ଷାର ପାତ୍ର ନଥିଲି, ବରଂ ମୋ ସାଙ୍ଗରେ ବନ୍ଧୁତ୍ୱ ବାନ୍ଧିବାକୁ ସେମାନଙ୍କ ଭିତରେ ଥିବା ପ୍ରବଳ ପ୍ରତିଯୋଗିତାର କାରଣ ଥିଲି । ଫଟୋ ଉଠା ଶିଖିବାର ପ୍ରବଳ ସଉକ ରଖୁଥିବା ଅମରେନ୍ଦ୍ର ସେହି କ୍ୟାମେରା ଦେଖିବା, ଧରିବା ଓ ସେଥିରେ ଫଟୋ ଉଠାଇବା ପାଇଁ ଖାସ୍ ମୋ ସହ ବନ୍ଧୁତ୍ୱ କରିଥିଲା ।

ଅମରେନ୍ଦ୍ର ଫଟୋ ଉଠା ଶିଖିବା ପାଇଁ ଓ କ୍ୟାମେରା ପାଇଁ ମୋ ସହ ଯୋଡ଼ିଥିବା ବନ୍ଧୁତ୍ୱ ଧୀରେ ଧୀରେ ଆମ ଉଭୟଙ୍କର ଅସଲ ବନ୍ଧୁତ୍ୱରେ ପରିଣତ ହୋଇ ଯାଇଥିଲା । ମୁଁ ଖରାଦିନେ ଛୁଟିରେ ଯେତେବେଳେ ଗାଆଁକୁ ବାହାରିଲି ଆସିବା ପାଇଁ ଅମରେନ୍ଦ୍ର ମୋତେ ପଚାରିଲା - ମୋର ଗୋଟେ ଗାଆଁ ଦେଖିବାର ସଉକ ଅଛି, ମୋତେ ନେବୁ ତୋ ସାଙ୍ଗରେ ?

ମୁଁ ତାକୁ ଆନନ୍ଦରେ ଚାହିଁ କହିଥିଲି - ତୁ ମୋ ସାଙ୍ଗରେ ଆମ ଗାଆଁକୁ ଗଲେ ମୁଁ ତ ବହୁତ ଖୁସି ହେବି । ମୋ ଛୁଟି ତ ମଜାରେ କଟିବ । ହେଲେ ତୁ ଆଜୀବନ ସହରରେ ବଢ଼ିଆସିଥିବା ପିଲା, ଆମ ଗାଆଁ କ'ଣ ତୋତେ ଭଲ ଲାଗିବ ?

ଆରେ ମୁଁ ଗାଆଁକୁ ଭଲ ପାଏ ବୋଲି ତ ତୋ ସହିତ ଯିବାକୁ ଭାବିଛି । ତୁ କେବଳ ହଁ କହିଲେ ମୁଁ ପ୍ରସ୍ତୁତ ହୋଇଯିବି ।

ମୁଁ ନା କହିବି ବୋଲି ତୁ କାହିଁକି ଭାବୁଛୁ ? ବାହାର, ଯିବା ।

ହଁ, ଯିବା ପୂର୍ବରୁ ମୋର ଆଉ ଗୋଟିଏ କଥା । କ୍ୟାମେରା ତୋର, ମୁଁ ସେଥିରେ ଗୋଟିଏ ରିଲ୍ ଭର୍ତ୍ତି କରି କିଛି ଗାଆଁର ଫଟୋ ଉଠାଇବି ।

ଇଏତ ଆହୁରି ଭଲ କଥା, ଏଥିରେ ମୋର ଅରାଜି ହେବାର କ'ଣ ଅଛି ?

ଅମରେନ୍ଦ୍ର ମୋ ସହ ଆସିଲା । ମୁଁ ଘରକୁ ଆଗରୁ ଖବର ପଠାଇଥିଲି । ଆମେ ଆମ ଗାଆଁଠାରୁ ଦୁଇକୋଶ ଦୂରରେ ଥିବା ବସ୍‌ଷ୍ଟାଣ୍ଡରେ ଓହ୍ଲାଇବା ବେଳକୁ ଆମ ଘରର ହଳିଆ ବେଡ଼ା ଅପେକ୍ଷା କରିଥିଲା ବସ୍ ଷ୍ଟାଣ୍ଡରେ । ଆମେ ଆମର ଜିନିଷ ପତ୍ର ଶଗଡ଼ରେ ଲଦି ଗାଆଁରେ ପହଞ୍ଚିଲା ବେଳକୁ ବେଳ ରତ ରତ ।

ଯେହେତୁ ଆମ ଘର ଲୋକେ ଆଗରୁ ଜାଣିଥିଲେ ମୋ ସହ ଏକ ସହରୀ ସାଙ୍ଗ ଆସୁଛି ବୋଲି, ତା'ର ରହିବାର ଯେମିତି କୌଣସି ଅସୁବିଧା ନହୁଏ, ତାକୁ ଧ୍ୟାନ ଦେଇ ସମସ୍ତ ପ୍ରସ୍ତୁତି କରିଥିଲେ । ଆମ ହଳିଆ ବେଡ଼ାକୁ ସ୍ୱତନ୍ତ୍ର ନିର୍ଦ୍ଦେଶ ଦିଆ ଯାଇଥିଲା, ଆମେ ଯେତେଦିନ ରହିବୁ ଆମର ସ୍ୱତନ୍ତ୍ର ଆଜ୍ଞାବହ ହିସାବରେ ସେ ରହିବ ।

ବେଡ଼ା ବି ତା' କାର୍ଯ୍ୟରେ ସାମାନ୍ୟ ତ୍ରୁଟି କରି ନଥିଲା । ଆମ ମୁହଁରୁ ଫରମାସ୍ ଜାରି ହେଉ ହେଉ ସେ ତାକୁ ପୂରଣ କରୁଥିଲା । କେବଳ ଆମର ପଫରମାସ୍ ନୁହଁ, ଆମ ମନକୁ ଚାହିଁ, ଆମ ରୁଚିକୁ ଧ୍ୟାନରେ ରଖି ସେ ବି କେତେଗୁଡ଼ିଏ ଜିନିଷ ମନକୁ ମନ କରି ଆମକୁ ଖୁସି କରୁଥିଲା । ଯେମିତି ଆମର ପୋଖରୀ ହୁଡାରୁ ପଇଡ଼ ତୋଳି

ପିଆଇବା, ତାଳସଜ କାଟି ଖୁଆଇବା, ପାଳରୁ ତରଭୁଜ ଓ ଫୁଟିକାକୁଡ଼ି ଆଣି ଖୁଆଇବା, ଆମ ସୁଆଁପାଳ ତୋଟାର ଗଛରେ ବସା ବାନ୍ଧିଥିବା ମହୁମାଛିଙ୍କ ବସା ଭାଙ୍ଗି ମହୁ ଆଣିଦେବା, ଆମ ସୁନ୍ଦରୀ ଆମ୍ବଗଛର ଶୀର୍ଷରେ ଥିବା ପାଚିଲା ଆମ୍ବକୁ ଅତି ଯତ୍ନରେ ତୋଳି ଗାମୁଛାରେ ବାନ୍ଧି ତଳକୁ ଆଣିଦେବା, ପୋଖରୀରୁ ରୋହି, ଭାକୁଡ଼ ଧରି ଆମକୁ ଖୁଆଇବାର ବ୍ୟବସ୍ଥା କରିବା, କାଳେ ପୋଖରୀ ମାଛରେ ମନ ଭରିବ ନାହିଁ ବୋଲି ନଈରୁ ଚିଙ୍ଗୁଡ଼ି ଧରି ଖୁଆଇବା ଇତ୍ୟାଦି । ମୋଟାମୋଟି ଭାବରେ ଆମକୁ ଏକ ରାଜକୀୟ ସୌଖ୍ୟ ପ୍ରଦାନରେ ବେଡ଼ା ଥିଲା ତତ୍ପର ।

ବେଡ଼ାର ଏ କରିତ୍‌କର୍ମା ଗୁଣ ଓ ଆମ ପ୍ରତି ତା'ର ଆଦର ଯତ୍ନରେ ବିମୋହିତ ହୋଇପଡିଥିଲା ଅମରେନ୍ଦ୍ର । ସେ ମୋତେ ପଚାରିଲା ଯାର ନାଆଁ ବେଡ଼ା କାହିଁକି ରଖାଯାଇଛି । ମୁଁ ଅଳ୍ପ ହସି କହିଲି - ଏଇଟା ତା'ର ଶ୍ରଦ୍ଧା ନାମ ବୋଧହୁଏ, ମାତ୍ର ତା' ଭଲ ନାଆଁଟା କ'ଣ ମୁଁ କହିପାରିବି ନାହିଁ । ଯାଙ୍କର ପରିବାର ବଂଶାନୁକ୍ରମିକ ଭାବେ ଆମ ଘରେ ହଳିଆ ରହି ଆସିଛନ୍ତି । ଇଏ କୁଆଡ଼େ ଜନ୍ମ ହେବା ପରେ ପରେ ତା' ବାପ ମରିଗଲା ବାତ ରୋଗରେ । ତା' ମାଆ ଆମ ଘରେ ପାଇଟି କରି ଯାକୁ ପୋଷିଥିଲା । ଛୋଟ ବେଳୁ ସେ ଆମଘରେ ରହି ଆସିଛି । ତା' ମାଆ କାମ କଲା ବେଳେ ଇଏ ତା' ପଛେ ପଛେ ବୁଲୁଥାଏ । ଆମ ଜେଜେ ତାକୁ ରାଗିକରି କହିଲେ - ହେ ବେଡ଼ା ! ବସ୍ ଏଠି । ତୋ ମାଆ ତ କାମ କରୁଛି, ତୁ କାହିଁକି ବୁଲୁଛୁ ତା' ସାଥିରେ । ବାସ୍, ସେଇଠୁ ତା' ନାଆଁ ହୋଇଯାଇଛି ବେଡ଼ା ।

ବେଡ଼ା ବି ଶୁଣୁଥିଲା ମୋ କଥା । ସେ ମୁଣ୍ଡ ଟୁଙ୍ଗାରି ସମ୍ମତି ଜଣାଇଲା ତା' ନାଆଁର ଉତ୍ପତ୍ତି ସମ୍ବନ୍ଧରେ । ଆମ୍ଭ ରହଣିର ଦୁଇ ଚାରିଦିନ ପରେ ବେଡ଼ା ଗୋଟିଏ ପ୍ରସ୍ତାବ ଦେଲା - ସାନ ସାଆନ୍ତ, ଆଜି ପୂର୍ଣ୍ଣିମା ଜହ୍ନରାତି । ତମେ ଓ ତମର ସାଙ୍ଗ ଯଦି ପାଳର ପଲାରେ ରହନ୍ତ, ବିଲର ଜହ୍ନରାତି ସାଙ୍ଗକୁ ମୁଁ ତମମାନଙ୍କୁ ଏକ ନୂଆ ପ୍ରକାରର ଶିକାର ଖୁଆନ୍ତି ।

ଶିକାର ! ଆମେ ଉଭୟ ତାକୁ ବିସ୍ମୟ ହୋଇ ପଚାରିଲୁ । ହଁ - ମୁଁ ତୁମକୁ ହରିଣ କି କୁଟୁରା ଶିକାର ଖୋଇବି ବୋଲି କହୁନି ।

ଆମ ଗାଆଁ କ'ଣ ପାହାଡ଼ କି ଜଙ୍ଗଲ ଅଞ୍ଚଳ ହୋଇଛି ଯେ ତୁ ଆମକୁ ହରିଣ କି କୁଟୁରା ଶିକାର ଖୋଇବୁ ବୋଲି ଆମେ ଭାବିବୁ । ତେବେ ତୁ କି ଶିକାର ଖୋଇବୁ ଶୁଣୁ ?

ପକ୍ଷୀ, ପକ୍ଷୀ ଶିକାର ।

କ'ଣ କୁକୁଡ଼ା ?

ନା – କୁକୁଡ଼ା ନୁହଁ, ସେ ଅଲଗା ପକ୍ଷୀ । ତା'ର ପାକ ମଧ୍ୟ ଅଲଗା ହେବ । ତମେ ଥରେ ଖାଇଲେ ବଳେ ଜାଣିବ । ଆଗ ରହିବ କି ନାହିଁ ରାତିରେ ସେଠି ସେକଥା କୁହ ? ତମ ରହିବା କଥା ଜାଣିଲେ ମୁଁ ସେ ପକ୍ଷୀ ମାରିବାର ବ୍ୟବସ୍ଥା ସହ ତା'ର ସ୍ୱତନ୍ତ୍ର ପାକ ପାଇଁ ବ୍ୟବସ୍ଥା କରିବି ।

ମୁଁ ଓ ଅମରେନ୍ଦ୍ର ଏଥିରେ ଅରାଜି ହେବାର କିଛି ନ ଥିଲା । ଆମେ ହଁ ଭରିବାରୁ ବେଡ଼ା ଲାଗିଗଲା ତା'ର ପ୍ରସ୍ତୁତିରେ । ସେ ପ୍ରଥମେ ଯାଇ ଆମ ବାଡ଼ି ବାଉଁଶବୁଦାରୁ ଗୋଟେ ଢ଼ୋଲା ବାଉଁଶ କାଟିଲା । ତାକୁ ସାଇଜ୍ କରି ଗୋଟିଏ ପଟେ ଗଣ୍ଠି ରଖି ଆଉ ପଟର ଗଣ୍ଠିତଳୁ କାଟି ସାଇଜ୍ କଲା । ଆମ ଘରେ ଥିବା ପୁରୁଣା ଛିଣ୍ଡା ଜାଲକୁ ନେଲା । କଦଳୀପତ୍ର କାଟିଲା । ମସଲାରେ ପିଆଜ, ରସୁଣ, ଅଦା, ଘଣା ସୋରିଷ ତେଲ ଓ ଲଙ୍କା ନେଲା । ତା'ର ପ୍ରସ୍ତୁତି ଦେଖି ସେ କ'ଣ ଶିକାର କରିବ ଓ ଆମକୁ କ'ଣ ରାନ୍ଧି ଖୁଆଇବ ଆମେ ଜାଣିପାରୁ ନ ଥିଲେ ମଧ୍ୟ ଭାବୁଥିଲୁ ଯେ ସେ ଆମକୁ ଏକ ବିଶେଷ ଧରଣର ଖାଦ୍ୟ ଖୁଆଇବ । ତା'ର ଶିକାର ଅଭିଯାନର ସମସ୍ତ ପ୍ରସ୍ତୁତି ସରିଗଲା ପରେ ସେ ଆମକୁ କହିଲା – ମୁଁ ଚାଲିଲି ପାଳକୁ । ସଞ୍ଜ ପରେ ତମେ ପଳାଇ ଆସିବ ସାଆନ୍ତେ ।

ସଞ୍ଜ ଗଡୁ ଗଡୁ ଆମେ ବି ବେଡ଼ାର ନିର୍ଦ୍ଦେଶ ଅନୁଯାୟୀ ହାଜର ହୋଇଗଲୁ ଯାଇ ପାଳରେ । ତୋଫା ଜହ୍ନ ରାତି ସାଙ୍ଗକୁ ଗ୍ରୀଷ୍ମ ସନ୍ଧ୍ୟାର ମତୁଆଲା ପବନ ଦେହରେ ଚନ୍ଦନ ଲେପିବା ପରି ଲାଗୁଥାଏ । ଖୁବ୍ ପରିଷ୍କାର ଭାବେ ପଲ୍ଲା ଭିତର ଓ ତା'ର ବାହାର ଅଗଣା ଲିପା ଯାଇଥାଏ ଗୋବରରେ । ଯେହେତୁ ବେଡ଼ା ପାଇଁ ଆମେ ଦୁଇଜଣ ଥିଲୁ ମହାମାନ୍ୟ ଅତିଥି, ଆମମାନଙ୍କର ଆରାମ ପାଇଁ ସେ ଘରୁ ନେଇଯାଇଥିଲା ଦୁଇଟି ଖଟିଆ । ଆମେ ଖଟିଆ ଉପରେ ଗଡ଼ି ପଡ଼ି ଚାହିଁଲୁ ଆକାଶ ଆଡ଼େ । ଆକାଶରେ ବିଞ୍ଚି ହୋଇଥିଲେ ତାରା । ପବନରେ ଭାସି ଆସୁଥିଲା ମୃଦୁ ମୃଦୁ ମହକ । ଏମିତି ଏକ ପରିବେଶରେ ଭାବବିହ୍ୱଳ ହୋଇଯାଇ ଅମରେନ୍ଦ୍ର କହିଲା – କେଉଁ ସହରୀ ଲୋକର ଭାଗ୍ୟରେ ଜୁଟିଥିବ ଏମିତି ଏକ ପରିବେଶ ନା ଏମିତି ଏକ ମୁହୂର୍ତ୍ତ । ସେ ଦୃଷ୍ଟିରୁ ମୁଁ ଆଜି ନିଜକୁ ଭାଗ୍ୟବାନ୍ ମନେ କରୁଛି ।

କ'ଣ ଏ ପରିବେଶରେ କବି ହେବାକୁ ମନ ଡାକିଲାଣି କି ? ସେ କବି ହେବା କଥା ପଛକୁ ରଖ – ଶିକାର ଖୋଇବ କହି ବେଡ଼ା କୁଆଡ଼େ ଗଲାଣି ଦେଖ ।

କୁଆଡ଼େ ଆଉ ଯାଇଥିବ – ଶିକାର ସନ୍ଧାନରେ ଥିବ । ଆମ ପାଟିରୁ କଥା ସରିଛି କି ନାହିଁ ବେଡ଼ା ଆସି ହାଜର ହୋଇଗଲା । ତା'ମୁହଁରେ ଥିଲା ଏକ ତୃପ୍ତିର ହସ । ତାକୁ ଦେଖି ଆମେ ପଚାରିଲୁ, କ'ଣ ଶିକାର ମିଳିଲା ?

ହାତରେ ଝୁଲାଇଥିବା ଏକ ମୁଣିରୁ ଦେଖାଇ ବେଡ଼ା କହିଲା – ' ବେଡ଼ା କହିଥିଲା ତମମାନଙ୍କୁ ଏକ ନୂଆ ଜିନିଷ ଖୋଇବ । ସେ ଖୋଜିବ, ମିଳିବ ନାହିଁ କେମିତି ?'

ସେ ମୁଣା ଭିତରେ କ'ଣ ବୋଲି ଆମେ ତାକୁ ଆଗ୍ରହରେ ପଚାରିଲୁ ।

ଧୀରେ କରି ମୁଣା ଭିତରେ ହାତ ପୂରାଇ ସେ ବାହାର କଲା ଗୋଟେ ଚଢ଼େଇ । ଚଢ଼େଇଟି ଚିଁ-ଚିଁ କରୁଥିଲା ।

ଆରେ ଏଇଟା କି ଚଢ଼େଇ ତୁ ଆମକୁ ଖୋଇବୁ ? ଘିଘିଡ଼ି....ଘିଘିଡ଼ି ଚଢ଼େଇ । ଥରେ ଯାକୁ ଖାଇଲେ ତମେ ଜୀବନସାରା ମନେ ରଖିବ ଏ ବେଡ଼ାକୁ । ତମେ ବସ, ମୁଁ ଏହାକୁ ପ୍ରସ୍ତୁତ କରେ ।

ଗୋଟି ଗୋଟି କରି କୋଡ଼ିଏ ପଚିଶିଟି ଚଢ଼େଇଙ୍କୁ ଡ୍ରେସିଂ କଲା । ତା'ଭିତରେ ବାଟି କରି ଆଣିଥିବା ମସଲା ଦେଇ ତାକୁ ପୂରାଇଲା ଢ଼ୋଲା ବାଉଁଶନଳା ଭିତରେ । ଚଢ଼େଇଙ୍କୁ ଭର୍ତ୍ତି କରିସାରି ତେଲ ଢ଼ାଳିଲା ନଳୀ ଭିତରେ । ତେଲ ଦେଇସାରି କଦଳୀ ପତ୍ରରେ ନଳୀର ମୁହଁକୁ ବନ୍ଦ କରି କଦଳୀ ପଟୁଆରେ ବାନ୍ଧିଲା । ଗୋଟି ଗୋଟି କରି ପାଞ୍ଚଟି ନଳୀ ତିଆରି କରି ସାରି କାଠରେ ନିଆଁ ଲାଗାଇଲା । ନିଆଁ ଜଳିବା ପରେ ବାଉଁଶନଳୀ ସବୁ ତା' ଭିତରେ ଥୋଇଲା । ଆମେ କେବଳ କୌତୂହଳୀ ହୋଇ ଦେଖୁଥିଲୁ ବେଡ଼ାକୁ ଓ ତା'ର ରୋଷେଇ ପ୍ରଣାଳୀକୁ ।

ଦିକି ଦିକି ରଡ଼ ନିଆଁରେ ବାଉଁଶନଳୀଗୁଡ଼ିକୁ ଏପଟ ସେପଟ କରି ଖୁବ୍ ଯତ୍ନରେ ସେକୁଥାଏ ସେ । ଭିତରେ ଥିବା ତେଲ ବାଉଁଶନଳୀ ଭେଦି ଉପରକୁ ଆସି ଖୁବ୍ ତେଲାନ୍ତିଆ ଦେଖାଯାଉଥିଲା ।

ରଡ଼ ନିଆଁରୁ ନଳୀଗୁଡ଼ିକ କାଢ଼ି ଯତ୍ନରେ ରଖିସାରି ରୁଟି ସେକିବା ଆରମ୍ଭ କଲା । ତିନିତିନି ପଟ ରୁଟି କଦଳୀପତ୍ରରେ ରଖିଦେଇ ନଳୀଟିଏକୁ ରଖିଦେଲା ପାଖରେ । ଆମ ଆଡ଼କୁ ଆଗ୍ରହ ସହକାରେ ଚାହିଁ କହିଲା – ଏବେ ଆରମ୍ଭ ହେଉ ।

ଆମେ ଯେମିତି ଅପେକ୍ଷା କରିଥିଲୁ ତା' ଆଦେଶକୁ । ସେ କହିବା କ୍ଷଣି ବସିଗଲୁ ପତ୍ର ପାଖରେ । ପତ୍ର ପାଖରେ ବସିଗଲୁ ସିନା ହେଲେ କେହି ଖୋଲୁ ନ ଥିଲୁ ଭାନୁମତୀ ପେଡ଼ି ପରି କଡ଼ରେ ରଖା ଯାଇଥିବା ନଳୀକୁ । ଆମର ମନୋଭାବ ବୁଝିପାରି ବେଡ଼ା ନଳୀକୁ ଖୋଲି ଦେଇ ଓଜାଡ଼ି ଦେଲା ପତ୍ର ଉପରେ । ମସଲାଯୁକ୍ତ ଏକ ମଧୁର ବାସ୍ନା ଖେଳାଇ ହୋଇଗଲା ଚାରିଆଡ଼େ । ଲୋଭ ସମ୍ଭାଳି ନ ପାରି ଆମେ ଗୋଟିଏ ଗୋଟିଏ ଉଠାଇ ଖାଇଲୁ । କି ଅପୂର୍ବ ସ୍ୱାଦ ! ଜୀବନରେ ସେ ପର୍ଯ୍ୟନ୍ତ ଖାଇଥିବା ସ୍ୱାଦିଷ୍ଟ ବ୍ୟଞ୍ଜନ ମଧ୍ୟରୁ ତାହା ଥିଲା ଅନ୍ୟତମ । ଏପରି ଏକ ଖାଦ୍ୟ ଆମକୁ ଖୁଆଇଥିବାରୁ ଆମେ ସ୍ୱତଃ କୃତଜ୍ଞ ହୋଇପଡ଼ିଥିଲୁ ବେଡ଼ାର ରୋଷେଇ ନିକଟରେ । ତା'ର ସେ ବ୍ୟଞ୍ଜନ ପାଇଁ ବିଲରେ ଆମର ରାତ୍ରି ଯାପନ ସଫଳ ହୋଇଥିଲା ବୋଲି କହିବାରେ ଆମର ସାମନ୍ୟ କୁଣ୍ଠା ନଥିଲା ।

ଆମର ଗାଆଁରେ ରହଣୀ ଦିନତକ ଅମରେନ୍ଦ୍ର ମୋ କ୍ୟାମେରାରେ ଭରିଥିବା ତା' ଫଟୋ ରିଲ୍‌ଟିରେ ଉଠାଇ ଚାଲିଥିଲା ତା' ରୁଚି ମୁତାବକ ଫଟୋ । ଗାଆଁର ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ, ଗୋଠ ଫେରନ୍ତା ଗାଈପଲ, ପୋଖରୀ ତୁଠରେ ଗାଧୁଆ ଦୃଶ୍ୟ, ନଈର ମାଛଧରା ଓ ଆମ ସମସ୍ତଙ୍କର ଗ୍ରୁପ୍ ଫଟୋ । ତା' ଫଟୋ ଉଠାର ସଉକ ଓ କାର୍ଯ୍ୟରେ ଓତପ୍ରୋତ ଭାବେ ସାମିଲ୍ ଥିଲା ବେଡ଼ା । ମୁଁ ଥରେ ଅମରେନ୍ଦ୍ରକୁ ପଚାରିଲି, ତୋ ଫଟୋ ଗ୍ୟାଲେରୀ ପାଇଁ ଫଟୋ ଉଠା ସରିଲା ତ ? ସେ କହିଲା ଫଟୋ ଉଠା ତ ସରି ନାହିଁ ହେଲେ ରିଲ୍ ସରିଗଲାଣି । ଆଉ ମାତ୍ର ଗୋଟିଏ ଫଟୋ ଉଠାଯାଇପାରିବ, ହେଲେ ସେ ଗୋଟିକୁ ମୁଁ ସାଇତି ରଖିଛି ଗୋଟେ ବିଶେଷ ଫଟୋ ପାଇଁ ।

ବିଶେଷ ଫଟୋ ! କ'ଣ ସେଇଟା ?

ବଳେ ଫଟୋ ଉଠାହୋଇ ଧୁଆ ହେଲେ ତୁ ଦେଖିବୁନି କି !

ତଥାପି ଟିକେ ଆଗରୁ କହିଥା ।

ନା- ଆଗରୁ କହିଦେଲେ ମୁଁ ତୋତେ ଯେଉଁ ସରପ୍ରାଇଜ୍ ଦେବି ବୋଲି ଭାବିଛି, ତାହା ହୋଇପାରିବ ନାହିଁ ।

ହଉ, ତୁ କ'ଣ ସରପ୍ରାଇଜ୍ ଦେବୁ ମୁଁ ଦେଖିବାକୁ ଅପେକ୍ଷା କଲି ।

ଦିନେ ସକାଳୁ ମୁଁ ଓ ଅମରେନ୍ଦ୍ର ଆମ ବାରଣ୍ଡାରେ ବସିଛୁ, ବେଡ଼ା ଆସି ଠିଆ ହେଲା ବାରଣ୍ଡା ତଳେ । ତା' କିଛି କହିବା କହିବା ମନୋଭାବକୁ ଲକ୍ଷ୍ୟକରି ମୁଁ ପଚାରିଲି – ଆଜି କ'ଣ କିଛି ବିଶେଷ ଆୟୋଜନ କରିବାକୁ ଅଛି କି ?

ଯାହା କହିବେ, ତାହା କରିଦେବି । କହୁ ନାହାନ୍ତି କ'ଣ ଖାଇବେ ବୋଲି ?

ନାଇଁ - ନାଇଁ, ମୁଁ ଜାଣେ ତୁ ପାରିବୁ ବୋଲି । ଆଜି ଆଉ କିଛି ଖାଇବା ପିଇବାରେ ମନ ନାହିଁ ।

ମୋର ଗୋଟେ ଗୁହାରି ଥିଲା ବାବୁ !

ଗୁହାରି ! କ'ଣ କହୁନୁ ?

କହିଲେ ରଖିବେ ତ ସାଆନ୍ତ ?

ଆରେ, କ'ଣ କହିବାର ଅଛି କହ ?

କ'ଣ କି - ମୋ ବୋଉର ଗୋଟେ ଫଟୋ ଉଠାଇ ଦିଅନ୍ତିନି ତମ କ୍ୟାମେରାରେ । ସବୁବେଳେ ବୋଉର ବାଧିକା ଲାଗି ରହିଛି, କିଏ ଜାଣେ କେତେବେଳେ କ'ଣ ଘଟିବ । ତା'ର ଫଟୋଟି ଥିଲେ ଅନ୍ତତଃ ତା' ଅନ୍ତେ ତାକୁ ଦେଖିପାରିବି ।

ମୁଁ ଚାହିଁଲି ଅମରେନ୍ଦ୍ର ଆଡ଼େ । ମୋ ମନୋଭାବକୁ ବୁଝିପାରି ଅମରେନ୍ଦ୍ର ଆଙ୍ଗୁଳିରେ ଇସାରା ଦେଲା, ଆଉ ମାତ୍ର ଗୋଟେ ଫଟୋ ପାଇଁ ରିଲ୍ ଅଛି । ମୁଁ ତାକୁ ଗୋଟେ ବିଶେଷ ଫଟୋ ପାଇଁ ରଖିଛି । ଯଦିଓ ମୁଁ ବୁଝି ପାରିଥିଲି ଅମରେନ୍ଦ୍ରର ମନୋଭାବ, ତଥାପି ବେଡ଼ାକୁ ଦୁଃଖିତ ନ କରିବା ପାଇଁ କହିଲି - ହଉ, ଦେଖିବା ।

ଗୋଟିଏ କୃତକୃତ୍ୟ ଭାବ ନେଇ ବେଡ଼ା ଚାଲିଗଲା । ମୁଁ ଅମରେନ୍ଦ୍ରକୁ କହିଲି- ବେଡ଼ାର ଆଗ୍ରହକୁ ଭାଙ୍ଗିଦେବାଟା ଆମର ଠିକ୍ ହେବ ନାହିଁ । ସେଇ ଶେଷ ରିଲ୍‌ଟିରେ ତା' ମାଆର ଗୋଟେ ଫଟୋ ଉଠାଇ ଦେ' ।

ମୋର ପ୍ରସ୍ତାବ ଶୁଣି ଚୁପ୍ ରହିଲା ଅମରେନ୍ଦ୍ର । ସେ ବୋଧେ ତୁଳନା କରୁଥିଲା ସେ ଚାହୁଁଥିବା ବିଶେଷ ଫଟୋ ଓ ବେଡ଼ାର ମାଆର ଫଟୋ ଭିତରେ । କିଛି ସମୟ ନୀରବ ରହି କହିଲା - କ୍ୟାମେରାରେ କିପରି ଫଟୋ ଉଠେ ସେ ବିଷୟରେ ବେଡ଼ା କ'ଣ କିଛି ଜାଣେ ?

ସେ କ'ଣ ଜାଣିଛି ଫଟୋ ଉଠା ବିଷୟରେ, କେବଳ ଦେଖିଦେଖି ଜାଣୁଛି ଯେ କ୍ୟାମେରାରେ ଫଟୋ ଉଠାଯାଏ ବୋଲି ।

ତା'ହେଲେ ଗୋଟେ କାମ କରାଯାଇପାରେ । ଆମେ ଫଟୋ ଉଠାର ସମସ୍ତ ପ୍ରସ୍ତୁତି କରିବା, ମାତ୍ର ଫଟୋ ଉଠାହେବା ବେଳକୁ କେବଳ ଫ୍ଲାଶ୍ ଲାଇଟାକୁ ଝକ୍ କରିଦେବା । ବେଡ଼ା ଜାଣିବ ତା' ବୋଉର ଫଟୋ ଉଠାଗଲା ବୋଲି । ଫଟୋ ଧୁଆ ହେବା ପାଇଁ କଟକରେ ଦିଆଯାଇଛି ବୋଲି ତାକୁ ଦୁଇ ଚାରିଥର କହିସାରିବା ପରେ

ସତରେ ସେ କ'ଣ ଆଉ ମନରେ ରଖିଥିବ ତା' ବୋଉର ଫଟୋ କଥା। ସେ ଭୁଲିଯିବ, ଆମେ ମଧ୍ୟ ଭୁଲିଯିବା।

ତୋର ସେହି ବିଶେଷ ଫଟୋଟି ପାଇଁ କ'ଣ ଏତେ ମୋହ ଯେ, ଆମର ଏତେ ସେବା କରୁଥିବା ଲୋକଟିକୁ ଏମିତି ଠକେଇ ଦେବାକୁ କହୁଛୁ?

ତୋତେ ଏକଥା କହିବାକୁ ମୋର ଦ୍ୱିଧା ନାହିଁ ଯେ - ମୁଁ ଯେଉଁ ବିଶେଷ ଫଟୋ କଥା କହୁଛି, ତାହା ହୁଏତ ମୋ ଜୀବନରେ ଏକ ବିଶେଷ ମାନ୍ୟତା ରଖିପାରେ। ତାହା ମୋର ଜୀବନ ଖୋଜିବାର ଫଟୋଗ୍ରାଫ୍ ମଧ୍ୟହୋଇପାରେ।

ହଉ, ତୁ ଯଦି ଭାବୁଛୁ ଏମିତି କଲେ ଠିକ୍ ହେବ ବୋଲି, ତେବେ କର। ତୋ'ର ସେହି କଥାକଥିତ ବିଶେଷ ଫଟୋଟି ପାଇଁ ସଂରକ୍ଷିତ ଥିବା ରିଲ୍‌ଟି ଉପରେ ମୁଁ ଆଉ ବେଡ଼ା ପାଇଁ ହକ୍ ଜୁଟାଇବି ନାହିଁ।

ତା'ହେଲେ ତୁ ବେଡ଼ାକୁ କହିଦେ - ସେ ତା' ମାଆକୁ ପ୍ରସ୍ତୁତ କରିବ, ଆମେ ଯିବା ତା' ଫଟୋ ଉଠାଇବା ପାଇଁ।

ବେଡ଼ା ଆମଠାରୁ ଖବର ପାଇଁ ତା' ମାଆକୁ ପ୍ରସ୍ତୁତ କଲା ଫଟୋ ଉଠାଇବା ପାଇଁ। କେଉଁ ପେଡ଼ିରେ ସାଇତା ହୋଇଥିବା ଗୋଟେ ଜରିଲଗା ଲାଲ୍ ଶାଢ଼ୀ, ଯାହା ସଂପୂର୍ଣ୍ଣ ଲୋଚା କୋଚା ହୋଇ ରହିଥିଲା ଗୋଟେ ଶୁଖିଲା କଦଳୀପତ୍ର ପରି। ତା' ସାଙ୍ଗକୁ ଗୋଟେ ବେଢ଼ଙ୍ଗିଆ ବ୍ଲାଉଜ୍, ଯାହାକୁ ଶାର୍ଟ କହିଲେ ମଧ୍ୟ ଚଳିବ, ତାକୁ ପିନ୍ଧାଇ ବସାଇଲା। ବ୍ୟାକ୍ ଗ୍ରାଉଣ୍ଡ୍‌ଟା ଟିକେ ଭଲ ଆସିବାକୁ ମୁଁ ପଛରେ ଗୋଟେ ସ୍କିନ୍ ଦେବାକୁ କହିବାରୁ ସଙ୍ଗେ ସଙ୍ଗେ ବେଡ଼ା ତା'ର ଚେକ୍ ଲୁଙ୍ଗିଟାକୁ ଗୋଟିଏ ରଶିରେ ବାନ୍ଧି ପକାଇଲା। ଆପାତତଃ ସମସ୍ତ ଆନୁଷଙ୍ଗିକ ପ୍ରସ୍ତୁତି ସରିବା ପରେ ବେଡ଼ା ତା' ବୋଉକୁ ବସାଇଲା ଗୋଟେ ଷ୍ଟୁଲ୍ ଉପରେ। ବସିବାକୁ ତାକୁ ଖୁବ୍ କଷ୍ଟ ହେଉଥିଲା ବୋଧେ, ହେଲେ ପୁଅର ବାଧ୍ୟରେ ବସିଲେ କିଛିକ୍ଷଣ। ବସିବା ଭିତରେ ପେଲୁଥାଏ ଦମା। ମୁଁ ତାଙ୍କୁ କହିଲି ଟିକିଏ ହସିବା ପାଇଁ। ସେ ତ ହସିପାରିଲେନି ଜମା, ମାତ୍ର ମୁହଁ ଓ ଓଠକୁ ଟିକେ ମାତ୍ର ହସିବା ପରି ବିସ୍ତାରିତ କଲେ। ବାସ୍ ମିଛିମିଛିକା ଫ୍ଲାସ୍ ଲାଇଟ୍ ଦେଇ ହୋଇଗଲା ଆମର ଫଟୋ ଉଠା।

ଗାଆଁରେ ଛୁଟି କଟାଇ ଆମେ ଦୁହେଁ ଫେରିଆସିଲୁ କଟକ। ଗାଆଁରୁ ଫେରିବାର ଅଳ୍ପଦିନ ପରେ ଖବର ପାଇଲି ବେଡ଼ାର ମାଆ ଚାଲିଗଲା ବୋଲି। ଖବରଟି ପାଇ ମୁଁ କିଛି ସମୟ ଗୁମ୍ ହୋଇ ଚିନ୍ତା କଲି - କିଛି ଭଲ ହେଲାନି, ବେଡ଼ା ଯେଉଁ ସ୍ମୃତିଟିକକ

ସାଇତି ରଖିବା ପାଇଁ ଆମକୁ ଅନୁରୋଧ କରିଥିଲା ତା' ବୋଉର ଫଟୋଟିଏ ଉଠାଇ ଦେବା ପାଇଁ, ଆମେ ତ ତାକୁ ଠକିଲୁ ଠକିଲୁ, ଶେଷରେ ତା' ବୋଉ ବି ତାକୁ ଠକି ଦେଇ ଚାଲିଗଲା । ସେହି ମୁହୂର୍ତ୍ତରେ ଅମରେନ୍ଦ୍ର ଉପରେ ମୋର ଖୁବ୍ ରାଗ ହେଲା - କି ଗୋଟାଏ ବିଶେଷ ଫଟୋ ପାଇଁ ଏତେ ସ୍ୱାର୍ଥପର ହୋଇ ଗୋଟେ ମିଛ ଖେଳ ଖେଳିଲା ବେଡ଼ା ସହ ? ଆଉ କ'ଣ ବେଡ଼ାକୁ ସୁଯୋଗ ମିଳିବ ତା' ମାଆର ଫଟୋ ଉଠାଇବା ପାଇଁ ? ଛି - ଆମର ଏତେ ସେବା କରିଥିବା ଲୋକଟି ପାଇଁ ମାତ୍ର ଗୋଟିଏ ରିଲ୍ ସାରିପାରିଲା ନାହିଁ ?

ମନଟା ମୋର ଆଦୌ ଭଲ ଲାଗୁ ନଥିଲା । ମୁଁ କୁଆଡ଼େ ନ ବାହାରି ହଷ୍ଟେଲ୍‌ରେ ମୋ ରୁମ୍‌ରେ ବସି ରହିଥିଲି । ସନ୍ଧ୍ୟାବେଳକୁ ଆସିଲା ଅମରେନ୍ଦ୍ର । ମୁଁ ତାକୁ କିଛି କହିବା ପୂର୍ବରୁ ସେ ଆଗ୍ରହରେ ବାହାର କଲା ଷ୍ଟୁଡ଼ିଓରୁ ଧୋଇ କରି ଆଣିଥିବା ଫଟୋସବୁକୁ । ମୁଁ ସେସବୁ ଫଟୋକୁ ଦେଖିବାରରେ ବିଶେଷ ଆଗ୍ରହ ପ୍ରକାଶ ନ କଲାରୁ ମୋତେ ପଚାରିଲା - କ'ଣ ହୋଇଛି କି ?

ନା - କିଛି ନୁହଁ । ଆଚ୍ଛା, ସବୁ ଫଟୋକୁ ତ ଦେଖାଇଲୁ ହେଲେ ତୋର ସେ ବିଶେଷ ଫଟୋଟି କାହିଁ ?

ଓଃ- ତୁ ସେଇଟା ଦେଖିବାକୁ ଚାହୁଁଛୁ ? ତେବେ ରହ ରହ କହି ନିଜ ଶାର୍ଟର ଦୁଇଟା ବଟନ୍ ଖୋଲି ବାହାର କଲା ଲଫାପାଟିଏ । ତା' ଭିତରୁ ବାହାର କଲା ସଯତ୍ନରେ ସାଇତା ଫଟୋଟି, । ଫଟୋଟି ମୋତେ ନ ଦେଖାଇ କେବଳ କହିଲା - ନିରବତାର ଭାଷାରେ ଯେ ଏତେ କଥା କୁହାଯାଇପାରେ, ଏ ଝିଅଟିକୁ ନ ଦେଖିଥିଲେ ମୁଁ ଜାଣି ପାରି ନଥାନ୍ତି । ଏତେ ଥର ସାକ୍ଷାତ୍ ପରେ ବି ପଦେ କଥା ନ କହି କେବଳ ଚାହାଣିରେ ମୋତେ କିମିଆ କରିଥିବା ସେ ଅନିନ୍ଦ୍ୟ ସୁନ୍ଦରୀକୁ ଜୀବନସାଥୀ ରୂପରେ ଯିଏ ପାଇବ, ସେ ନିଶ୍ଚୟ ପରମ ସୌଭାଗ୍ୟବାନ୍ ହେବ ।

ଦେଖା ତ ସେ ଫଟୋ - ତୁ ଯାହାକୁ ନେଇ ଏତେ ଭାବପ୍ରବଣ ଓ ସ୍ୱପ୍ନ ବିଳାସୀ ହୋଇଛୁ ।

ଦେଖାଇବି ତ ନିଶ୍ଚୟ, ହେଲେ ଦୁଃଖ ରହିଗଲା ଯେ ମୁଁ ଯେତେ ଚେଷ୍ଟା କରି ବି ତା'ର ନାଆଁ ଜାଣିପାରିଲି ନାହିଁ । ସବୁଥର ନାଆଁ ପଚାରିବା କ୍ଷଣି ସେ ମନଜିଣା ହସଟିଏ ହସିଦେଇ ବିଜୁଳି କନ୍ୟାପରି ଅନ୍ତର୍ଦ୍ଧାନ ହୋଇଯାଏ ।

ବହୁତ ଗୌରଚନ୍ଦ୍ରିକା ଦେଲୁଣି - ଦେଖା ତ ଫଟୋଟା ।

ଅମରେନ୍ଦ୍ର ଫଟୋଟି କାଢ଼ି ଦେଖାଉ ଦେଖାଉ ମୁଁ ନ ହସି ରହିପାରିଲି ନାହିଁ ।

ଆରେ ହସୁଛୁ କ'ଣ ?

ହସିବିନି କ'ଣ କାନ୍ଦିବି ? ତୁ ଏଇ ବିଶେଷ ଫଟୋଟି ଉଠାଇବା ପାଇଁ ଠକିଛୁ ନା ବେଢ଼ାର ସରଳତାକୁ ? ବେଢ଼ାକୁ ଠକିନୁ ତ ନିଜେ ଠକି ହୋଇଯାଇଛୁ । ନିରବ ସୁନ୍ଦରୀ ବୋଲି ତୁ ଯାହାକୁ କହୁଛୁ, ସେ ପ୍ରକୃତରେ ମୂକ ସୁନ୍ଦରୀ । କେବଳ ମୂକ ନୁହେଁ, ବଧୀରା ସୁନ୍ଦରୀ । ସେ ତୋ ପ୍ରଶ୍ନକୁ ଶୁଣିଥାଆନ୍ତା ବା କିପରି ଆଉ ଉତ୍ତର ଦେଇଥାଆନ୍ତା ବା କେମିତି ?

କ'ଣ ତୁ କହୁଛୁ ?

ମୁଁ ଯାହା କହୁଛି, ସତ କହୁଛି । ସେ ଝିଅଟି ମୂକ ଓ ବଧୀର ଜାଣିବା ପରେ ତୋ'ର ସ୍ୱପ୍ନଭଙ୍ଗ ହେଉଛି ନା ? ହଉ । ତୋ ସ୍ୱପ୍ନଭଙ୍ଗ ପାଇଁ ମୋର ଦୁଃଖ ନାହିଁ । ମାତ୍ର ବେଢ଼ାର ମାଆର ଫଟୋଟିଏ ରଖିବାର ଯେଉଁ ସ୍ୱପ୍ନ ଥିଲା, ତାକୁ ଭାଙ୍ଗି ଦେଇଥିବାରୁ ମୁଁ ଦୁଃଖ କରୁଛି । ଦୁଃଖ ଏଇଥି ପାଇଁ କରୁଛି ଯେ, ବେଢ଼ା ତା' ମାଆର ଫଟୋଟିଏ ଆଉ କେବେ ଉଠାଇପାରିବ ନାହିଁ । ଆମେ ଗାଆଁରୁ ଫେରିବା ପରେ ପରେ ବେଢ଼ାର ମାଆ ମରିଗଲା ।

ଗୋଟିଏ ସ୍ୱପ୍ନଭଙ୍ଗରୁ ଉତ୍ତୁରି ପାରି ନ ଥିବା ଅମରେନ୍ଦ୍ର ମୋ'ଠାରୁ ଏ ଖବରଟି ଶୁଣି କିଛି ସମୟ ନିର୍ବାକ୍ ହୋଇ ଯାଇଥିଲା । ପରବର୍ତ୍ତୀ ଯେତେ ସମୟ ସେ ମୋ ରୁମ୍‌ରେ ବସିଥିଲା କେବଳ ମୁହଁ ମାଡ଼ି ବସିରହିଥିଲା । ଗୋଟିଏ ଗଭୀର ଦୀର୍ଘଶ୍ୱାସ ପକାଇ ସେ ଉଠିଲା ଏବଂ ମୋତେ ଆଉ କିଛି ନ କହି ରୁମ୍‌ରୁ ବାହାରି ଚାଲିଗଲା । ମୁଁ ଜାଣିଲି ଯେ ସେ ଏକ ଅପରାଧର ଗ୍ଳାନି ନେଇଗଲା ବୋଲି ।

ଏହା ପରେ ମୁଁ ଯେତେ ଥାଇ ଗାଆଁକୁ ଯାଇଛି, ବେଢ଼ା ତା' ବୋଉର ଫଟୋଟି ମୋତେ ମାଗିଛି । ସବୁଥର ତାକୁ କିଛି ନା କିଛି ମିଛକଥା କହି ମୁଁ ଭୁଲାଇଛି । କେବେ କହେ ଫଟୋଟା ଅମରେନ୍ଦ୍ର ପାଖରେ ରହିଯାଇଛି, ସେ ଦେଲେ ନେଇଆସିବି । ଆଉ କେଉଁଥର କହିଛି ଫଟୋଟା ଅମରେନ୍ଦ୍ର ଦେଇ ଦେଇଛି, ହେଲେ ମୁଁ ଆଣିବାକୁ ଭୁଲି ଯାଇଛି । ଆରଥର ଘରକୁ ଆସିବା ବେଳକୁ ନିଶ୍ଚୟ ନେଇ କରି ଆସିବି । ନିଜର ସରଳ ଆବେଗ ନେଇ ବେଢ଼ା ମୋତେ ବିଶ୍ୱାସ କରିଯାଏ ଏବଂ ମୁଁ ମନେ ମନେ ଭାବେ, ଏମିତି କିଛିଥର ଫଟୋ ମାଗିବା ପରେ ବେଢ଼ା ଭୁଲିଯିବ ସେ

ଫଟୋ କଥା । ହେଲେ ନା ବେଡ଼ା ଭୁଲି ପାରୁଥିଲା ସେ ଫଟୋ କଥା ନା ମୁଁ ମୁକଳି ପାରୁଥିଲି ଆଉ ଏକ ମିଛ ବାହାନାରୁ ।

ସେଥର ମୁଁ ବହୁଦିନର ବ୍ୟବଧାନ ପରେ ଗାଆଁକୁ ଯାଇଥିଲି । ସବୁଥର ମୁଁ ପହଞ୍ଚିବା ପରେ ବେଡ଼ା ଯେମିତି ଭାବରେ ମୋ ପାଖରେ ପହଞ୍ଚି ଯାଇ ତା' ବୋଉର ଫଟୋ ମାଗେ, ଆଉ ସେମିତି ମାଗିଲା ନାହିଁ । ମୁଁ ମନେ ମନେ ଆଶ୍ୱସ୍ତ ହେଲି ଯେ, ଯାହା ହେଉ ବେଡ଼ା ଏଥର ଭୁଲିଯାଇଛି ତା' ବୋଉର ଫଟୋ କଥା । ମାତ୍ର ମୋ ଆଶ୍ୱସ୍ତ ହେବାର ଆୟୁଷ ଖୁବ୍ କ୍ଷଣସ୍ଥାୟୀ ହେଲା । ସେଦିନ ଅପରାହ୍ଣରେ ମୁଁ ବସିଛି ଘର ବାରଣ୍ଡାରେ । ବେଡ଼ା ବିଲରୁ ହଳ ନେଇ ଫେରିଲା । ବଳଦଙ୍କ କାନ୍ଧରୁ ଜୁଆଳି ଖୋଲି ଓରାରେ ରଖିଲା । ବଳଦଙ୍କୁ ଗୋଠରେ ବାନ୍ଧି ଦେଇ ମୁଣ୍ଡରୁ ଠେକା ଖୋଲିଲା । ଗାମୁଛାରେ ମୁହଁ ପୋଛି ପୋଛି ଆସି ମୋ ପାଖରେ ଠିଆ ହେଲା । କାଳେ ବେଡାର ମନେ ପଡ଼ିଯିବ ତା' ବୋଉର ଫଟୋ କଥା, ତେଣୁ ସେ ଦିଗରୁ ତା' ଧ୍ୟାନ ହଟାଇବା ପାଇଁ ମୁଁ ତାକୁ ପଚାରିଲି – ଆଉ ଚାଷବାସ କେମିତି ଚାଲିଛି ?

ବେଡ଼ା ମୋ ପ୍ରଶ୍ନର ଉତ୍ତର ଦେବା ପାଇଁ କୌଣସି ଆଗ୍ରହ ନ ଦେଖାଇ ମୋତେ ପଚାରିଲା – ବାବୁ ! ସତରେ କ'ଣ ମୋ ବୋଉର ଫଟୋ ତମେ ଉଠାଉଥିଲ ?

ସେ ପ୍ରଶ୍ନଟିର ଉତ୍ତର 'ହଁ' କି 'ନା' କୌଣସିଟିରେ ଦେବାର ଶକ୍ତି ମୋର ନ ଥିଲା । ତଥାପି ପୁନଃ ମିଥ୍ୟାର ସାହାରା ନେଇ ମୁଁ କହିଲି – ସବୁଥର ପରି ଏଥର ବି ଭୁଲିଗଲି ଫଟୋଟି ଆଣିବାକୁ ।

ନାଇଁ ବାବୁ, କେବଳ ଏଥର ନୁହଁ, ତମେ ସବୁଥର ଭୁଲିଯିବ ସେ ଫଟୋଟି ଆଣିବାକୁ । ମୁଁ ଜାଣିସାରିଲିଣି ତମେ ମୋତେ ଠକି ଦେଇ ମିଛିମିଛିକା ଫଟୋ ଉଠାଇଥିଲ । ମୁଁ ଏବେ ମୋ ବୋଉର ଫଟୋଟିଏ ମୋ ପାଖରେ ରଖିପାରିଲି ନାହିଁ ବୋଲି ଦୁଃଖ କରୁନି । କାରଣ ତାକୁ ତ ମୋ ଛାତି ଭିତରେ ସାଇତି ରଖିଛି । ଯଦି ହନୁମାନଙ୍କ ପରି ଛାତି ଚିରି ଦେଖାଇପାରନ୍ତି, ତମକୁ ଦେଖାଇ ଦିଅନ୍ତି ତା' ଫଟୋ । ତା'ର କାଗଜର ଫଟୋଟିଏ ପାଇଁ ମୋ ଦୁଃଖ ନାହିଁ । ଦୁଃଖ କେବଳ ତମେ ମୋତେ ଏତେ ଦିନ ହେଲା ମିଛ କହି ଭଣ୍ଡୁଛ ବୋଲି । ମୁଁ ମୋ ନାଆଁ ବେଡ଼ା ସତ, ହେଲେ ଏତେ ବେଡ଼ା ନୁହଁ ଯେ ମିଛ ଓ ସତକୁ ପରଖି ପାରିବିନି ।

ମୁଁ ବେଡ଼ା ମୁହଁକୁ ବିସ୍ମୟ ହୋଇ ଚାହିଁଲା ବେଳକୁ ବେଡ଼ା ଉଠି ଚାଲିଗଲା । ସେ ଚାଲିଗଲାନି ତ ବରଂ ଖୋଲି ଦେଇଗଲା ମୋ ଅଭିନୟର ମୁଖା । ଆମ ଗାଆଁ

ଯାତ୍ରାରେ ସୀତା ଭୂମିକାରେ ଅଭିନୟ କରୁଥିବା ଯୁବକଟିର ପରଚୂଳା ଯେମିତି ଖସି ପଡ଼ିଥିଲା ରାବଣ ଭିଡ଼ିବା ବେଳେ ଠିକ୍ ସେମିତି ଖସି ପଡ଼ିଥିଲା ମୋ ମୁଖାଟି ବେଡ଼ା ପାଖରେ । ମୁଁ ଖୁବ୍ କାକୁସ୍ଥ ହୋଇ ଚାହିଁଥିଲି ବେଡ଼ାର ଫେରିଯିବାର ଦୃପ୍ତ ଚାଲିକୁ । ମୋର ତାକୁ ଆଉ କିଛି କହିବାର ନଥିଲା । ଅଥଚ ମୋତେ ଲାଗୁଥିଲା ମୋର ଏ ନୀରବତା ମିଛର ବିକଳ୍ପ ନୁହେଁ, ବରଂ ସର୍ବ ସମ୍ମୁଖରେ ପରଚୂଳା ଖସିପଡ଼ିଥିବା ସୀତାରୂପୀ ଯୁବକର କାକୁସ୍ଥ ପଣ । ମୁଁ ଜାଣେ ଏହାର ପରବର୍ତ୍ତୀ ଦୃଶ୍ୟ କେବେ ଅଭିନୀତ ହୋଇପାରିବନି ମୋ ଜୀବନରେ, କାରଣ ବେଡ଼ାର ମାଆ ଏବେ ସ୍ୱର୍ଗପୁରରେ । ମୁଁ ଏବେ ସେଇ ମିଛଟିର ବେତାଳକୁ ବୋହି ଚାଲିବି ସାରାଜୀବନ ଯିଏ ମୋତେ ବାରମ୍ବାର ପଚାରି ଚାଲିଥିବ ସେହି ଏକା ପ୍ରଶ୍ନ – ବାବୁ ! ସତରେ କ'ଣ ତମେ ମୋ ବୋଉର ଫଟୋ ଉଠାଇଥିଲ ?



# ମାଙ୍କଡ଼ାୟଣ

ଘାଟିଟି ଯେଉଁଠି ସରିଛି ଠିକ୍ ତାଆରି ତଳେ ହିଁ ପାତ୍ରପୁଟ ଗାଆଁ । ଗାଆଁର ତିନିପଟକୁ ବେଢ଼ି ବହିଯାଉଛି ଝରଣାଟିଏ । ପାହାଡ଼ି ଝରଣା ଅଣଓସାରିଆ ଅଥଚ ଗଭୀର । ଆଠକାଳି ବାରମାସ ଶୁଖେନା ଝରଣା ପାଣି । ପିଇବା, ଗାଧୋଇବା ଠାରୁ ଆରମ୍ଭ କରି ଖରାଟିଆ ପନିପରିବା ଚାଷଯାଏ ସବୁ କାମ ସେଇ ଝରଣା ପାଣିରେ, ଝରଣା ତ ନୁହେଁ- ଗାଆଁର ଜୀବନରେଖା ।

ଗାଆଁର ଅଧେ ଲୋକ ମାଳୀ ଓ ଅଧେଲୋକ ଆଦିବାସୀ । ମାଳି ଲୋକମାନେ ଝରଣା କୂଳର ସମତଳ ଜମିରେ ଧାନ ଓ ପନିପରିବା ଚାଷ କରନ୍ତି ତ ଆଦିବାସୀମାନେ ପାହାଡ଼ି ଢ଼ାଲୁ ଜମିରେ ମାଣ୍ଡିଆ, ମକା, ବାଜରା ଓ ଢ଼ିପା ଜମିରେ ସୁଆଁ, କାନ୍ଦୁଲ, ଅଳସୀ ଇତ୍ୟାଦି । ବର୍ଷକ ବାରମାସ ଲାଗିଥାଏ ଚାଷ । ଘାଟି ଉପରୁ ଚାହିଁଲେ ଗାଆଁଟି ଦିଶେ ଶାଗୁଆ ଚଦରଘେରା ଉପତ୍ୟକାଟିଏ ପରି ।

ପୁରୁଷ ଓ ସ୍ତ୍ରୀ ଲୋକଙ୍କ ଠାରୁ ଆରମ୍ଭ କରି ପିଲାଛୁଆ ଯାଏ ସବୁ ଖଟନ୍ତି ବିଲରେ, ବାଡ଼ି ବଗିଚାରେ । ସଭିଏଁ ଯାଆନ୍ତି ଚାଷର ଫସଲ ଓ ଜଙ୍ଗଲଜାତ ଦ୍ରବ୍ୟ ବିକିବାକୁ ଜୟପୁର ବଜାର । ଫେରିବା ସମୟରେ ଆଣନ୍ତି ତେଲ, ଲୁଣ ମସଲା ମସୀଲି । ମାଟି ସହ ମାଟି ହୋଇ ଖଟନ୍ତି ସଭିଏଁ । ପ୍ରାୟତଃ କାହାରି ଘରେ ଖାଇବାର ଅଭାବ ନଥାଏ । ତହିଁକୁ ପନିପରିବା ଓ ଜଙ୍ଗଲଜାତ ଦ୍ରବ୍ୟ ବିକି ଯେଉଁ ପଇସା ମିଳେ ସେଥିକୁ କପଡ଼ା ଲତା, ପୂଜାପର୍ବ, ବାହାସାହା ଭଲମନ୍ଦ ଖର୍ଚ୍ଚ ମେଣ୍ଟିଯାଏ ସଭିଙ୍କର । ମୋଟାମୋଟି ଗାଆଁଟି ଥିଲା ଭୋକର ଭୂଲୋକରୁ ବାହାରେ ଏକ ସମ୍ପନ୍ନ ଓ ସୁଖୀ ଗାଆଁ ।

ଯେହେତୁ ପିଲାଠାରୁ ବୁଢ଼ାଯାଏ ସମସ୍ତେ ମାତିଥାଆନ୍ତି ବିଲବାଡ଼ି କାମରେ ପାଠପଢ଼ା ଉପରେ କାହାର ନଥିଲା ଗୁରୁତ୍ୱ । ମାମୁଁଘର ପ୍ରଭାବରେ ପ୍ରଭାବିତ ହୋଇ

ମାଳୀଘର ପିଲାଟିଏ ଦି'ଅକ୍ଷର ପାଠ ପଢ଼ିଲା ମାମୁଁଘରେ ରହି । ମାଟ୍ରିକ୍ ବି ପାଶ୍ କରିଗଲା । ତା'ର ମାଟ୍ରିକ୍ ପାଶ୍ କରିବାଟା ତାଙ୍କ ଗାଆଁ ପାଇଁ ଏତେ ଖୁସିଖବର ଆଣି ଦେଇଥିଲା ଯେ, ଏହା ସାରା ଗାଆଁ ପାଇଁ ଏକ ସାର୍ବଜନୀନ ଉତ୍ସବରେ ପରିଣତ ହୋଇଗଲା । ଏହା ଏକ ବିଶେଷ ଖବର ହୋଇ ଛପାଗଲା ବି ଖବର କାଗଜରେ । ଖବରଟିର ପ୍ରଭାବ ପଡ଼ିଲା ପ୍ରଶାସନ ଉପରେ । ଆଖି ଖୋଲିଲା ଯେ ସ୍ୱାଧୀନତାର ଏତେବର୍ଷ ପରେ ବି ଶିକ୍ଷାର ବିକାଶ ଘଟିନି ବୋଲି ସେ ଅଞ୍ଚଳରେ । ବିରୋଧୀଏ ଏ ଖବରକୁ ନେଇ ଏକ ଇସ୍ୟୁ କରିବା ପୂର୍ବରୁ ସେ ଘାଟି ଉପରେ ଖୋଲାଗଲା ଏକ ସ୍କୁଲ ଏବଂ ନିଯୁକ୍ତି ଦିଆଗଲା ପାତ୍ରପୁରର ପ୍ରଥମ ମାଟ୍ରିକ୍ୟୁଲେଟ୍ ନରହରି ମାଝୀକୁ ।

ଖୁସିରେ ନରହରିର ଗୋଡ଼ ଲାଗିଲାନି ତଳେ । ପାଠପଢ଼ା ସରୁ ସରୁ ଚାକିରି । ତାହା ପୁଣି ନିଜ ଗାଆଁ ପାଖରେ । ପଣ କଲା ଗାଆଁର ସବୁ ପିଲାଙ୍କୁ ସ୍କୁଲ ଯିବାକୁ ମନାଇବ ଏବଂ ସେମାନଙ୍କୁ ଶିକ୍ଷିତ କରିବ ।

ଘାଟି ଉପରେ ସ୍କୁଲ । ଉଭୟପଟ ଗାଆଁର ସୁବିଧା ପାଇଁ ଠିକ୍ ମଝିଆମଝି ଘାଟି ଉପରେ ସ୍କୁଲ କରାଗଲା । ମାତ୍ର ଦୁଇ କିଲୋମିଟର ଘାଟି । ପିଲାଦିନୁ ସେ ଘାଟି ଉପରେ ଯାଇ ଯାଇ ଏତେ ଅଭ୍ୟସ୍ତ ଥିଲା ଯେ ସେ ଦୁଇ କିଲୋମିଟର ତାକୁ ଲାଗୁଥିଲା ଦୁଇ ପାହୁଣ୍ଡ ରାସ୍ତାପରି । ଗାଆଁର ସାନ ସାନ ପିଲାଏ ବି ଖେଳି ଖେଳି ପହଂଚି ଯାଉଥିଲେ ସ୍କୁଲରେ ।

ସ୍କୁଲରେ ଥିଲା ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା । ତାହାହିଁ ବେଶି ଆକୃଷ୍ଟ ଓ ପ୍ରୋତ୍ସାହିତ କରୁଥିଲା ପିଲାଙ୍କୁ ସ୍କୁଲକୁ ଆସିବାକୁ । ନରହରି ଚିନ୍ତା କଲା ଗାଆଁରେ ତ ପରିବା ଯାହାକୁ ଯେତେ, ଦୁଇଦିନ ଅଣ୍ଡାଖିଆ ବାରି ଛାଡ଼ିଦେଲେ ସୋୟାବଡ଼ିର ତରକାରି ନଦେଇ ପରିବା ତରକାରୀ ଦେବ । ଲୋକେ ବି ଖୁସିରେ ଦେଲେ ପରିବା ପିଲାଙ୍କ ପାଇଁ ।

ଦିନେ ସାଇକେଲରେ ପରିବା ବ୍ୟାଗ୍ ଓହଳାଇ ସ୍କୁଲକୁ ଯିବା ସମୟରେ ଘାଟି ଉପରେ ପରିସ୍ରା ଲାଗିଲା ନରହରିକୁ । ସେ ସାଇକେଲ ଷ୍ଟାଣ୍ଡ୍ ମାରି ପରିସ୍ରା କରୁଛି ଏପଟେ ଦୁଇଟି ମାଙ୍କଡ଼ ତା' ପରିବା ବ୍ୟାଗରୁ କଂଚା କଦଳୀ ଫେଣାଏ ଟେକିନେଲେ । ବିଶେଷ ବ୍ୟତିବ୍ୟସ୍ତ ନ ହୋଇ ସେମାନଙ୍କ ଖାଇବାର ଖୁସିକୁ ଉପଭୋଗ କଲା ନରହରି । ଗଛ ଡାଳରେ ବସିଥିବା ଆଉ କିଛି ପାତିମାଙ୍କଡ଼ କାଳେ ସେମାନଙ୍କୁ କିଛି ମିଳିଯିବ ଭାବି ବଡ଼ ସନ୍ତର୍ପଣରେ ଗଛ ଡାଳରୁ ଓହ୍ଲାଇ ପଇଁତରା ମାରିଲେ ତରା ତରା

ହୋଇ । ବ୍ୟାଗ୍‌ରୁ ଆଉ ଗୋଟେ କଦଳୀ ଫେଣା କାଢ଼ି ଗୋଟି ଗୋଟି କରି ସେମାନଙ୍କ ପାଖକୁ ଫିଙ୍ଗିଲା ସେ । ଓହୋ କି ଖୁସି ସେମାନଙ୍କର । ସେମାନଙ୍କ ଖୁସିକୁ ମନଭରି ଉପଭୋଗ କଲା ନରହରି ।

ପରଦିନ ସ୍କୁଲ ପାଇଁ ପରିବା ଆଣିବା ବେଳେ ବିକ୍ରିଯୋଗ୍ୟ ନଥିବା କିଛି ପରିବା ଯାହାକୁ ତା' ଗାଆଁ ଲୋକେ ଫିଙ୍ଗି ଦିଅନ୍ତି ତାକୁ ଆଉ ଗୋଟେ ବ୍ୟାଗ୍‌ରେ ପୂରାଇଲା । ଘାଟିର ଠିକ୍ ସେହି ସ୍ଥାନରେ ପହଞ୍ଚି ସାଇକେଲରେ ଷ୍ଟାଣ୍ଡ ମାରି ଏପଟ ସେପଟ ଚାହିଁଲା । ବ୍ୟାଗ୍‌ରୁ ପରିବା କାଢ଼ି ଥୋଇଲା ଗୋଟି ଗୋଟି କରି । କୁଆଡ଼େ ଥିଲେ କେଜାଣି ମାଡ଼ି ଆସିଲେ ଚାରିପାଞ୍ଚଟା ମାଙ୍କଡ଼ । ହଠାତ୍ ପରିବା ତକ ନ ଉଠାଇ ସେମାନେ ପରଖିଲେ ତାଙ୍କୁ ଧରିବା ପାଇଁ ଏଇଟା ଷଡ଼ଯନ୍ତ୍ର ନୁହଁ ତ । ନିଅ, ନିଅ, ଖାଅ-ଖାଅ- କହୁଥାଏ ନରହରି । କିଛି ସମୟ ପରେ ସେମାନେ ବିଶ୍ୱାସ କରିଗଲେ ଏବଂ ଛଡ଼ାମଡ଼ା ହୋଇ ଥୁଆ ହୋଇଥିବା ପରିବାତକ ଧରି ଚମ୍ପଟ ମାରିଲେ ଗଛଡାଳକୁ । ଗୋଟିଏ ଅନିର୍ବଚନୀୟ ଖୁସିରେ ପୂରି ଯାଉଥିଲା ନରହରିର ମନ ।

ପ୍ରତିଦିନ ସେମାନଙ୍କ ପାଇଁ କିଛି କିଛି ପନିପରିବା ଓ ଫଳମୂଳ ଆଣି ଆସିବା ନରହରିର ଅଭ୍ୟାସରେ ପରିଣତ ହୋଇ ଯାଇଥିଲା । ସେମାନେ ବି ଅପେକ୍ଷାରେ ରହିଲେ ତା'ର ଆସିବା ସମୟକୁ । କ୍ରମଶଃ ମାଙ୍କଡ଼ମାନେ ନରହରିକୁ ଆଉ ଭୟ ନକରି ତା' ହାତରୁ ଆସି ନେବାର ସାହସ ଜୁଟାଇ ପାରିଲେ । ପରିବା ଓ ଫଳମୂଳ ବଢ଼ାଇ ଦେଉଁ ଦେଉଁ କେବେ କେବେ ସେମାନଙ୍କ ମୁଣ୍ଡ କିମ୍ବା ଦେହକୁ ଆଉଁସି ଦେଉଥିଲା ସିଏ । ଧୀରେ ଧୀରେ ମାଙ୍କଡ଼ ଗୋଷ୍ଠୀ ଓ ନରହରି ଭିତରେ ବୃଦ୍ଧି ପାଉଥିଲା ଏକ ଆତ୍ମିକ ସମ୍ପର୍କ ।

ଘାଟି ଉପରେ ଯାତାୟତ କରୁଥିବା ଗାଡ଼ି ଘୋଡ଼ା ଓ ପଥଚାରୀମାନେ ଏ ଦୃଶ୍ୟକୁ ଦେଖୁଥିଲେ କୌତୁହଳ ସହ । ସେ ରାସ୍ତାରେ ନିୟମିତ ଯାତାୟତ କରୁଥିବା ଗାଡ଼ିର ଡ୍ରାଇଭର ଓ କଣ୍ଡକ୍ଟର ହନୁମାନଙ୍କୁ ଭକ୍ତିର ନିଦର୍ଶନ ସ୍ୱରୂପ ସେଠାରେ ଅଟକି କିଛି ଫଳମୂଳ ପ୍ରଦାନ କରିବାକୁ ଲାଗିଲେ । ସେମାନଙ୍କ ଦେଖାଦେଖି ଗାଡ଼ିର ଯାତ୍ରୀମାନେ ଓହ୍ଲାଇ ପଡ଼ି କିଏ ବିସ୍କୁଟ୍ ତ କିଏ ବାଦାମ, କିଏ ଚଣା ତ କିଏ ପାଚିଲା କଦଳୀ ଦେଇ ଖୁସି ହେଉଥିଲେ ।

ଧୀରେ ଧୀରେ ସେଠାରେ ମାଙ୍କଡ଼ଙ୍କର ସଂଖ୍ୟା ବଢୁଥିଲା, ବଢୁଥିଲା ବି ସେଠାରେ ଅଟକି ନିଜ ମନୋରଞ୍ଜନ ସହ ମାଙ୍କଡ଼ମାନଙ୍କୁ ଖାଇବାକୁ ଦେଇ କିଛି

ଧର୍ମ ଅର୍ଜନ କରିବାକୁ ଚାହୁଁଥିବା ଲୋକଙ୍କ ସଂଖ୍ୟା । ପ୍ରତିଦିନ ସେହି ରାସ୍ତାରେ ଗାଡ଼ି ଚଳାଉଥିବା ସୀମାନ୍ତ ବସ୍‌ର ମାଲିକ ଆଉ ଦି' ପାଦ ଆଗକୁ ଯାଇ ସେଠାରେ ଗୋଟେ ହନୁମାନ ମୂର୍ତ୍ତି ବସାଇ ଦେଲେ, ଜାଗାର ନାଆ ବି ଦେଇଦେଲେ ହନୁମାନ ଘାଟି ।

କିଛିଦିନ ପରେ ଦେଖିବା ବେଳକୁ ସେ ମୂର୍ତ୍ତିପାଖରେ ଜଣେ କାଠ କେବିନ୍‌ଟିଏ କରି ହନୁମାନଙ୍କ ପୂଜା ପାଇଁ ନଡ଼ିଆ, କଦଳୀ, ସିନ୍ଦୂର ସହ ମାଙ୍କଡ଼ମାନଙ୍କୁ ଖୋଇବା ପାଇଁ ଚଣା, ବାଦାମ, ଶସ୍ତା ବିସ୍କୁଟ୍, କଦଳୀ, ପିଜୁଳି ଇତ୍ୟାଦି ରଖି ବିକିବା ଆରମ୍ଭ କରିଦେଲା । ସକାଳରୁ ସଂଜଯାଏ ତା' ବେପାର ବି ଭଲ ଚାଲିଲା ।

ଶିକ୍ଷକ ହିସାବରେ ତା' ଉପରେ ଅନେକ ଦାୟିତ୍ୱ ପଡୁଥିଲା । ଜନଗଣନା, ଭୋଟ ପରିଚୟ ପତ୍ର ଓ ବି.ପି.ଏଲ. ସର୍ଭେ ଇତ୍ୟାଦି ତାଲିକା ଅନୁଯାୟୀ ପରିବାରର ପ୍ରତ୍ୟେକ ସଦସ୍ୟଙ୍କୁ ମୁଣ୍ଡପିଛା ପାଞ୍ଚକେଜି ଚାଉଳ ଦୁଇଟଙ୍କାରେ ଯୋଗାଇ ଦିଆଯିବାକୁ ସର୍ଭେ ହେଲା । ସେଦିନ ସେ ତା'ର ସ୍ଥୂଳ ବୁଦ୍ଧିରେ ଚିନ୍ତା କଲା ଆମ ଗାଆଁରେ ତ କେହି ଚାଉଳ କିଣନ୍ତିନି, ସମସ୍ତେ ନିଜ ଚାଷର ଧାନକୁ ଚାଉଳ କରି ଖାଆନ୍ତି, ଶସ୍ତା ହେଲେ ବି ସରକାର ଠୁଁ କିଣିବେ କାହିଁକି ? ପ୍ରଶ୍ନଟି ନିଜ ଭିତରେ ଚାପି ନପାରି ପଚାରିଦେଲା ବି.ଡ଼ି.ଓ.ଙ୍କୁ । ବି.ଡ଼ି.ଓ.ମୁର୍କି ହସି କହିଲେ ଧାନ ଚାଷ କରନ୍ତୁ କିଏ ମନାକଲା । ଧାନକୁ ବିକି ଦେବେ ମିଲ୍ ମାଲିକଙ୍କୁ, ସରକାର ଦେଉଥିବା ଚାଉଳ କିଣି ଖାଇବେ । ଧାନ ବିକିବା ଯାଏଁ କଥା କାହିଁକି ଯିବ, ଏବେ ମନେରଗା ଯୋଜନାରେ ପା' ପ୍ରତ୍ୟେକ ବ୍ୟକ୍ତିଙ୍କୁ ସର୍ବନିମ୍ନ ଶହେ ଦିନର କାମ ଯୋଗାଇ ଦିଆଯିବ ସରକାରୀ ମଜୁରିରେ ।

ଏ ଧାନ ବିକି ଚାଉଳ କିଣିବାର ଗଣିତ ଓ ମନରେଗା ଯୋଜନା କ'ଣ ବୁଝିପାରୁନଥିଲା ନରହରି । ହେଲେ ଭରସି ପାରୁନଥିଲା ଏକଥା ପଚାରିବା ପାଇଁ । ବି.ଡ଼ି.ଓ. ତାକୁ କେବଳ କହିଲେ, ତମ ଗାଆଁ ଓ ସେ ଆଖପାଖ ଗାଆଁର ଶ୍ରମଜୀବୀଙ୍କର ଗୋଟେ ତାଲିକା ହେବ । ଜେ.ଇ. ଅବଶ୍ୟ ସେ ତାଲିକା କରିବେ, ତମର ଦାୟିତ୍ୱ ରହିବ ସେ ଲୋକମାନଙ୍କର କେମିତି ବ୍ୟାଙ୍କ ଖାତା ଖୋଲାଯିବ । ଜେ.ଇ.ଙ୍କୁ କହିଛି ସେ ତମକୁ ସବୁ ବୁଝାଇ ଦେବେ । ତମେ ସ୍ଥାନୀୟ ଲୋକ ତଥା ସରକାରୀ ଚାକିରିଆ ହିସାବରେ ତାଙ୍କୁ ସହଯୋଗ କରିବ । ମନେରଗା ଯୋଜନାନୁଯାୟୀ ଗାଆଁର ସବୁ କର୍ମଯୋଗ୍ୟ ଲୋକଙ୍କର ତାଲିକା କରାଗଲା । ସମସ୍ତଙ୍କ ନାଆଁରେ ବ୍ୟାଙ୍କରେ ଶୂନ୍ୟ ଜମାରାଶିରେ ଖାତା ଖୋଲାଗଲା । ସମସ୍ତଙ୍କୁ ସ୍ୱପ୍ନ ଦେଖାଇ ଦିଆଗଲା ବର୍ଷକୁ ସର୍ବନିମ୍ନ

ଶହେ ଦିନର କାମ ଯୋଗାଇ ଦିଆଯିବ ଏବଂ ତାଙ୍କର ମଜୁରି ଟଙ୍କା ସିଧାସଳଖ ବ୍ୟାଙ୍କ ଖାତାରେ ଜମା ହେବ ।

କାମ କ'ଣ ? କେହି ଯଦି ପ୍ରଶ୍ନ କରେ, ଉତ୍ତର ମିଳେ ସରକାରୀ କାମ । ତା'ର କ'ଣ କିଛି ନର୍ଦ୍ଦିଷ୍ଟତା ଅଛି । ସେ ରାସ୍ତାକାମ ହୋଇପାରେ, ପୋଖରୀ ଖୋଳା ହୋଇପାରେ, ଯାହାବି କାମ ହେବ ଏଇ ଗାଆଁ ପାଖରେ ହେବ, କାହାରିକୁ ଦୂରକୁ ଯିବାକୁ ପଡ଼ିବନି । ଲୋକେ ବି ଖୁସି ହେଲେ, ଗାଆଁ ପାଖରେ ସରକାରୀ କାମ ମିଳିବ । ଗାଆଁର ମୂଲଠାରୁ ଚାରିଗୁଣା ମଜୁରି । ଚାଷରେ ବର୍ଷେ ଖଟିଲେ ଯେତିକ ଆୟ ନୁହଁ, ଶହେଦିନ ନ ହେଉ, ମାସଟିଏ କାମ ମିଳିଗଲେ ତ ସେତିକି ଆୟ ହୋଇଯିବ ।

ଲୋକେ ଅନେଇକି ବସିଥିଲେ ତାଙ୍କୁ କାମ ମିଳିବ । କାମ ହେଉଥିଲା ଅଥଚ ଲୋକେ କରୁନଥିଲେ । କରୁଥିଲା ମେସିନ୍ । ମାତ୍ର ଲୋକଙ୍କ ନାଆଁରେ ବ୍ୟାଙ୍କ ଖାତାରେ ମଜୁରି ଜମା ହୋଇଥିଲା । ଟଙ୍କା ଜମା ହେବା କ୍ଷଣି ଜେ.ଇ ଆସିବେ ଗାଆଁକୁ । ମଗେଇ ଦେବେ ସମସ୍ତଙ୍କ ପାସ୍‌ବୁକ୍ । ଟଙ୍କା ଉଠାଣ ଫର୍ମରେ ସମସ୍ତଙ୍କ ଟିପଚିହ୍ନ ଲଗାଇ ସାରି ସମସ୍ତଙ୍କୁ ପାଞ୍ଚଶହ ଟଙ୍କିଆ ନୋଟ୍ ଖଣ୍ଡେ ଖଣ୍ଡେ ଧରାଇବେ, କହିବେ ତମ କାମ ପାଇଁ ସରକାର ଦେଉଛନ୍ତି । କିଛି କାମ ନକରି ଟଙ୍କା ମିଳୁଛି, ଲୋକେ ବି ଖୁସ୍ । କିଏ ବା କାହିଁକି ପଚାରିବ କି କାମ କଲାରୁ ଏ ଟଙ୍କା ମିଳିଲା । ସରକାରୀ ଘରକଥା ବେଶି ପଚାରିଲେ କ'ଣ ଓଲମ୍ ବିଲମ୍ କରିଦେବେ, ଘରେ ବସି ମାଗଣାରେ ଯାହା ମିଳୁଛି ତାହା ବି ବନ୍ଦ ହୋଇଯିବ । ଦି'ଟଙ୍କିଆ ଚାଉଳରେ କାର୍ଡ଼ ବି କାଟି ଦେବେ ।

ଦି'ଟଙ୍କିଆ ଚାଉଳର ଦର କୁଆଡ଼େ ଲୋକେ ଦେଇପାରିଲେନି ବୋଲି ତାକୁ ଟଙ୍କାଟିଏ କରିଦିଆଗଲା । ଲୋକେ ଆହୁରି ଖୁସି ହେଲେ । ଟଙ୍କାକିଆ ଚାଉଳ ମିଳୁଛି, କାମକୁ ଯିବାକୁ ପଡୁନି, ମାସେ ଦୁଇମାସରେ ଥରେ ଗୋଟିଏ ଫର୍ମରେ ଦସ୍ତଖତ କରିଦେଲେ ପାଆଁଶ ସାତଶହ ଯାଏଁ ଟଙ୍କା ମିଳିଯାଉଛି । ବିଲକୁ ଯାଇ ପାଣି କାଦୁଅରେ ନସର ପସର କିଆଁ ? ରୋଗ ପୋକ ଠାରୁ ଆରମ୍ଭ କରି ଗାଈ, ଛେଳି ଓ ମାଙ୍କଡ଼ଙ୍କ ଦାଉରୁ ଫସଲ ସମ୍ଭାଳିବାକୁ ରାତିଦିନ ଏକ କରି ବିଲରେ ପଡ଼ିବା, ସେଥିରେ ବର୍ଷା ବି ଖାଇବ, ଶୀତ ବି ସହିବ । ତଥାପି ତ ଘୁଂଚୁନଥିଲା ଅଭାବ, ପୂରୁ ନଥିଲା ପେଟ ।

ଏବେ ଘରେ ଅଛି ଚାଉଳ । ତିନିଓଳି ବାସି ହେଲେ ବି ଯା'ଆସ ନାହିଁ । ନଅତିଅଣ ଛଅଭଜା ଲୋଡୁଛି ବା କିଏ । ପିଆଜ ଓ ଖଟାରେ ବାସି ପେଟ ଧରୁଛି । ବିନ୍ଦାସ୍-ବିନ୍ଦାସ୍ ଲାଗୁଛି ଜୀବନ । ଆଉ ଚାଷ କାମରେ ବା ମନ କାହାର । ଧୀରେ ଧୀରେ ଛାଡ଼ିଦେଲେ ଚାଷ ବାସ । ମଦ, ମହୁଲି ଓ ସଲପ ସହ ନାଚଗୀତ । ଟୋକାଠାରୁ ବୁଢ଼ାଯାଏ ସଭିଏଁ ମାତିଲେ ମଉଜ ମଜଲିସ୍‌ରେ । ଚାଲିଲା କୁକୁଡ଼ା ଲଢ଼େଇ, ଜୁଆ ଓ ଘୁଡ୍‌ଘୁଡ୍ ପଟିରେ ଖେଳ ।

ଉଜୁଡ଼ି ଯାଉଥିଲା ଗାଆଁ, ଉଜୁଡ଼ି ଯାଉଥିଲା ଚାଷବାସ । ଏବେ ଗାଆଁ ଲୋକେ କେବଳ ସଜିଲ ହୋଇ ରହୁଥିଲେ କୋଉ ପାର୍ଟିର ର୍‌ୟାଲି ଓ ସଭାକୁ ଟ୍ରକ୍‌ରେ ବୁହା ହୋଇ ଯିବାକୁ । ଖାଇବାକୁ ମିଳୁଥିଲା, ସେଥିକୁ ମଜୁରି ବି । କେବଳ ଯାହା ଯେଉଁ ପାର୍ଟି ଡାକିଲା ତା' ପତାକା ଧର, ଜିନ୍ଦାବାଦ କିମ୍ବା ମୁର୍ଦ୍ଦାବାଦ ଧ୍ୱନି ସ୍ୱରରେ ସ୍ୱର ମିଳାଇ କୁହ ।

ନରହରି ଦେଖୁଥିଲା ବଦଳି ଯାଉଛି ଗାଆଁ, ବଦଳି ଯାଉଛନ୍ତି ଗାଆଁ ଲୋକେ । ବିଭିନ୍ନ ରାଜନୈତିକ ଦଳକୁ ନେଇ ଭାଗଭାଗ ହୋଇ ଯାଉଥିଲା ପଡ଼ା ସବୁ । ଲୋକେ ଏବେ ଧୀରେ ଧୀରେ ରାଜନୀତି କରିବା ଶିଖି ଯାଇଥିଲେ । ସରପଞ୍ଚ ନିର୍ବାଚନରେ ଦଳାଦଳି ହୋଇ ହଣାକଟାଯାଏ କଥା ଯାଇଥିଲା । ସେବେଠାରୁ ଝରଣାର ଘାଟ ହୋଇଯାଇଥିଲା ଅଲଗା ଅଲଗା ।

ତାକୁ ଆଉ ଗାଆଁ ଲୋକେ ଆଗଭଳି ପ୍ରଶଂସା କରୁନଥିଲେ କି ସମ୍ମାନ ଦେଉନଥିଲେ । ବରଂ ମଧ୍ୟାହ୍ନ ଭୋଜନ ନିମ୍ନମାନର ହେଉଛି, ନିୟମିତ ଅଣ୍ଡା ଦିଆଯାଉନାହିଁ, ପାଠପଢ଼ା ସମୟରେ ବ୍ୟକ୍ତିଗତ କାର୍ଯ୍ୟରେ ବାହାରକୁ ଚାଲିଯାଉଛନ୍ତି ଇତ୍ୟାଦିର ଅଭିଯୋଗ ନିୟମିତ ଭାବେ ଉଚ୍ଚ କର୍ତ୍ତୃପକ୍ଷଙ୍କ ପାଖରେ ପହଞ୍ଚୁଥିଲା । ନିଜ ଗାଆଁ ବିକାଶ କରିବାକୁ ଲକ୍ଷ୍ୟ ରଖି ଏସବୁ ଅଭିଯୋଗକୁ କିଛି ମନ୍ଦବୁଦ୍ଧି ବ୍ୟକ୍ତିଙ୍କର ରାଜନୈତିକ ଚାଲ୍ ବୋଲି ସେ ଭାବି ନେଇଥିଲା । କାରଣ ସମସ୍ତ ପ୍ରକାର ପ୍ରଲୋଭନ ସତ୍ତ୍ୱେ ବି ସେ ଆଜିଯାଏଁ ନିଜକୁ କୌଣସି ରାଜନୈତିକ ଦଳ କିମ୍ବା ଆଦର୍ଶରେ ସାମିଲ କରିପାରିନଥିଲା । ସେ କେବଳ ବୁଝିଥିଲା ଯେ ସେ ଶିକ୍ଷକ-ପାଠପଢ଼ାଇ ପିଲାଙ୍କୁ ଶିକ୍ଷିତ ତଥା ମଣିଷ କରିବା ତା'ର କାମ ।

ପ୍ରତିଦିନ ସ୍କୁଲ ଗଲାବେଳେ ସେ ଅଟକେ ଘାଟି ଉପରେ ମାଙ୍କଡ଼ମାନଙ୍କୁ ଭେଟିବାକୁ । ନେଇଥିବା ପରିବା ଓ ଫଳମୂଳକୁ ଦିଏ । ମାତ୍ର ସେ ଲକ୍ଷ୍ୟ କରୁଥିଲା

ଯେ ତା'ର ପହଞ୍ଚିବା କ୍ଷଣି ମାଙ୍କଡ଼ମାନେ ଆଉ କୁରୁଳି ଉଠୁନାହାନ୍ତି କି ଧାଇଁ ଆସୁନାହାନ୍ତି ତା' ପାଖକୁ । ସେ ଗୋଟିଗୋଟି କରି ଡାକି ତାଙ୍କ ହାତକୁ ବଢ଼ାଏ । ଗୋଟେ ଗୋଟେ ମାଙ୍କଡ କଲେ କଞ୍ଚା ପରିବା କାମୁଡ଼ି ଦେଇ ଥୋଇ ଦିଅନ୍ତି ତଳେ । କେହି କେହି ତ କେବଳ ଶୁଂଘି ଦେଇ ଥୋଇ ଦିଅନ୍ତି । ମାତ୍ର ଏହି ସମୟରେ ଯଦି କୌଣସି ଗାଡ଼ିବାଲା ଅଟକି ବାଦାମ୍, ବିସ୍କୁଟ୍, ନଡ଼ିଆ ଇତ୍ୟାଦି ଦେଲା, ସେମାନେ ଘେରି ଯାଆନ୍ତି ତା' ପାଖରେ । ନରହରି ଜାଣିଲା ଯେ ଏମାନେ ସୁଆଦିଆ ଜିନିଷ ଖାଇଖାଇ ଆଉ କଞ୍ଚା ପରିବା ବା ଫଳମୂଳକୁ ତାଙ୍କ ମନ ବଳୁନି ।

ଧୀରେ ଧୀରେ ସେମାନଙ୍କ ପାଇଁ ପରିବାପତ୍ର ନେଇ ଯିବାଟା ବନ୍ଦ କରିଦେଲା ନରହରି । ସ୍ୱଭାବବଶତଃ  କେବଳ ଅଟକେ ସେମାନଙ୍କୁ ଦେଖିବା ପାଇଁ । ସେ ଲକ୍ଷ୍ୟ କରୁଥିଲା ଆଉ କୌଣସି ମାଙ୍କଡ଼ ଗଛ ଡାଳରେ ବସୁନାହାନ୍ତି । ସେମାନେ କେବଳ ବସି ରହୁଛନ୍ତି ରେନ୍‌ଗାର୍ଡ଼ ଉପରେ । ରାତିରେ ବି ଗଛରେ ନ ଶୋଇ ଶୋଉଛନ୍ତି ପଥର ମୁଣ୍ଡିଆ ଉପରେ ଦଳବଦ୍ଧ ଭାବରେ । ଡେଉଁ ନାହାନ୍ତି ଏ ଡାଳରୁ ସେ ଡାଳ । ଖାଉ ନାହାନ୍ତି ଗଛପତ୍ର । ଲୋକ ଦେଖିଲେ ହୁରୁଡ଼ୁ ନାହାନ୍ତି କି ତରକୁ ନାହାନ୍ତି ।

ଚର୍ବି ଲାଗୁଥିଲା ମାଙ୍କଡ଼ମାନଙ୍କର । ଓହଳି ପଡୁଥିଲା ଥୋବଣୀ ଓ ପେଟ । ଚାଲିଲେ ବି ଲତ୍ ଲତ୍ ହେଉଥିଲା ଶରୀର । ଚାଲିବି ପାଦ ଗଣି ଗଣି, ଗୁଣ୍ଡୁଣୀ ହାତୀର ଚାଲିପରି । ଭୁଲି ଯାଇଥିଲେ ସେମାନେ ଗଛ ଚଢ଼ିବାର କଳା, ଡାଳରୁ ଡାଳକୁ ଡ଼େଇଁବାର କୌଶଳ । ଲାଗୁଥିଲା ସେମାନେ ଯେମିତି ବିବର୍ତ୍ତନର ଧାରାକୁ ପୁନଃ ଫେରୁଛନ୍ତି ଏବଂ ପାଲଟୁଛନ୍ତି କ୍ରମଶଃ ମଣିଷ ।

ଗାଆଁରେ ଆଉ ନଥିଲା ମାଙ୍କଡ଼ଙ୍କ ଅଦୌତି । ସେମାନେ ଯେମିତି ଭୁଲି ଯାଇଥିଲେ ଘାଟିରୁ ଓହ୍ଲାଇବାର ଆଗ୍ରହକୁ । ହାତପାହାନ୍ତରେ ଖାଦ୍ୟ, ତାହା ପୁଣି ସୁସ୍ୱାଦୁ । କାହିଁକି ବା ପରିଶ୍ରମ କରିଯିବେ । ଟେକାପଥର ଓ ବାଟୁଳି ମାଡ଼ ଖାଇ ହିନସ୍ତା ହେବେ । ଗାଆଁକୁ ସେମାନେ ଯିବା କଥା ବା କାହିଁକି ଭାବିବେ ? ନା ଗାଆଁରେ ଥିଲା ବାଡ଼ି ବଗିଚା ନା ପନିପରିବା ଚାଷ । ଗାଆଁ ତା' ସବୁଜିମାହରାଇ ପାଲଟି ଯାଇଥିଲା ଧୂସର ଉପତ୍ୟକା ।

ଚାଷର କି ଲାଭ ଅଛି ଯେ ଚାଷ କରିବ ? ପାହାଡ଼ି ଜମିରେ କେତେ ବା ଫଳିବ ଧାନ ? ବିକିଲେ ବା କେବେ ଟଙ୍କା ହେବ ? ବିନା ମେହେନତରେ ଟିପ ଚିହ୍ନଟିଏ ଦେଇ ବର୍ଷକୁ ଯେତିକି ଟଙ୍କା ମିଳୁଛି ବର୍ଷସାରା ଖରା ବର୍ଷା, କାକର ଖାଇବି

ମିଳୁନଥିଲା । ସେଥିକୁ ଏବେ ତ ମିଳୁଛି ବାର୍ଦ୍ଧକ୍ୟ ଭତ୍ତା । ପାଠ ପଢ଼ିଥିଲୁ ନା ସାର୍ଟିଫିକେଟ୍ ଥିଲା । ଭତ୍ତା ମିଳିବ ବୋଲି ଲେଖିଦେଲୁ ଷାଠିଏ । ବାପର ବି ଭତ୍ତା ପୁଅର ବି ଭତ୍ତା ।

ଏବେ ଲୋକଙ୍କୁ ଦେଖିବାକୁ ମିଳୁନଥିଲା କ୍ଷେତରେ କି ଖଳାରେ । ଜମିରେ କି ବାଡ଼ିରେ । ନା ଘରେ ନା ଗାଆଁରେ । ରାତି ପାହିଲେ ଘାଟି ପାଖ ଚା' ଦୋକାନରେ ଓ ସଞ୍ଜ ହେଲେ ବିହାରୀ ଭାଟିରେ । ସବୁଠି ବସୁଥିଲେ ଦଳବଳ ହୋଇ । ଆଲୋଚନା ଚାଲିଥିଲା ଆଉ ସବୁ କ'ଣ ସୁବିଧା ଆସୁଛି ସରକାରଙ୍କ ତରଫରୁ । ଜୋତା, ଛତା, କମ୍ବଳ, ପିଲାଙ୍କ ସାଇକେଲ ପରେ ଏବେ ଆରମ୍ଭ ହୋଇଥିବା ଜନ୍ମଠାରୁ ମୃତ୍ୟୁଯାଏ ଯୋଜନାର ଆଲୋଚନା । ଆଲୋଚନା ବି ଚାଲିଥିଲା ସରକାରୀ କର୍ମଚାରୀଙ୍କୁ ଧରିଲେ ଓ ଚା' ପିଆ ଖର୍ଚ୍ଚ କେତେ ଦେଲେ କେଉଁ କେଉଁ ସୁବିଧା ସବୁ ମିଳିଯିବ ।

ଏବେ ଗାଆଁକୁ କୌଣସି ସରକାରୀ କର୍ମଚାରୀ ଗସ୍ତରେ ଆସିଲେ ତତ୍କ୍ଷଣାତ୍ ତାଙ୍କ ଚାରିପଟେ ଜମି ଯାଉଥିଲା ଭିଡ଼, ଠିକ୍ ଯେମିତି ଘାଟି ଉପରେ ପଥଚାରୀଙ୍କୁ ଦେଖି ମାଙ୍କଡ଼ମାନେ ଲଗାନ୍ତି ଭିଡ଼ । ପରସ୍ପର ଭିତରେ ପଚରାପଚିରି ହେଉଥିବେ, କ'ଣ ଦେବାକୁ ଲେଖିବା ପାଇଁ ଆସିଛନ୍ତି । ଯଦି ଜାଣିଲେ ଇଏ କିଛି ଦେବାକୁ ନୁହେଁ ବୁଝାଇବାକୁ ଆସିଛନ୍ତି, ତାହାଲେ ଧୀରେ ଧୀରେ ଗୋଟେ ଗୋଟେ ଖସିଯିବେ ସେଠାରୁ । ଯଦି କେବେ କୃଷି ବିଭାଗର ଅଧିକାରୀ ବୁଝାଇବାକୁ ଆସନ୍ତି ଚାଷ ସମ୍ପର୍କରେ କେହି ବି ଜଣେ ଧରାଛୁଆଁ ଦିଅନ୍ତିନି । କିଛି ନା କିଛି କାମର ବାହାନା କରି ରହିଯାଆନ୍ତି । ଶେଷକୁ ଓ୍ୱାର୍ଡ଼ମେମ୍ବର ଆସି କହିବ- ଆଜ୍ଞା କାହିଁକି ସେ ଚାଷ କଥା ନେଇ ଆପଣ ବାରମ୍ବାର ଆସୁଛନ୍ତି ? ଏତେ ବର୍ଷ ହେଲାଣି ଚାଷ କରି କରି ଆସି କି ସୁଖ ପାଇଥିଲେ ଏମାନେ ? ଖଟିକି ଖାଉଥିଲେ, କାଟିକି ପିନ୍ଧୁଥିଲେ । ସେ ଖାଇବା ବା କ'ଣ ? ଧାନ ଅମଳ ପରେ ପରେ ଅଳ୍ପ କିଛି ଦିନ ଭାତ ମୁଠେ ମିଳୁଥିଲା, ନଚେତ୍ ଅଧିକାଂଶ ଦିନ ସୁଆଁ, କାଂଗୋ, ଭାଟୋ ଏବଂ ମାଣ୍ଡିଆ ପେଜରେ ବିତୁଥିଲା । ପରିବା ଟିକେ କଲେ ଯାଇ ବଜାର ସଉଦା କରି ହେଉଥିଲା । ଏବେ ତ ସେମାନେ ଢ଼େର ଆରାମରେ ଅଛନ୍ତି । ତାଙ୍କୁ ପୁଣି କାହିଁକି ଗିରିଜନ କରି ରଖିବା ପାଇଁ ଆପଣ ଲାଗି ପଡ଼ିଛନ୍ତି ?

ନରହରିକୁ ସାକ୍ଷୀ ରଖି କୃଷି କର୍ମଚାରୀ ଜଣକ କହିଲେ, ତମେ ତ ପାଟଶାଠ ପଢ଼ିଛ । ଏମାନଙ୍କୁ ବୁଝାଅ । କେତେଦିନ ଯାଏଁ ଏମାନେ ଏଭଳି ହାତଟେକା ଦାନକୁ ଧରି ଚଳିବେ । ସରକାର ବଦଳିଲେ ନିୟମ ବଦଳେ । ଚାଷବାସ ତ ସବୁ ଉଜାଡ଼ି ସାରିଲେଣି । ଛଟପଟ ହୋଇ ମରିବେ । କେହି ନଥିବେ ଆହା କରିବାକୁ ।

ନରହରି ଗୁମ୍ ଖାଇ ବସିଲା ବହୁବେଳ ଯାଏଁ । ଧୀରେ ଧୀରେ ଗାଆଁ ଲୋକ ତା' ପାଖରେ ଭିଡ଼ ଜମାଇଲେ । ଭିଡ଼ ଭିତରୁ କିଏ ଜଣେ ତାକୁ ପଚାରିଲା – ବ୍ୟାଙ୍କ୍‌ରେ କି ଗୋଟେ ଖାତା ଖୋଲିବାକୁ କହୁଛନ୍ତି, କ'ଣ ମ କ'ଣ ମ ତା ନାଆଁଟା ? କିଏ ଜଣେ କହିଲା ଜନଧନ ଖାତା । ହଁ-ହଁ, ଜନଧନ ଖାତା । ଆରେ ତୁ ତ ପାଠୁଆ ପିଲା, ସେ ଖାତା ଖୋଲିଲେ କ'ଣ ସରକାର ଆମକୁ ଟଙ୍କା ଦେବେ । ଇଲୋ ବାପା, କେତେ ନା କେବେ ଟଙ୍କା କଥା କହୁଛନ୍ତି ? ମୋର ତ ବିଶ୍ୱାସ ହେଉନି । ଆରେ ଏ ସରକାରଟା କିଏ ରେ ଏତେ ଟଙ୍କା ଦବ ଆମ ସଭିଙ୍କୁ ? ତୁ ତ ପଢୁଆ ପିଲାଟା, ବୁଝ ତ ! ଯଦି ମିଳୁଥିବ ସବୁ ଗାଆଁ ଲୋକ ଯାଇ ଖାତା ଖୋଲିଦେବା ।

ନରହରିକୁ ଲାଗୁଥିଲା ତା' ଆଗରେ ଇଏ ଯେଉଁମାନେ ଭିଡ଼ ଜମାଇଛନ୍ତି, ଇଏ ତା' ଗାଆଁ ଲୋକ ନୁହଁନ୍ତି, ଘାଟିର ମାଙ୍କଡ଼ । ମାଗଣା ଖାଇ ଖାଇ ଏମାନଙ୍କର ବଢ଼ିଯାଉଛି ଚର୍ବି । ଏମାନେ ଏବେ କେଉଁ କାମକୁ ଯୋଗ୍ୟ ନୁହଁନ୍ତି । କେବଳ ହାଁ-ହାଁ ହେଉଛନ୍ତି କେଉଁଠୁ କ'ଣ ମିଳିବ । ନରହରି କହିଲା – ହଁ, ମିଳିବ, ମାତ୍ର ତା' ଆଗରୁ ଆମ ସମସ୍ତଙ୍କୁ ଆଉ ଗୋଟେ କାମ କରିବାକୁ ପଡ଼ିବ ।

କି-କାମ ?

କାଲି ସକାଳୁ ଯେଝା ଯେଝା ଧନୁତୀର, ଟାଙ୍ଗିଆ,ଫାର୍ଶା, ଠେଙ୍ଗାବାଡ଼ି ଧରି ସମସ୍ତେ ବାହାର, ତା'ପରେ ମୁଁ କହିବି ।

ପରଦିନ ସକାଳୁ ସକାଳୁ ସମସ୍ତେ ସଜିଲ । ନରହରି ସେମାନଙ୍କୁ ଅଡ଼େଇଲା ଘାଟି ଉପରକୁ । ମାଙ୍କଡ଼ମାନଙ୍କ ପାଖରେ ପହଞ୍ଚି ଲୋକମାନଙ୍କୁ ନିର୍ଦ୍ଦେଶ ଦେଲା – ଖେଦ, ଖେଦ ଏମାନଙ୍କୁ ଯେମିତି ଏମାନେ ଏ ଘାଟିରେ ଆଉ ନ ବସିବେ, ମାତ୍ର କାହାରିକୁ ଜୀବନରେ ମାରିବ ନାହିଁ ।

ଲୋକମାନେ ଘଉଡ଼ାଉଥିଲେ ମାଙ୍କଡ଼ଙ୍କୁ । ଅଥଚ କୌଣସି ମାଙ୍କଡ଼ ନା ଦୌଡ଼ି ପାରୁଥିଲେ ନା ଗଛ ଚଢ଼ି ପାରୁଥିଲେ ଆତ୍ମରକ୍ଷା ପାଇଁ । ଗାଈପଲଙ୍କୁ ଅଡ଼ାଇବା ପରି ଲୋକେ ତାଙ୍କୁ ଖେଦୁଥିଲେ ଦୂରକୁ- ଦୂରକୁ । ନରହରି କେବଳ ନିର୍ଦ୍ଦେଶ ଦେଉଥାଏ, ଖେଦ ଆହୁରି ଦୂରକୁ, ଯେମିତି ସେମାନେ ପୁନଶ୍ଚ ଘାଟି ଉପରକୁ ନ ଆସି ପାରିବେ ।

ଅଫେରା ଦୂରତ୍ୱକୁ ମାଙ୍କଡ଼ମାନଙ୍କୁ ଘଉଡ଼ାଇ ସାରି ଗାଆଁସାରା ଲୋକେ ଫେରିଲେ ଘାଟି ଉପରକୁ । କ୍ଳାନ୍ତି ମେଣ୍ଟାଇବା ପାଇଁ ସମସ୍ତେ ବସିଗଲେ ରେନଗାର୍ଡ଼ କାନ୍ଥ ଉପରେ । ସମସ୍ତେ ଏକାଠି ହେବାପରେ ନରହରି କହିଲା- ଆଜିଠୁ ଏ ଜାଗା

ଛାଡ଼ି ତମେମାନେ ଯାଅନି । ବସି ରୁହ ଏହି ଜାଗାରେ ସକାଳରୁ ରାତିଯାଏ, ମାଙ୍କଡ଼ମାନଙ୍କୁ ମିଳୁଥିଲା, ତମମାନଙ୍କୁ ମଧ୍ୟ ମିଳିଯିବ । ୟା'ଠାରୁ ଆରାମ ଆଉ କ'ଣ ହୋଇପାରେ । ପୂର୍ବପୁରୁଷଙ୍କ ଜାଗାକୁ ତ ଆମକୁ ସମ୍ଭାଳିବାକୁ ପଡ଼ିବନା । ଆଉ ବା ଗାଆଁରେ କି କାମ ? ନା ଚାଷ ଓ ନା ବାଡ଼ି ବଗିଚା ? ଆମେ ଅପେକ୍ଷା କରିବା ଏ ଟଙ୍କିକିଆ ଚାଉଳ କେବେ ବନ୍ଦ ହେବ ଏବଂ କେହିଜଣେ ଆମକୁ ମାଙ୍କଡ଼ ଖେଦିବା ପରି ଖେଦି ଖେଦି ଗାଆଁରେ ପହଞ୍ଚାଇବ । ହେଲେ ସେତେବେଳକୁ ମାଟିର ଛାତି ଚିରି, ଦେହର ଝାଳନିଗାଡ଼ି, ମାଟିରୁ ସୁନା ଫଳାଇବାର କଳାଟା ଆମେ ମନେରଖିଥିଲେ ହେଲା - ନଚେତ୍ ପୁନଶ୍ଚ ଆମେ ମାଙ୍କଡ଼ ହୋଇଯିବା ।



# ସବୁମାୟା

ପ୍ରତିବର୍ଷ ରଜକୁ ଗାଆଁରେ ଡ୍ରାମା ହେବାଟା ନିର୍ଧାର୍ଯ୍ୟ ଥିଲା । ଯିଏ ଯେଉଁଠି ଥାଆନ୍ତୁ ଗାଆଁକୁ ଆସିବେ ହିଁ ଆସିବେ । ସେ ସମୟରେ ଗାଆଁଟା ଲାଗେ ପୂରିଲା ପୂରିଲା । ଘରେ ଘରେ ବିଦେଶିଆ ଓ କୁଣିଆମଇତ୍ର । ଚାଷବାସ ବନ୍ଦ, ପିଠାପଣା, ରଜଦୋଳି ସାଙ୍ଗକୁ ତାସ୍ ଖେଳର ମାଡ଼ରେ ଗାଆଁଟା ଘୋ-ଘୋ ଲାଗେ । ଏହାଠାରୁ ବଳି ପ୍ରକୃଷ୍ଟ ସମୟ ନାହିଁ ବୋଲି ଠିକ୍ ସେହି ସମୟରେ ଡ୍ରାମା ହୁଏ ଗାଆଁରେ । ଏହି ପରମ୍ପରା ଚଳି ଆସୁଥିଲା କାହିଁ କେତେ ବର୍ଷରୁ ।

ଡ୍ରାମା ପାଇଁ ଆବଶ୍ୟକୀୟ ଖର୍ଚ୍ଚବାର୍ଚ୍ଚ ପାଇଁ ଆମ ଗାଆଁରେ ଗଢ଼ାଯାଇଥିଲା ଏକ ଡ୍ରାମା କମିଟି । ନାମ ଦିଆଯାଇଥିଲା ବୀଣାପାଣି ଡ୍ରାମା କମିଟି । କମିଟି ପାଖରେ ଥିଲା ଗାଆଁର ସବୁ ଚାକିରିଆଙ୍କ ତାଲିକା । ଦରମା ଅନୁଯାୟୀ ଧାର୍ଯ୍ୟ କରାଯାଇଥାଏ ଚାନ୍ଦା । ସେ ଚାନ୍ଦା ମିଳେ ନଗଦ ଅର୍ଥରେ । ଚାଷୀ ବନ୍ଧି ଓ ଅନ୍ୟାନ୍ୟ ବେଉସାରେ ଥିବା ଗାଆଁର ଅନ୍ୟମାନଙ୍କ ଘରେ ବସିଥାଏ ମୁଠି ଚାଉଳର ଘୁମ । ମୋଟାମୋଟି ଡ୍ରାମାଟି ଯେହେତୁ ରଜ ସହ ଏକ ସାର୍ବଜନୀନ ମହୋତ୍ସବ ହିସାବରେ ଗାଆଁରେ ପରିଗଣିତ ହେଉଥିଲା, ସେଥିପାଇଁ ଅର୍ଥାଭାବ କେବେ ବି ହେଉ ନ ଥିଲା ।

ଗାଆଁ ଡ୍ରାମାରେ ଭାଗ ନେବା ପାଇଁ ପ୍ରତିବର୍ଷ ନୂଆ ନୂଆ କଳାକାରଙ୍କ ମଧ୍ୟରେ ରୀତିମତ ପ୍ରତିଯୋଗିତା ହୁଏ । ବହୁବର୍ଷ ଧରି ଅଭିନୟ କରିସାରିଥିବା ଏବଂ ଅଭିନୟରୁ ନିର୍ଦ୍ଦେଶନାକୁ ଯାଇଥିବା ବହୁ ବରିଷ୍ଠ କଳାକାରଙ୍କ କଷଟିରେ ଉତ୍ତୀର୍ଣ୍ଣ ହେଲେ ଯାଇ ମିଳେ ଗୋଟେ ଛୋଟମୋଟ ରୋଲ୍‌ର ସୁଯୋଗ । ସେଥିପାଇଁ ଗ୍ରାମାଞ୍ଚଳର ଡ୍ରାମା ହେଲେ ମଧ୍ୟ ଆମ ଗାଆଁ ଡ୍ରାମାର ଏକ ବିଶେଷ ଖାତିର ଥିଲା ଆମ ଆଖପାଖ ଅଞ୍ଚଳରେ ।

ହାଇସ୍କୁଲର ରୌପ୍ୟଜୟନ୍ତୀ ପାଇଁ ଆୟୋଜିତ ଡ୍ରାମାରେ ହିରୋ ଭୂମିକାରେ ଅଭିନୟ କରି ବହୁ ପ୍ରଶଂସା ପାଇଥିବା ଗଣେଶ ଖୁବ୍ ଧାକ୍‌ରେ ଥିଲା ଯେ ଏଥର ଗାଆଁ

ଡ୍ରାମାରେ ତାକୁ ନିଶ୍ଚୟ ସୁଯୋଗ ମିଳିବ । ତା'ର କେବଳ ଅପେକ୍ଷା ଥିଲା କେମିତି ସରିବ ମ୍ୟାଟ୍ରିକ୍ ପରୀକ୍ଷା । ପରୀକ୍ଷା ସରିବା ବେଳକୁ ଏପଟେ ଆରମ୍ଭ ହୋଇସାରିଥିଲା ଡ୍ରାମାର ପ୍ରାରମ୍ଭିକ ପ୍ରସ୍ତୁତି । ନୂଆ କଳାକାରଙ୍କ ମଧ୍ୟରେ ପ୍ରବଳ ଦାବିଦାର ହିସାବରେ ଗଣା ଯାଉଥିଲା ଗଣେଶକୁ । ଅଭିନୟରେ ତା'ର ପୂର୍ବ ଅଭିଜ୍ଞତା ଓ ଦକ୍ଷତାକୁ ବିଚାର କରି ତାକୁ ରୋଲ୍‌ଟିଏ ମିଳିଲା ସତ ହେଲେ ସେ ରୋଲ୍‌ଟି ପାଇ ସେ ଆଦୌ ଖୁସିହୋଇ ପାରି ନଥିଲା । ଭୂମିକାଟି ଯଦିଓ ନାଟକର ମୂଳରୁ ଶେଷଯାଏଁ ଥିଲା, ହେଲେ ମୁହଁରେ ପଦିଏ ଡାଇଲଗ୍ ଛଡ଼ା ଆଉ କିଛି ନ ଥିଲା । ବିନା ଡାଇଲଗ୍‌ରେ କି ଅଭିନୟ – ଏକଥା ଭାବି ସେ ବିରସ ମନରେ ଥିବାବେଳେ ନିର୍ଦ୍ଦେଶକ ତାକୁ କହିଲେ – ବିନା ଡାଇଲଗ୍‌ରେ ମଧ୍ୟ ଜଣେ ଶ୍ରେଷ୍ଠ ଅଭିନେତା ହୋଇପାରେ, ଯଦି ଚରିତ୍ରର ଗାରିମାକୁ ସେ ଫୁଟାଇପାରେ । ଡାଇଲଗ୍ ନାହିଁ କାହିଁକି – ପଦିଏ ଅଛି ? ସେହି ପଦଟିକୁ ତୁ କିପରି ଭାବରେ ବ୍ୟକ୍ତ କରୁଛୁ ଏବଂ ତା'ର ଉଚ୍ଚାରଣର ପ୍ରଭାବ କେମିତି ପକାଇ ପାରୁଛୁ ତାହାତ ଦେଖିବାର କଥା । ଏ ନାଟକଟିକୁ ଯିଏ ଲେଖିଛନ୍ତି, ସିଏ ଏମିତି ଯାହିତାହି ଲେଖକ ନୁହନ୍ତି । ଗୋଟିଏ ଚରିତ୍ର ମୁହଁରେ ମାତ୍ର ପଦିଏ ସଂଳାପ ଦେଇ ତାକୁ ନାଟକର ମୂଳରୁ ଶେଷଯାଏଁ ରଖିଛନ୍ତି ମାନେ ବୁଝିବା କଥା ଯେ ସେ ଚରିତ୍ରଟି କେତେ ଗୁରୁତ୍ୱପୂର୍ଣ୍ଣ ।

ନିର୍ଦ୍ଦେଶକଙ୍କ କଥା ମନକୁ ପାଇଗଲା ଗଣେଶର । ସେ ମନେ ମନେ ପ୍ରତିଜ୍ଞା କଲା ଥାଉ ପଛେ ପଦିଏ ମାତ୍ର ଡାଇଲଗ୍, ସେ କିନ୍ତୁ ଦେଖାଇବ ଯେ ଜଣେ ଅଭିନେତା ପାଇଁ ସଂଳାପ ବଡ଼ କଥା ନୁହେଁ, ଅଭିନୟ ହେଉଛି ମୁଖ୍ୟ ।

ଭୂମିକାଟି ଥିଲା ଜଣେ ପ୍ରଖ୍ୟାତ ସାଧୁ ବାବାଙ୍କର ଭୂମିକା । ବାରବର୍ଷ କାଳ ହିମାଳୟରେ ତପସ୍ୟା କରି ତପୋସିଦ୍ଧ ହେବା ପରେ ତାଙ୍କ ଗୁରୁଦେବଙ୍କ ଆଦେଶ ଓ ନିର୍ଦ୍ଦେଶରେ ଜନସମାଜର କଲ୍ୟାଣ ପାଇଁ ସେ ଫେରିଛନ୍ତି ସାଧାରଣ ଜନଜୀବନର ପରିସରକୁ । ଲୋକଙ୍କୁ ମାୟାମୁକ୍ତ କରି ଶୁଦ୍ଧ କର୍ମରେ ପ୍ରେରିତ କରିବା ଉଦ୍ଦେଶ୍ୟରେ ସହରର ଉପକଣ୍ଠରେ ପର୍ଶୁରାମଙ୍କ ତପୋସ୍ଥଳୀରେ ସେ ଗଢ଼ିଛନ୍ତି ଏକ କ୍ଷୁଦ୍ର ଆଶ୍ରମ, ସର୍ବ ଦେବାଦେବୀଙ୍କର ରମ୍ୟସ୍ଥାନ କରିବା ଉଦ୍ଦେଶ୍ୟରେ ନାମ ରଖିଛନ୍ତି ନୈମିଷାରଣ୍ୟ ।

ହିମାଳୟରେ ଦୀର୍ଘବର୍ଷ ତପସ୍ୟା କରି ଆସିଛନ୍ତି ଜଣେ ତପୋସିଦ୍ଧ ବାବା । ଏ ଖବର ବ୍ୟାପିଯାଇଛି ସବୁଆଡ଼େ । ବାବାଙ୍କ ସାନ୍ନିଧ୍ୟ, ଆଶୀର୍ବାଦ ଓ କୃପା ଲାଭ ପାଇଁ ଭିଡ଼ ଜମୁଛି ଆଶ୍ରମରେ । ଆସୁଛନ୍ତି ନେତା, ମନ୍ତ୍ରୀ, ଯନ୍ତ୍ରୀ, ପ୍ରଶାସକ, ବ୍ୟବସାୟୀ

ଓ ସାଧାରଣ ଲୋକେ । ବାବା ଖୁବ୍ ପ୍ରସନ୍ନ ଚିତ୍ତରେ ଶୁଣୁଛନ୍ତି ସମସ୍ତଙ୍କ କଥା । ଶୁଣିବା ପରେ ମାତ୍ର କହୁଛନ୍ତି ପଦିଏ କଥା - ସବୁ ମାୟା, କରୁଛନ୍ତି ଆଶୀର୍ବାଦ । ସେହି ପଦଟିଏ କଥାର ଶକ୍ତିରେ ସମସ୍ତେ ଖୋଜି ପାଉଛନ୍ତି ତାଙ୍କର ସମସ୍ୟାର ସମାଧାନ । ବାସ୍ - ଏତିକି ଭୂମିକା ରହିଛି ଚରିତ୍ରର ।

ଭୂମିକାଟି ପାଇଁ ନିଜକୁ ପ୍ରସ୍ତୁତ କଲା ଗଣେଶ । ପଢ଼ିଲା ବିଭିନ୍ନ ସାଧୁ ସନ୍ନ୍ୟାସୀଙ୍କର ଜୀବନୀ । ମନେପକାଇଲା ବିଭିନ୍ନ ନାଟ ଓ ଯାତ୍ରାରେ ଦେଖିଥିବା ଋଷି ଚରିତ୍ରମାନଙ୍କୁ । ଅନୁଧ୍ୟାନ କଲା ସେମାନଙ୍କ ଚାଲି ଓ କଥାବାର୍ତ୍ତା କରିବାର ଭଙ୍ଗୀକୁ । ଡ୍ରାମା ରିହର୍ସାଲକୁ ଜୀବନ୍ତ ଓ ତଥା ଅଭିନୟକୁ ନିଖୁଣ କରିବାକୁ ସେ ପିନ୍ଧିଲା ଶୁଭ୍ରଧୋତି, ଯଜ୍ଞୋପବୀତ ଏବଂ ମୁଣ୍ଡରେ ଲଗାଇଲା ଏକ ଋଷିର ଉଇଗ୍ ।

ରଜ ଆହୁରି ଥାଏ ଢ଼େରଦିନ । ଏପଟେ ରିହର୍ସାଲ କିନ୍ତୁ ଚାଲିଥାଏ ଖୁବ୍ ଜୋରଦାର୍ । ସମସ୍ତଙ୍କର ଲକ୍ଷ୍ୟ ଥାଏ ଡ୍ରାମା ଯେପରି ସର୍ବାଙ୍ଗ ସୁନ୍ଦର ହେଉ । କିଛିଦିନ ରିହର୍ସଲ କଲାପରେ ଗଣେଶ ଅନୁଭବ କଲା ତା' ଭିତରେ ଏକ ରୂପାନ୍ତର ଘଟୁଛି । ଅଭିନୟ ପରେ ମଧ୍ୟ ଯେ ମୁକୁଳି ପାରୁନାହିଁ ଚରିତ୍ରଟି ଭିତରୁ । ଅଭିନୟ ସମୟ ଓ ତା'ପରେ ମଧ୍ୟ ତାକୁ ଲାଗୁଥିଲା ସେ ଯେମିତି ସତସତିକିଆ ସିଦ୍ଧ ଋଷିଟିଏ ପାଲଟି ଯାଉଛି । ତା' ପାଖରେ ଦର୍ଶନ, ଆଶୀର୍ବଚନ ଓ କୃପା ପାଇଁ ସମବେତ ହେଉଥିବା କଳାକାରମାନେ ଏ ଡ୍ରାମାର କଳାକାର ନୁହନ୍ତି, ସେମାନେ ବି ସତସତିଆ କୃପାପାର୍ଥୀ । ସେମାନଙ୍କ ଦୁଃଖ ଲାଗବ ପାଇଁ ସେ ଦେଉଥିବା ଆଶୀର୍ବଚନ "ସବୁମାୟା" ଏବଂ ବରଦା ମୁଦ୍ରା ପ୍ରଦର୍ଶନ ବେଳେ ତାକୁ ଲାଗୁଥିଲା ସେ ଅଛି ଏକ ଋଷି ଘଟରେ ଏବଂ ଆଶୀର୍ବଚନ ଆସୁଛି ଏକ ଋଷି ମୁଖରୁ ।

ଢ଼େର୍ ରାତିଯାଏ ଚାଲେ ରିହର୍ସାଲ । ରିହର୍ସାଲ ପରେ ସମସ୍ତେ ତରତର ହୋଇ ଫେରନ୍ତି ଘରକୁ, ମାତ୍ର ଗଣେଶ ଭିତରେ ସେମିତି ତତ୍ପରତା ନ ଥାଏ ଘରକୁ ଫେରିବାର । ସେ ଯାଇ ବସେ ପଡ଼ିଆ ମଝିରେ ଧ୍ୟାନସ୍ଥ ମୁଦ୍ରାରେ । ଆକାଶକୁ ନିଶ୍ଚଳ ଦୃଷ୍ଟିରେ ଚାହିଁରହେ ଅନେକ ସମୟ ଧରି । ଆକାଶର ତାରାମାନେ ତାକୁ ଲାଗନ୍ତି ଋଷି ଋଷି ପରି । ସେଥିରୁ କିଛି ତାରକାଙ୍କ ଆଲୋକ ବରଦାମୁଦ୍ରା ପ୍ରଦର୍ଶନ କରନ୍ତି ତାକୁ ତ ଆଉ କିଛିଙ୍କର ଆଲୋକ ରଶ୍ମି ଆସି ସମାହିତ ହୁଅନ୍ତି ତା' ଭିତରେ । ଗୋଟେ ଅପୂର୍ବ ପୁଲକରେ ଭରିଯାଏ ତା'ର ମନ ଆଉ ପ୍ରାଣ । ଏମିତି ବସିବା ଭିତରେ କେତେ ସମୟ ବିତିଯାଏ ସେ ଜାଣିପାରେନା । ପ୍ରକୃତିସ୍ଥ ହେବା ପରେ

ଭାବେ ବୋଉ ତାକୁ ଅପେକ୍ଷା କରି କରି ଶୋଇ ଯାଇଥିବ । ଫେରେ ଘରକୁ । ଦୁଆର ମୁହଁରେ ଛିଡ଼ାହୋଇ କବାଟର ଜଞ୍ଜିର ହଲାଇ ମୃଦୁ ଆଘାତ କରେ । ବୋଉର ପତଳା ନିଦ । ସେ ନିଦ ମଳମଳ ଆଖିରେ ଉଠିଆସି କବାଟ ଖୋଲେ । କବାଟ ଖୋଲୁ ଖୋଲୁ କହିବ – ଏ ବର୍ଷ କ'ଣ ନୂଆ କରି ଡ୍ରାମା ହେଉଛି କି ଗାଆଁରେ ? ଫେରିଲେ ପଖାଳ ଖାଇବୁ କହିଥିଲୁ ଯେ, ଏ ରାତି ଅଧରେ ଫେରିଲୁ । ହଉ ମାଣ୍ଡିଆ ଢ଼ାଙ୍କି ପଖାଳ କଂସା, ଶୁଖୁଆ ବେସର ଓ ବଡ଼ିଚୂରା ରଖିଦେଇଛି, ଖାଇନେ । ଏତକ କହି କାନ୍ଥ ଠଣାରୁ ଡିବିରି ଆଣି ଲଗାଇ ସାରିବା ପରେ ଭୂତ ଦେଖିବା ପରି ଚମକି ପଡ଼ିବ ବୋଉ । ଚିଲ୍ଲାଇବା ପରି କହିବ – ଆରେ ଡ୍ରାମା ତ ଯାଇ ରଜକୁ ହେବ, ତୁ ଏବେଠୁ ମୁଣ୍ଡରେ ପରଚୂଳ ଲଗାଇ, ଏ ଧୋତି ଓ ପଇତା ପିନ୍ଧି କ'ଣ ବାବାଜୀ ହେଲୁଣି ?

ଗଣେଶ ପ୍ରକୃତିସ୍ଥ ହେବ ଯେ ସେ ଏଯାଏଁ ତା' ମୁଣ୍ଡ ଉଇଗ୍ ଖୋଲିନି କି ଧୋତି କି ପଇତା ଓହ୍ଲାଇନି । ବୋଉକୁ କହିବ, ଡ଼େରି ହେବାରୁ ସିଧା ଚାଲି ଆସିଲି, ହଉ ତୁ ଯା' ଶୋଇବୁ । ମୁଁ ଏସବୁ ବାହାର କରି ଧୁଆଧୋଇ ହୋଇ ଖାଇନେବି ।

ଉଇଗ୍ କାଢ଼ି ଟଙ୍ଗାଇବ କାନ୍ଥରେ ମରାଯାଇଥିବା କଣ୍ଟାରେ । ଧୋତିକୁ ଭାଙ୍ଗି ସାଇଜ୍ କରି ରଖିବ ଅଲଗୁଣିରେ । କୂଅ ମୂଳକୁ ଯାଇ ଧୂଆଧୋଇ ଆସିବା ପରେ ନନ୍ଦା ତଳୁ ବାହାର କରିବ ଖାଦ୍ୟ । ଖଇଙ୍ଗା ଶୁଖୁଆ ବେସର ଦେଖି ଭାବିବ ଏ ଖାଦ୍ୟ ଖାଇଲେ ତା' ଋଷି ଆତ୍ମାଟା ମାରା ହୋଇଯିବ । ଯେମିତି ଟେକିଥିବ ସେମିତି ଆସ୍ତେ କରି ଢ଼ାଙ୍କିଦେଇ କହିବ – ସବୁ ମାୟା । ଚୁପ୍‌ଚାପ୍ ଉଠିଯାଇ ଶୋଇପଡ଼ିବ ।

ସକାଳୁ ଉଠି ବାସି ବାସନ ମାଜିବାକୁ ଯାଇ ବୋଉ ଦେଖିବ – ଖାଇବା ଜିନିଷ ସେମିତି ଅଛୁଆଁ ଥୁଆ ହୋଇଛି । ହାଃ – ପୋଡ଼ାମୁହାଁ ଯଦି କୋଉଠୁ ଖାଇକରି ଆସିଥିଲୁ କହିଲୁ ନାହିଁ କହି କହି ହଲାଇ ହଲାଇ ଉଠାଇବ ଗଣେଶକୁ ।

ନିଦରୁ ଆଖି ମଳି ମଳି ଉଠିବ ଗଣେଶ । ବୋଉ ପଚାରିବ – ଖାଇନୁ କାହିଁକି ? ଯଦି କେଉଁଠୁ ଖାଇକରି ଆସିଥିଲୁ କହିଲୁ ନାହିଁ ? ନା – ନ ଖାଇକି ଓପାସ ପେଟରେ ଶୋଇପଡ଼ିଲୁ ?

ସେତେବେଳକୁ ଗଣେଶକୁ ଲାଗୁଥିବ ତା' ଉପରୁ ଓହ୍ଲାଇ ଯାଇଛି ସବାର ହୋଇଥିବା ଋଷି ଜଣକ । ଖୁବ୍ ଧୀର ଭାବରେ କହିବ – ନା, କୋଉଠୁ ଖାଇକରି ଆସି ନ ଥିଲି, ମାତ୍ର ମୋତେ ଭଲ ଲାଗୁ ନ ଥିଲା ଖାଇଲି ନାହିଁ ।

କୋଉଠୁ ଖାଇକରି ଆସି ନ ଥିଲୁ, ଭଲ ଲାଗୁ ନଥିଲା ବୋଲି ଖାଇଲୁ ନାହିଁ। ଅଣ୍ଡିରି ପୁଅଟା ଖାଡ଼ାଖାଡ଼ା ଓପାସରେ ଶୋଇଲୁ? ଆରେ କହିଲୁ ନାହିଁ, ଉହ୍ଲେଇରେ ପିଠଉ ଥିଲା, ମୁଁ ଚକୁଳି କରି ଦେଇଥାଆନ୍ତି, ଘରେ ବି କ୍ଷୀର ଥିଲା, ଖାଡ଼ା ଓପାସରେ ଶୋଇଲୁ କାହିଁକି?

ମୁହଁ ଧୋଉ ଧୋଉ ଗଣେଶା କହିବ – ମୁଁ ଭାବୁଛି ଏ ଡ୍ରାମା ସରିବା ଯାଏଁ ମୁଁ ମାଛ, ଆଇଁଷ, ପିଆଜ, ରସୁଣ କିଛି ଖାଇବି ନାହିଁ

କ'ଣ ତୁ ସେ ବାବାଜି ରୋଲ୍ କରୁ କରୁ ସତରେ ବାବାଜି ହେବୁ ନା କ'ଣ? ତୋ ବାପ ତ ମୋତେ ଅଧା ବୟସରୁ ଦାଣ୍ଡରେ ବସାଇଲା ବଜ୍ରପାତରେ, ତୁ ବି କ'ଣ ଏ ବୁଢ଼ୀ ବୟସରେ ମୋତେ ଦାଣ୍ଡରେ ବୁଲାଇବୁ ନା କ'ଣ?

ନା ଲୋ ବୋଉ, ସେକଥା ନୁହଁ, ଋଷୀ ରୋଲ୍‌ଟିଏ କରୁଛି ତ, ଭାବୁଛି ଡ୍ରାମା ସରିବାଯାଏଁ ମାଛ ଆଇଁଷ ନ ଖାଇ ଋଷି ଋଷି ହୋଇ ରହିବି, ଯେମିତି ରୋଲ୍‌ଟିକୁ ଭଲକରି ଫୁଟାଇ ପାରିବି।

ଆଇଁଷ ନ ଖାଆ, ମୁଁ ବାଧ୍ୟ କରୁନି। ହେଲେ କହି ଦେଉଛି ତୁ ଯେମିତି ତୋ ଠାକୁର ଜେଜେଙ୍କ ପରି ନ କରୁ।

ଠାକୁର ଜେଜେ! କ'ଣ କରିଥିଲେ ସିଏ?

ମୁଁ କ'ଣ ଜାଣିଛି ସବୁ କଥା, କୁହାକୁହିରେ ଯା' କେବଳ ଶୁଣିଛି। ଥରେ କୁଆଡ଼େ ଗାଆଁରେ ଧୂନି ଜାଳୁଥିଲେ ଅଲେଖ ବାବାମାନେ। ସେ ତାଙ୍କ ସହ ଯାଇ ବସିଲେ, ମିଶିଲେ, ଅଲେଖ ନିରଞ୍ଜନଙ୍କ ମହିମା ଗାନ କଲେ। ସେମାନେ ତ ଗୋଟିଏ ଗାଆଁରେ ରାତିକରୁ ଅଧିକ ରହନ୍ତି ନାହିଁ, ଗାଆଁ ପରେ ଗାଆଁ ବୁଲନ୍ତି। ସେ ବି ବୁଲିଲେ କିଛିଦିନ ସେମାନଙ୍କ ସହ। ଶେଷକୁ ମହିମା ଦୀକ୍ଷା ନେଇଗଲେ। ଦୀକ୍ଷା ନେବା ପରେ ଅବଶ୍ୟ କିଛି ବର୍ଷ ସଂସାରେ ରହିଥିଲେ। ତୋ ଜେଜେ ପାରିଯିବାରୁ ସଂସାର ଛାଡ଼ିଦେଇ ଯାଇ ରହିଲେ ଯୋରନ୍ଦା ଗାଦିରେ। ବୁଲିଲେ ବାବାମାନଙ୍କ ସାଥିରେ। ଶେଷବେଳକୁ ସେ ବି କୁଆଡ଼େ ବକଳଧାରୀ ବାବା ବନିଯାଇଥିଲେ। ସେ ଧର୍ମରେ ମିଶିବା ପରେ, ଦୀକ୍ଷା ନେଇଗଲେ, ନା ରହେ ପରିବାର ନା ପରିଚୟ। ମଲା ପରେ ବି ଶୁଦ୍ଧି ହେବାରେ ବାରଣ। ତେଣୁ ତାଙ୍କ ମଲା ଖବର ବି ବହୁଦିନ ଯାଏ ଜାଣିପାରି ନ ଥିଲେ ତୋ ଜେଜେ। ସେହି ବଂଶର ରକ୍ତ ତ ତୋ ଦେହରେ ନା, ତୁ ଏ ମିଛମିଛିକା ଅଭିନୟକୁ ଯେମିତି ଜୀବନ୍ତ

କରିବାକୁ ଚେଷ୍ଟା କରୁଛୁ, ମୋର ତ ଭୟ ହେଲାଣି ତୁ ସେ ବାବାଫାବା ହେବା ଚକ୍କରରେ ଯେମିତି ଫସି ନ ଯାଉ ।

ଏତକ କହିଦେଇ ବୋଉ ଚାଲିଗଲା ସକାଳର ବାସି ପାଇଟି ସାରିବା ପାଇଁ । ଗଣେଶା ମନେ ମନେ ଭାବୁଥିଲା ଅଛି କି କିଛି ରକ୍ତ ସଂପର୍କ ? ଋଷି ଭୂମିକାରେ ଅବତୀର୍ଣ୍ଣ ହେବା କ୍ଷଣି କାହିଁକି ଲାଗୁଛି ଗୋଟେ ରୂପାନ୍ତର ହେବା ଭଳି, ରୂପାନ୍ତର ତ ନୁହେଁ ଘଟାନ୍ତର କହିଲେ ଠିକ୍ ହେବ । ଯଦିଓ ସେ ଜାଣୁଥିଲା ସେ ଅଭିନୟ କରୁଛି ବୋଲି, ମାତ୍ର 'ସବୁ ମାୟା' କହି ବରଦା ମୁଦ୍ରା ପ୍ରଦର୍ଶନ ବେଳେ ଲାଗୁଛି ସେ ଯେମିତି ଏକ ସତସତିକା ଋଷି । କୃପା ପ୍ରାର୍ଥୀଙ୍କ ପାଇଁ ଅନ୍ତର ଭିତରୁ ଉଠୁଛି ପ୍ରାର୍ଥନାର ସ୍ୱର ଏବଂ ଲାଗୁଛି ସେ କହୁଥିବା 'ସବୁମାୟା' ହେଉଛି ଏକ ବୀଜମନ୍ତ୍ର ସକଳ ଦୁଃଖ ନିରାକରଣର । କୃପାପାର୍ଥୀ ଯେହେତୁ ଅଭିନୟରେ ତାଙ୍କ ଦୁଃଖ ବଖାଣୁଛନ୍ତି, ସେ ହୁଏତ ତା' ଆଶୀର୍ବଚନରୁ କିଛି ଲାଭ ପାଉ ନଥାଇପାରନ୍ତି, ମାତ୍ର ତା'ଭିତରେ ତ ପୂରି ଉଠୁଛି ଏଇ ଅନିର୍ବଚନୀୟ ଆନନ୍ଦ ।

ଡ୍ରାମା ଦିନ ପାଖେଇ ଆସୁଥାଏ । ସବୁଆଡ଼େ ଚର୍ଚ୍ଚା ଥାଏ ଗଣେଶର ଅଭିନୟକୁ ନେଇ । ଅଭିନୟ ଠାରୁ ବେଶୀ ଚର୍ଚ୍ଚା ଥାଏ ଗୋଟିଏ ଚରିତ୍ର ଭିତରେ ଏକୀଭୂତ ହୋଇ ସେ କିପରି ମାଛ, ମାଂସ,ପିଆଜ,ରସୁଣ ଛାଡ଼ିଦେଇ ଏକ ଋଷିପ୍ରତିମ ସାତ୍ତ୍ୱିକ ଜୀବନଧାରାକୁ ଆପଣେଇ ନେଇଛି । ନିର୍ଦ୍ଦେଶକ ତ ତା' ପ୍ରଶଂସାରେ ଥାଆନ୍ତି ଶତମୁଖ ଏବଂ କହୁଥାଆନ୍ତି ମୋ ନାଟୁଆ ଜୀବନରେ ମୁଁ ଅନେକ ଅଭିନେତା ଦେଖିଛି, ମାତ୍ର ଚରିତ୍ର ଭିତରେ ସବାର କିମ୍ବା ଚରିତ୍ରଟିକୁ ନିଜ ଉପରେ ସବାର କରିଥିବା ଅଭିନେତା ଦେଖି ନ ଥିଲି । ଡାଇଲଗ୍ ନାହିଁ ବୋଲି ଅନେକ ମୁହଁ ମୋଡ଼ିଥିଲେ ଏ ଚରିତ୍ରକୁ । ଗଣେଶା ବି ମୁହଁ ମୋଡ଼ିଥିଲା ଏଥିରେ ଦକ୍ଷତା ଦେଖାଇ ହେବନି ବୋଲି । ଏବେ ଦେଖ, ମୁଖ୍ୟ ଚରିତ୍ରମାନଙ୍କ ଭୂମିକାକୁ ଗୌଣ କରି ତା'ର ଚର୍ଚ୍ଚା ସବୁଆଡ଼େ । ଋଷି ବେଶ ହୋଇ ସେ କେବଳ ଗୋଟେ ସତସତିକିଆ ଋଷି ପରି ଦିଶୁନି, ତା' ଭିତରୁ ଗୋଟେ ଋଷି ଜ୍ୟୋତି ନିର୍ଗତ ହେଲା ପରି ଲାଗୁଛି । ମୋର ତ ବିଶ୍ୱାସ ଏ ବର୍ଷର ଡ୍ରାମା କେବଳ ଭଲ ହେବ ନାହିଁ, ଏହା ଆମ ଗାଆଁ ପାଇଁ ଇତିହାସ ସୃଷ୍ଟି କରିବ ।

ଡ୍ରାମା ହେଲା । ନିର୍ଦ୍ଦେଶକଙ୍କ ଆଶା ଓ ବିଶ୍ୱାସ ମୁତାବକ ଡ୍ରାମାଟି ଆଶାତୀତ ସଫଳତା ପାଇଲା । ଅନ୍ୟ ଅଭିନେତାମାନଙ୍କ ଅଭିନୟକୁ ତ ପ୍ରଶଂସା କଲେ ଗାଆଁଲୋକେ, ଦେଖଣାହାରି, ମାତ୍ର ସବୁଠୁ ଅଧିକ ପ୍ରଶଂସା ପାଇଲା ଗଣେଶା । ଡ୍ରାମା

ସରିବା ପରେ ମଧ୍ୟ ସେ ମୁକୁଳି ପାରୁ ନଥିଲା ତା' ଭିତରେ ସବାର ହୋଇଥିବା ଋଷି ଚରିତ୍ରରୁ । ତାକୁ ଲାଗୁଥିଲା ସେ ଯେମିତି ରୂପାନ୍ତରିତ ହୋଇଯାଇଛି ସେହି ଋଷିକୁ । ତା' ଉପରେ କୁଢ଼େଇ ହୋଇ ପଡୁଥିବା ପ୍ରଶଂସାକୁ ସେ କେବଳ ଗୋଟିଏ ପଦରେ ପ୍ରତ୍ୟୁତ୍ତର ଦେଉଥିଲା – ସବୁ ମାୟା । ଲୋକେ ବି ଖୁସି ହେଉଥିଲେ ତା'ର ଉତ୍ତରକୁ ନାଟକୀୟ ଭାବି ।

ଧୀରେ ଧୀରେ ଗଣେଶା ଅନୁଭବ କଲା ତା'ର ଶବ୍ଦକୋଷ ସବୁ ଶୂନ୍ୟ ହୋଇ ସୀମିତ ହୋଇଯାଇଛି କେବଳ ଦୁଇଟି ଶବ୍ଦରେ – ସବୁ ମାୟା । ସେ ଚେଷ୍ଟା କରି ମଧ ଉଚ୍ଚାରି ପାରୁ ନଥିଲା ଅନ୍ୟ କିଛି ଶବ୍ଦ, ଅନ୍ୟ କିଛି ବାକ୍ୟ । ଶବ୍ଦମାନେ ତାକୁ ଲାଗିଲେ ନିରର୍ଥକ ଓ ଅସମ୍ବେଦି । ସବୁମାୟା ଶବ୍ଦଟି ଯେପରି ଆସୁଥା ଲକ୍ଷ ଲକ୍ଷ ଯୋଜନ ଦୂରତ୍ୱରେ ଥିବା ଛାୟା ପଥର ଅନ୍ଧାରୀ ଗହ୍ୱର ମଧରୁ । ତାହା ମଧ ସ୍ୱତଃସ୍ଫୂର୍ତ୍ତ ସ୍ଫୁରଣ ନ ଥିଲା, ଥିଲା ଏକ ବୈଦିକ ଋଷି କର୍ମର ଆହ୍ୱାନ ପରି । ସେ ଶବ୍ଦ ଦୁଇଟିର ଉଚ୍ଚାରଣର ସେ ମାଧ୍ୟମ ଥିଲା କେବଳ, କର୍ତ୍ତା ନ ଥିଲା କି ସ୍ରଷ୍ଟା ନ ଥିଲା ।

ଗଣେଶା ବୋଉ ପୁଅର ଏମିତି ମତିଗତି ମନେ ମନେ ପ୍ରମାଦ ଗଣିଲା । ତଥାପି ମନ ଟାଣି କରି ତାକୁ କହିଲା – ଡ୍ରାମା ତ ସରିଗଲା, ଏବେ ସେ ଭାଣ୍ଡତାମ୍‌ସା ଛାଡ୍ । ଯାଆ ବାରିକ ପାଖରେ ସେ ବାଳକୁ କାଟ୍ । ବାଳ ବଢ଼ାଇ ଅଭିନୟ କରିଦେଲେ କିଏ ଋଷି ହୋଇଯାଏନା । ମାନୁଛି ତୁ ଭଲ ଅଭିନୟ କଲୁ, ଅଭିନୟ କଲୁ ବୋଲି କ'ଣ ସତରେ ଋଷି ହୋଇଗଲୁ ନା' କ'ଣ ? ପାଗଳାମି ଛାଡ୍ – ତୋ ବାପ ତ ଥାତି ପୋତିକି ଯାଇନି ଯେ ଆମେ ମାଆ ପୁଅ ବସି ଚଳିଯିବା । ମାଡ଼ି ମାଡ଼ି ଜମି ଦି'ମାଣ, ସେଥିକୁ ଧୋଇୟା ଜମି । ବର୍ଷେ ହେଲେ ଆଉ ବର୍ଷକୁ ନାହିଁ । ପାଳ ପନିଅର କରି, ଗାଈ ଦି'ପଟ ସମ୍ଭାଳି ମୁଁ ଏଯାଏଁ ସଂସାର ଚଳାଇ ତୋତେ ପାଠ ପଢ଼ାଉଥିଲି । ତୋର ଏବେ ପରୀକ୍ଷା ଫଳ ବାହାରିବ । ଆଗକୁ ଯଦି ତୋର ପଢ଼ିବାର ଇଚ୍ଛା ମୋର ମନା ନାହିଁ, କାହିଁକି ତୁ ମନରେ ଭାବିବୁ ଯେ ବାପ ନ ଥିଲା ବୋଲି ପାଠ ପଢ଼ିପାରିଲି ନାହିଁ । ଯଦି ପଢ଼ାରେ ମନ ନାହିଁ, ଚାଷବାସ ଦେଖ୍, ସଂସାର ସମ୍ଭାଳେ । ତୁ ଏମିତି ବାଇୟା ହୋଇ ମୋ ମୁଣ୍ଡ ଆଉ ଗରମ କରନା । କ'ଣ ମୋ କଥା ତୋ ମୁଣ୍ଡରେ ପଶୁଛି ନା ନାହିଁ ?

ଗଣେଶା ଅଳ୍ପ ହସି ଉତ୍ତର ଦେଲା – ସବୁ ମାୟା ।

ହଁ – ହଁ ସବୁ ମାୟା । ତୁ ମାୟା, ମୁଁ ବି ମାୟା, ଏ ଜଗତଟା ମାୟା, ତୁ ଯେଉଁ ମାୟା କଥା କହୁଛୁ ମୁଁ ଜାଣେ, ହେଲେ ଏ ପେଟଟା ମଧ୍ୟ ଏକ ବିରାଟ ମାୟାବର୍ତ୍ତ । ସେ ପେଟର ମାୟା ପାଖରେ ଆଉ ସବୁ ମାୟା ପରା ତୁଚ୍ଛ । ସେଥିପାଇଁ ତ କହିନ୍ତି –

ଅନ୍ନ ବିହୁନେ ହଂସ ହାନି
ଯୋଗ କରିବୁ କିସ ଘେନି ।।

ଏ ଶରୀରକୁ ବଞ୍ଚେଇ ରଖିଲେ ସିନା ଯାଇ ବାବା କି ଫାବା ହେବ । ବାପ ରଖିଦେଇ ଯାଇନି ଯେ ସବୁ ମାୟା କହି ବସିରହିଲେ ପେଟର ମାୟା ତୁନି ପଡ଼ିଯିବ । ଛାଡ଼୍ ଛାଡ଼୍, ସେ ଫାର୍ଶ ଛାଡ଼ି ଏବେ ସଂସାର ଦାୟିତ୍ୱ ସମ୍ଭାଳେ । କାନ୍ଧରେ ପଡ଼ିଲେ ବଳେ ବୁଝିବୁ ସବୁ ମାୟା କହିବା ଯେତେ ସହଜ ସବୁ ମାୟାକୁ କାଟିବା ସେତିକି ସହଜ ନୁହଁ ।

ବୋଉର କ୍ରୋଧମିଶ୍ରିତ ଉପଦେଶ ଶୁଣି ଗଣେଶା ପୁନଶ୍ଚ ସ୍ମିତ ହସି କହିଲା – ସବୁ ମାୟା ।

ବୋଉ ରାଗିଯାଇ କହିଲା – ସବୁ ମାୟା ତ, ହଉ ମୁଁ ଦେଖୁଛି କେଉଁ ନିର୍ମାୟା ତୋ ପେଟ ପୂରାଉଛି ।

ବୋଉର ପ୍ରତିକ୍ରିୟା ଗଣେଶା ଉପରେ ବିଶେଷ କିଛି ପ୍ରଭାବ ପକାଇଲା ନାହିଁ, ବରଂ ସେ ଅନୁଭବ କଲା ତା' ଭିତରୁ ଗୋଟେ ଆହ୍ୱାନ ଆସୁଛି କେବଳ 'ସବୁ ମାୟା'ର ଉଚ୍ଚାରଣ ଭିତରେ ନିଜକୁ ସୀମିତ ନ କରି ସବୁ ମାୟାର ମୂଳ ମୂର୍ତ୍ତି ବ୍ରହ୍ମଙ୍କର ସନ୍ଧାନ କର । ସେ ଆହ୍ୱାନଟି ତାକୁ ବାହ୍ୟତ ଯେତିକି ନିରବ କରିଚାଲିଥିଲା ଭିତରେ ଭିତରେ ସେତିକି ଉଦ୍‌ବେଳନ ସୃଷ୍ଟି କରୁଥିଲା । ତା' ଭିତରୁ ଉଠୁଥିଲା କେବଳ ଗୋଟିଏ ପ୍ରଶ୍ନ ମାୟାର ଅନ୍ତ କେଉଁଠି ? କ୍ରମଶଃ ସେ ପ୍ରଶ୍ନଟି ତାକୁ ଅସ୍ଥିର ଓ ବିଚଳିତ କଲା । ଶେଷରେ ଦିନେ ନିଶାର୍ଦ୍ଧରେ ସେ ଅନ୍ତର୍ଦ୍ଧାନ ହୋଇଗଲା ମାୟାର ମୂଳ ଉତ୍ସର ସନ୍ଧାନରେ ।

ରାତି ପାହିବା ପରେ ମାଆ ଖୋଜିଲା ପୁଅକୁ । ପୋଖରୀପାଣି ଯାଇଥିବ ଭାବି କିଛି ସମୟ ଅପେକ୍ଷା କଲା । ଫେରିବାର ବିଳମ୍ବ ଦେଖି ଏପଟ ସେପଟ ଖୋଜାଖୋଜି କଲା । ଦିନ ବଢ଼ି ବଢ଼ି ଚାଲୁଥିଲା, ଅଥଚ ଫେରୁ ନ ଥିଲା ଗଣେଶା । ମାଆ ଅଣ୍ଡାଳିଲା ତା' କୋଠରି, ଖୋଜିଲା ଏପଟସେପଟ । କାନ୍ଥରେ ଟଙ୍ଗାଯାଇଥିଲା ପରଚୂଳ, ଅଲଗୁଣୀରେ ଥିଲା ଧୋତି । ବିଛଣାପତ୍ରକୁ ଏପଟ ସେପଟ କରୁ କରୁ ମିଳିଲା ଛୋଟ

ଏକ କାଗଜ, ଯେଉଁଥିରେ କେବଳ ବଡ଼ ବଡ଼ ଅକ୍ଷରରେ ଲେଖା ଯାଇଥିଲା - ସବୁ ମାୟା ।

କାଗଜ ଖଣ୍ଡକ ଧରି ଗାଆଁ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ସମ୍ଭାଳି ଚାଲିଥିଲା ଗଣେଶା ବୋଉ । କି ଡ୍ରାମା କଲରେ ଅଲପେଇଷା, ବାଡ଼ିପଶା । ମୋ କୁଳ ବୁଡ଼ାଇ ମୋ ପୁଅକୁ ବାବାଜି କରିଦେଲରେ ବଉଁଶବୁଡ଼ା । ଆରେ ସିଏ କ'ଣ ଗାଈ ନା ଗୋରୁ ନା ଛୋଟ ପିଲା ଅଜାଣତରେ ହଜିଯାଇଛି ଯେ ମୁଁ ମାଇପିଟା ଯାଇ ତାକୁ ଖୋଜି ଆଣିବିରେ ସତ୍ୟାନାଶିଆ ।

ଦିନ ଯାଇ ରାତି, ଦିନ ପରେ ଦିନ, ରାତି ପରେ ରାତି, ମାସ ମାସ ହୋଇ ବର୍ଷ ବର୍ଷ ବିତିଲା, ଅଥଚ ଫେରୁ ନ ଥିଲା ଗଣେଶା । ସବୁଦିନ ସମ୍ପି ସମ୍ପି ମାଆ ତା'ର ପାଗଳୀ ହୋଇଗଲା, ଘର ଛାଡ଼ି ନଈଘାଟ ବରଗଛ ମୂଳେ ବସି ରହିଲା । ଅପେକ୍ଷା କରୁଥିଲା ତା'ର ଫେରିବା ବାଟକୁ ।

ଫେରୁ ନ ଥିଲା ଗଣେଶା । ପାଗଳୀ ମାଆ ତା'ର ଚକେଇ ବସିଥିଲା । ଗାଆଁଲୋକେ ଦୟାକରି ତା' ପାଖରେ ଖାଇବା ଜିନିଷ ଥୋଇଲେ ସେ ଚାହୁଁ ନ ଥିଲା ସେସବୁକୁ । କେବଳ ଛିଗୁଲେଇ ହୋଇ କହୁଥିଲା - ସବୁ ମାୟା । ଧୀରେ ଧୀରେ ସେ ଶବ୍ଦ ଦୁଇଟା ତା' ପାଇଁ ପାଲଟିଗଲା ଭଜନରେ । କେତେବେଳେ ବିଡ଼ବିଡ଼୍ ହୋଇ ଅବା କେତେବେଳେ ଉଚ୍ଚ ସ୍ୱରରେ ସେ ଚିତ୍କାର କରୁଥିଲା - ସବୁ ମାୟା, ସବୁ ମାୟା, ସବୁ ମାୟା ।



# ମାଗିଖିଆ

ଗାଆଁର କେଉଁ ସାହିରେ ସେ ଯାଉ ନଥିଲା । ଛତିଶପାଟକର ବଡ଼ ଗାଆଁ । ଖଣ୍ଡାୟତ ସାହି, କରଣ ସାହି, ବ୍ରାହ୍ମଣ ସାହି, କୁମ୍ଭାର ସାହି, ଗୁଡ଼ିଆ ସାହି, ବାରିକ ସାହି, ପାଣ ସାହି, କଣ୍ଡରା ସାହି, ବ୍ୟତୀତ ଚାରିଘର ତନ୍ତୀ, ଦି'ଘର ବଢ଼େଇ, ଦି'ଘର କମାର ଓ ଭିନ୍ନେ ଭିନ୍ନେ ହୋଇ ଦି' ଘରକୁ ଏଇନେ ଛଅ ଘର ହୋଇଥିବା ଧୋବା ଢ଼ିଅ ଭିତରେ ସିଏ ନ ଥିଲା ।

ବଢ଼ି ପାଣିରେ ଭାସି ଯାଉଥିବା ଅମରି ଗଛଟିଏ କୂଳରେ ଲାଗି ବୁଦା ହେବା ଭଳି ଗାଆଁ ଗାଆଁ ବୁଲୁବୁଲୁ ଶେଷରେ ଅନାବାଦୀରେ ପଲାଟିଏ ମାରି ରହୁ ରହୁ ସେ ଗାଆଁର ବାସିନ୍ଦା । ନା' ତାର କିଏ ଭାଇ ବିରାଦରୀ ନା ଜ୍ଞାତି କୁଟୁମ୍ବ । ସେ ଏକା, ଏକଲା କେଳା ଏକଲବ୍ୟ ଶବର ।

ତା' ନାଆଁଟା ଏକଲବ୍ୟ ଶବର ବୋଲି ସିଏ ନିଜେ ବି ଜାଣି ପାରି ନ ଥାନ୍ତା, ଯଦି ଭୋଟର ପରିଚୟ ପତ୍ର କରୁଥିବା ମାଷ୍ଟ୍ରବାବୁ ସେହି ନାଆଁଟା ଦରଜ କରି ନ ଥାନ୍ତେ ।

ମାଷ୍ଟ୍ର ପଚାରିଲେ - ତୋ' ନାଆଁ ?

ବେଡ଼ା - ବେଡ଼ା ଆଜ୍ଞା ।

ଆବେ ସେଇଟା ତୋ ଡାକ ନାଆଁ ସିନା, ଭଲ ନାଆଁ କ'ଣ ?

ଆମର ଆଉ ଗୋଟେ ଭଲ ନାଆଁ କ'ଣ ବାବୁ, ଆମ ଡାକ ନାଆଁ ଯାହା ଭଲ ନାଆଁ ତାହା । ଆମେ କୋଉ ସ୍କୁଲକୁ ଯାଇଛୁ ଯେ ପାଠ ପଢ଼ିବା ପାଇଁ ଆମର ଗୋଟେ ଭଲ ନାଆଁ ରହିବ ।

ହଉ ହେଲା ତୋତେ ଗୋଟେ ଭଲ ନାଆଁ ଆଜିଠାରୁ ଦେଉଛି - ଏକଲବ୍ୟ । ଏକଲବ୍ୟ ଶବର । ତୋ ନାଆଁ ତ ହୋଇଗଲା, ଏବେ ତୋ ସ୍ତ୍ରୀ ନାଆଁ କହ ।

ତା'ର ବି କୋଉ ଭଲ ନାଆଁ ଅଛି ଯେ । ତା' କହିବା ଅନୁଯାୟୀ ସେ ଯେଉଁ ଦିନ ଜନମ ହେଲା ତା' ବାପ କୁଆଡ଼େ ଗୋଟେ କୋଚିଲା ଚଢ଼େଇ ଶିକାର କରିଥିଲା । ସେଥିପାଇଁ ଶ୍ରଦ୍ଧାରେ ତା' ନାଆଁ ରଖିଦେଇଥିଲା କୋଚିଲା, ଯଦି ଏ ନାଆଁଟା ତମର ପସନ୍ଦ ହେଉନି ତେବେ ତା'ର ବି ଗୋଟେ ଭଲ ନାଆଁ ଲେଖାଇଦିଅ ।

ମହାଭାରତର ସେ ଏକଲବ୍ୟ ବାହା ହୋଇଥିଲା କି ନାହିଁ, ଯଦି ବାହା ହୋଇଥିଲା ତା' ସ୍ତ୍ରୀ ନାଆଁ କ'ଣ ଥିଲା ଜଣାନଥିଲା ମାଷ୍ଟ୍ରେଙ୍କୁ । ସେ କିଛି ସମୟ ମନେମନେ ଗୁରେଇ ତୁରେଇ ହୋଇ କହିଲେ କୋଚିଲା ଖାସ୍ ସେମିତି ଖରାପ ନାଆଁ ନୁହେଁ । ହଉ ତାଙ୍କର ପୂରା ନାଆଁ ଲେଖି ଦେଉଛି କୋଚିଲା ବାଇ ଶବର । ବାସ୍ ସେବେଠାରୁ ସେ ଦୁହେଁ ହୋଇଗଲେ ଏକଲବ୍ୟ ଶବର ଓ କୋଚିଲା ବାଇ ଶବର ।

କୋଚିଲା କାଚ ବିକେ, ବୁଲେ ଗାଆଁକୁ ଗାଆଁ । ଏକଲବ୍ୟ ନଳ ଯୋଖି ଚଢ଼େଇ ମାରେ, ବଣରୁ ଗୋଧି, ସାପ ଧରିବା ସହ ନଈ, ଗଡ଼ିଆ ପୋଖରୀରୁ କଙ୍କଡ଼ା, କଛିମ, ଗେଣ୍ଡା, କୋଚିଆ ଧରେ । ଆଖପାଖର ଯୋଗୀ ଓ ବୈଷ୍ଣବମାନଙ୍କୁ ତାଙ୍କ ଖଞ୍ଜଣୀ ଓ କେନ୍ଦରା ପାଇଁ ଗୋଧି ଓ ସାପଚମଡ଼ା ଯୋଗାଇ ବେଶ୍ ଭଲ ଦି' ପଇସା କମାଏ । ମାମୁ ମାଇଁ ଦି' ପ୍ରାଣୀଙ୍କର ପେଟପୋଷା ସାଙ୍ଗକୁ ଦି' ପଇସା ସଞ୍ଚୟ କରି କରି ପଲାରୁ ଏବେ ଏବେ ଦି' ବଖରିଆ ଚାଳ ଛପର ଘରଟିଏ କରିଛି ।

ଶ୍ରାଦ୍ଧ କିମ୍ବା ମହାଳୟାରେ କେଳାପତ୍ର ପିଣ୍ଡାରେ ପଡ଼ିଲେ ଶୁଭ ବୋଲି ଗାଆଁ ଲୋକଙ୍କର ଡକରାଥାଏ ଏକଲବ୍ୟକୁ । ଭୋଜନ ସହ କେଳାଦକ୍ଷିଣା ମଧ୍ୟ ମିଳେ କିଛି କିଛି । ଏତେ ବଡ଼ ଗାଆଁ – ମାସରେ ପ୍ରାୟ ପାଞ୍ଚ ସାତ ଘରର ଡାକରା ମିଳେ ତାକୁ । ପର ଘରେ ସୁଆଦିଆ ଖାଇବା ଖାଇ ଖାଇ ଧୀରେ ଧୀରେ ବଦଳି ଯାଉଥାଏ ଏକଲବ୍ୟର ଖାଦ୍ୟ ରଚି । ତାକୁ କେଳାଘରର ଢମଣା ସାପର ଝୋଳ, ଗୋଧିର ପୋଡ଼ା ମାଉଁସ କି ଗେଣ୍ଡା, କଛିମ, କୋଚିଆ ମାଉଁସ ଆଉ ଲାଗୁ ନଥାଏ ଭଲ । ଗାଆଁରେ କାହା ଘରେ ଭୋଜିଭାତ ହେଲେ ସେ ଡେରା ପକାଇଦିଏ ସେଠାରେ । ତା'ର ସଉକଥାଏ ବାହାଘର କି ମଲାକାମର ଭୋଜି, ଯେଉଁଠି ମାଉଁସ କି ମାଛ ମିଳେ ଖାଇବାକୁ ।

ଏକଲବ୍ୟକୁ ଭୋଜିଭାତରେ ବଳେ ହାଜିର ଦେଖି କ୍ରମଶଃ ଲୋକେ ଆଉ ତାକୁ ନିମନ୍ତ୍ରଣ କରିବା ଯୋଗ୍ୟ ବିଚାରିଲେ ନାହିଁ । ତା'ର ଏମିତି ବଳେ ପଶି ପର ଭୋଜିରେ ମେହେମାନ ହେବା ଓ କୋଣଠେସା ହୋଇ ଖାଇ କରି ଆସିବାକୁ ପସନ୍ଦ କରେନା କୋଚିଲା । ସେ ବିରକ୍ତ ହୁଏ କେଳା ଜାତିର ମାନ ଇଜ୍ଜତ ବୁଡ଼ାଉଛି

ବୋଲି । ଏକଲବ୍ୟ ତାକୁ ମିଛରେ କହିଦିଏ, ବାଟରେ ଦେଖି କହିଥିଲେ ବୋଲି ମୁଁ ଯାଉଛି ଲୋ ବଳେ ପଶି କାହିଁକି ଯିବି ?

ଏକଲବ୍ୟ ଭାବେ ସେ ଏକାଏକା ଖାଇ ଆସୁଛି ବୋଲି ବୋଧେ ରାଗୁଛି କୋଚିଲା । ପାଟି ସୁଆଦକୁ କାହାର ବା ଲୋଭ ନାହିଁ ? ଥରେ ଗୋଟେ ଭୋଜିରେ ଖାଇ ସାରିବା ପରେ ପରଷାଳୀଙ୍କୁ କହି କୋଚିଲା ପାଇଁ ଧରି ଆସିଲା ଭାତ ଓ ମାଉଁସ ଝୋଳ । ଘରେ ପହଞ୍ଚି ବଡ଼ ସରାଗରେ କୋଚିଲାକୁ କହିଲା, "ଦେଖ୍, ଦେଖ୍ ତୋ' ପାଇଁ ମୁଁ ଆଜି କ'ଣ ଆଣିଛି । ଏ ଖାଦ୍ୟ ଥରେ ତୋ ପାଟିରେ ବାଜିଲେ ତୋତେ ସେ ଗୋଧି ମାଉଁସ କି ତାମ୍ପଡ଼ା ଶୁଖୁଆ କେମିତି ଅରୁଚି ଲାଗିବ ଦେଖିବୁ ।"

ରାଗିକରି ଅଗ୍ନିଶର୍ମା ହୋଇଗଲା କୋଚିଲା । କହିଲା – ତୁ ବଳେପଶି ମାଗିଖିଆ ହୋଇଗଲୁ ବୋଲି ମୋତେ କ'ଣ ସେଇୟା ଭାବିଲୁ କି ? ମୋ ତାମ୍ପଡ଼ା ଶୁଖିଆ ପଖାଳ ଭାତ ମୋତେ ଭଲ, ତୋର ଏ ମାଗିକରି ଆଣିଥିବା ବାଲାମୀ ଚାଉଳ ଭାତ ଓ ମାଉଁସ ତରକାରି ଅପେକ୍ଷା । ନିଜେ ତ ମାଗିଖିଆ ହେଲୁ ହେଲୁ, ଏବେ ମାଇପକୁ ବି ମାଗିଖିଆଣୀ କରିବାକୁ ବସିଲୁଣି ? ଦେଖ୍ – ତୋତେ ଆଜିଠାରୁ ସାବଧାନ କରି ଦେଉଛି ଆଉ ଯେମିତି କାହା ଦୁଆରେ ଯାଇ ବଳେ ପଶି ପତର ନ ପକାଉ । ପୁଣି ଯଦି କେବେ କାହା ଘରକୁ ବଳେ ପଶି ମାଗି ଖାଇବାକୁ ଯାଇଥାଉ, ସେଦିନ ତୋ'ର ଦିନେକୁ ମୋର ଦିନେ ।

ଭଲରୁ ଏମିତି ଭେଲ ହେବ ବୋଲି ଭାବି ନଥିଲା ଏକଲବ୍ୟ । ଭାବିଥିଲା ଢମଣା, ଗୋଧି ଓ ଚଢ଼େଇ ମାଉଁସ ଖାଇଖାଇ ପାଟି ଛତିଆ ମାରିଯାଇଥିବ କୋଚିଲାର । ଖାସି ମାଉଁସର ତରକାରି, ସିଏ ପୁଣି ଅଦା, ପିଆଜ, ରସୁଣର ମସଲା ଓ ଜହଜହ ତେଲରେ ରନ୍ଧା, ତାକୁ ଦେଖି କେବଳ ଖୁସି ତ ହେବନି କୋଚିଲା ବରଂ ସୋହାଗରେ କହିବ, କେଡ଼େ ଦିବ୍ୟ ଜିନିଷଟିଏ ଏ ପାଟି ନ ଚାଖିଲାରେ । ମାତ୍ର ଦେଖ, ଏମିତି ଦିବ୍ୟ ଭୋଜନ ଆଗରେ ଆଉଥାଉ ସେ ମାନ କରୁଛି ମିଛ ମହତ ପାଇଁ । ମାନୁଛି ମୁଁ ବଳେ ପଶି ଭୋଜିଭାତ ଖାଇବାକୁ ଯାଉଛି । ହେଲେ କ'ଣ କରିବି ଯେ, ଆମର କୋଉ ଭାଇ ବିରାଦରୀ, ସାହିଭାଇ ଏ ଗାଆଁରେ ଅଛନ୍ତି ଯେ ଆମକୁ କିଏ ଭୋଜିଭାତ ହେଲେ ଗଣନାକୁ ନେବ ନା ନିମନ୍ତ କରିବ ? ଆମର ବା କାହା ଉପରେ କି ଅଧିକାରଯାଏ ଯେ ନ ଡାକୁଛନ୍ତି ବୋଲି ଅଭିମାନ କରି ହେବ । ମୁହଁ ଚୁଆଁ ଚୁଇଁ ହେଉ ଅବା ହାବୁଡ଼ରେ ପଡ଼ିଗଲେ ଅଗିରାକୁ ବାଇଗଣ ଫୋପାଡ଼ିଲା ପରି କିଏ

କଦବା ଭୋଜିକୁ ଆସିବାକୁ କହିଦିଏ, ସେଇଟା କ'ଣ ନିମନ୍ତରେ ଗଣା ? ନିମନ୍ତରେ ଯାଆ ବା ବଳେ ପଶି ଯାଆ, ସବୁ ଭୋଜିରେ ତ ସେଇ ଏକା କଥା । କୋଣଠେସା ହୋଇ ବସିଥାଆ ଅଜାଗାରେ, ତାଙ୍କର ଭାଇବନ୍ଧୁ ଖାଇବେ, ଭଦ୍ରଲୋକ ଖାଇବେ, ସାମନ୍ତ ଖାଇବେ, ସାହି ଓ ଗାଁ ଲୋକ ଖାଇବେ, ଶେଷକୁ ପାଳି ପଡ଼ିବ ମୋର, କେବଳ ମୋର ନୁହଁ, ମୋ ପରି ଆଉ କେତେକ ବଳେ ପଶାଙ୍କର । ଅଳିଆ ଝାଟେଇବା ପରି ଆମକୁ ଆଡ଼େଇ ନେବେ ଗୋଟେ ଜଣକୁ । ଆମ ବେଳକୁ କେବେ କେବେ କେଂଚେଥାଏ ତ କେବେ କେବେ ମେଞ୍ଚେ । ଯାହାବି ମିଳେ ସେଥିରେ ଆମର ସନ୍ତୋଷ ।

ଆଜି କ'ଣ ଗୋଟେ ଅପରପକ୍ଷ ଲଗ୍ନ ଥିଲା । ଚାରିଆଡ଼େ ବାହାଘର ଭୋଜି ଭାତ । ଯେତେ ଲୋକଙ୍କୁ ନିମନ୍ତ ହୋଇଥିଲା ଅଧା ଆସିନଥିଲେ ସେଥିପାଇଁ ଢେର ବଳିପଡ଼ିଲା । ନଷ୍ଟ କାହିଁକି କରିବେ ବୋଲି ଢାଳି ଚାଲିଲେ ଆମ ପତରରେ । ଏତେ ମାଉଁସ ଢାଳୁ ଥିବାର ଦେଖି ମୋର ମନେ ପଡ଼ିଲା କୋଚିଳାର କଥା । ଭାବିଲି ମିଳୁଛି ତ, ନେଇଯାଏ, ସିଏ ବି ଟିକେ ଚାଖୁ ଚାଖୁ ଖାସି ମାଉଁସର ସ୍ୱାଦ । ହେଲେ ଦେଖ, ସିଏ କିପରି ଛପର ଫଟାଇ ତେରି ମେରି ହେଉଛି ।

ଆକଣ୍ଠ ମାଂସ ଗ୍ରାସ କରିଥିବାରୁ ଏକଲବ୍ୟକୁ ଖାଲି କୁଟି ଚାଲିଥିଲା ହାଇ ଉପରେ ହାଇ । ତାକୁ ଡାକୁଥିଲା ବିଛଣା, କୋଚିଳାର ରାଗ ଶାନ୍ତି କରି ଶୋଇବା ପାଇଁ, ସେ ତାକୁ ସାକୁଲେଇ ହୋଇ କହିଲା, ହଉ ହେଲା, ତୋ କଥା ରହିବ । ମୁଁ ଆଉ ବିନା ନିମନ୍ତରେ କାହା ଦୁଆରେ ପତର ପକାଇବି ନାହିଁ । ହେଲେ ଆଜି ତ ଆଣି ସାରିଛି, ଖାଇ ଦେଏ ଲୋ । ଥରେ ଏ ସୁଆଦ ପାଟିରେ ବାଜିଲେ, ତୁ ବଳେ ବୁଝିଯିବୁ ମୁଁ କାହିଁକି ବେନିମନ୍ତ ଚାଲିଯାଏ ବୋଲି ।

ଚେକା ମାରି ଶୋଇଥିବା ଗୋଖର ପରି ଫଅଁ କରି କୋଚିଳା କହିଲା, ଦୂର.. ରଖ ତୋର ସେ ସୁଆଦିଆ ତିଅଣ । ମୋ ପାଖକୁ ଆଣନା, କହି ଦେଉଛି ତୋତେ । ଫିଙ୍ଗି ଦେବି ବଣକୁ । ତୋର ଯଦି ହଜମ ହୋଇଗଲାଣି କି ତୋ' ପେଟରେ ଆଉ ଜାଗା ଅଛି ଗେଫ୍ ତାକୁ । ମୋର ସେ ପାଟି ସୁଆଦିଆ ଖାଦ୍ୟ ଦରକାର ନାହିଁ ।

ଆଉ ବାଧ କରିନଥିଲା ଏକଲବ୍ୟ । ରାଗରେ ଫଅଁଫଅଁ ହୋଇ ନ ଖାଇ ଶୋଇପଡ଼ିଲା କୋଚିଳା । ତା' ପାଖରେ ଗୁଞ୍ଜି ହୋଇ ଶୋଇବା ବେଳେ ତାକୁ ଶୁଣାଇ ଶୁଣାଇ ଏକଲବ୍ୟ କହିଲା – ତୁ ମନା କଲୁ, ବାସ୍ ମୁଁ ଆଉ ଯିବିନି । ଆଗରୁ

ତ କେବେ ମନା କରିନଥିଲୁ ନା, ଚାଲି ଯାଉଥିଲି । ସତରେ କ'ଣ ମୋ ପେଟ ଅପୂରା ପାଇଁ ମୁଁ ଯାଉଥିଲି । ପେଟ ଅପୂରା କାହିଁକି ରହିବ ? କେଳା ପାଇଁ ଅଭକ୍ଷ କେଉଁଟା ଯେ ? କେବଳ ଯା' ପାଟି ସୁଆଦର ଲୋଭ । ତୁ ମନା କଲୁ, ତୋ ମନାଠାରୁ ଲୋଭଟା କ'ଣ ଏତେ ବଡ଼ ମୋ ପାଇଁ । ଦେଖିବୁ, ଆଉ ଯଦି କେବେ ଯାଇଛି ଯାଇଁ କହିବୁ । ସୁ ଗୋରୁଙ୍କୁ ଛାଟେ – ସୁ ମଣିଷଙ୍କୁ ପଦେ । ସେହି ଗୋଟିଏ ପଦରେ ଏକଲବ୍ୟ ଛାଡ଼ି ଦେଲା ପ୍ରକୃତି । ମନ ଦେଲା ନିଜ ବେଉସାରେ । ଧରିଲା ଗୋଧି ଓ ସାପ । ଲାଖ ଯୋଖି ମାରିଲା ଚଢ଼େଇ, ସାଇତିଲା ଗୋଧି ଓ ସାପର ଚମଡ଼ାକୁ ସାନ୍ଧି କରି । ନଳବଣର ନଳ କାଟି ବନାଇଲା ନୂଆ ଲାଖନଳ । ଭଳିକି ଭଳି ମାଂସକୁ ଶୁଖାଇ ଶୁଖୁଆ କଲା, ସାଇତିଲା ବିଷମ ଦିନମାନଙ୍କ ପାଇଁ ।

ଧୀରେ ଧୀରେ ସେ ଭୁଲିଗଲା ଭୋଜିଭାତର ମାଉଁସ ଝୋଳର ସ୍ୱାଦ । ତାକୁ ଭଲ ଲାଗିଲା ତାମ୍ପଡ଼ା ଶୁଖୁଆ, ଭଲ ଲାଗିଲା ଗୋଧି ଓ ସାପର ମାଂସ । କାଳେ ମନଟାଣି ହୋଇଯିବ ଭୋଜିଭାତ ଆଡ଼େ, ସେଥିପାଇଁ ଗାଆଁରେ ବାହାଘର କିମ୍ଵା ଭୋଜିଭାତ ହେବା ଦିନ ସେ ପଳାଏ ଦୂରକୁ – ଗାଆଁଠାରୁ ଦୂରକୁ । ବୁଲେ ବଣରେ, ବୁଲେ ନଈ ନାଳରେ, ବୁଲେ ବିଲରେ । ମନ ଓ ଜିଭକୁ କୋଲପ ଦେଇ ନିଘା କରେ ବଗ, ଚଢ଼େଇ କିମ୍ବା କୁମ୍ଭାଟୁଆଙ୍କ ଉପରେ । ନିଘା ବି କରେ ଗୋଧି ଗାତକୁ କି ସାପ ଗାତକୁ । ବୁଲିବୁଲି ଗୋଡ଼ ଥକିଗଲା ପରେ ଫେରେ ଘରକୁ । ସଅଁପିଦିଏ ଅର୍ଜିତ ସମ୍ପତ୍ତିକୁ କୋଚିଲା ପାଖରେ ।

ଡିବିରି ଜାଳି ରୋଷେଇ କରେ କୋଚିଲା । ଡାହୁକର ପର ଛାଲେ ଏକଲବ୍ୟ । ପର ଛାଲୁ ଛାଲୁ କଥା ବୁଲାଇ କୋଚିଲାକୁ ପଚାରେ – "ଆଜି କ'ଣ ସଇଁ ଘରର ବର ଆସୁଛି କି ?"

କଥା ଫୋପାଡ଼ିଲା ପରି କୋଚିଲା କହେ – "ମଲା, କାହାର ବର ଆସୁଛି କି କ'ଣ ହେଉଛି ମୁଁ କେମିତି ଜାଣିବି ?"

ନାଇଁ, ମୁଁ ଭାବୁଥିଲି ତୋତେ କାଚ ପିନ୍ଧାଣୀ ପାଇଁ ଡାକିଥିବେ ପରା ।

ମୋର କାଚ ପିନ୍ଧାଣୀକୁ ଯିବା କଥା ଭାବୁଥିଲୁ ନା' ତୋର ଓଲେଇ ପ୍ରକୃତି ପୁଣି ବାହାରିଲାଣି ?

ମୁଁ ପା' ସେବେଠୁ ଛି କରିଦେଇଛି ସେ କଥା । ହେଲେ ମୁଁ ଏବେ ଗୋଟିଏ କଥା ବୁଝିପାରୁନି । ଏ ଗାଆଁରେ ଘର କରି ରହିବା ଦିନଠାରୁ କିଏ ନା କିଏ ଭୋଜିଭାତକୁ

ଡାକୁଥିଲେ । କେଳା ପତର ପିଣ୍ଡାରେ ପଡ଼ିଲେ ପୁଣ୍ୟ ହୁଏ ବୋଲି ଭାବୁଥିଲେ, ହେଲେ ଏବେ ତ ଆଉ କେହି ଡାକୁ ନାହାନ୍ତି ?

ଡାକନ୍ତେ କେମିତି, କେଳା ଯଦି ବଳେ ପଶା ମାଗିଖିଆ ହୋଇଗଲା, ତାକୁ ଭୋଜନୀ ଦେଲେ ପୁଣ୍ୟ ବୋଲି ଲୋକେ କାହିଁକି ବିଚାରିବେ ? ଏ ଗାଆଁରେ ତ ଏବେ ସଭିଏଁ ଧରି ନେଇଛନ୍ତି ଯେ ତୋତେ ନ ଡାକିଲେ ବି ତୁ ଯାଇ ବଳେ ପହଞ୍ଚିବୁ ବୋଲି ।

ମୁଁ ତ ଆଉ ଏବେ ଯାଉନି, ସେମାନେ କ'ଣ ଜାଣିପାରୁନାହାନ୍ତି ?

ହଁ, ତୁତ ସମସ୍ତଙ୍କର ଗୁଆଦିଆ ବନ୍ଧୁ ଥିଲୁ, ଭାରବେଭାର ପଠାଉଥିଲୁ, ତୁ ନ ଗଲୁ ବୋଲି ତୋତେ ଖୋଜା ପଡ଼ନ୍ତାନି ?

ନିଜ ମନକୁ ବୁଝାଇ ଏକଲବ୍ୟ କହେ ହଁ, ଆମର ସାହି ନା ଭାଇ, ଆମର ଏକଲା ଘର, ଏକଣା ଘର । ଆମେ ଆମ ଦୁଃଖରେ, ସୁଖରେ । ଥରେ ଛି' କରି ଦେଇଛି ମାନେ ନ ଡାକିବା ଯାଏଁ କାହାରି ପିଣ୍ଡା ମାଡ଼ିବିନି ।

ସତକୁ ସତ ସେବେଠୁଁ ଆଉ କାହାରି ପିଣ୍ଡାରେ ପତର ପକାଇ ନ ଥିଲା ଏକଲବ୍ୟ । ଭୋଜିର ନାନା ପ୍ରକାର ଖାଦ୍ୟ ସାଙ୍ଗକୁ ମିଠା, କ୍ଷୀରୀ ଓ ଖାସି କି କୁକୁଡ଼ା ମାଂସର ସ୍ୱାଦକୁ ସେ ଭୁଲି ଭୁଲି ଯାଉଥିବାବେଳେ ଦିନେ ସକାଳୁ ସକାଳୁ ମକରା ଆସି ଡାକ ଦେଲା ତା' ଦୁଆରେ । ତା' ଡାକ ଶୁଣି ଏକଲବ୍ୟ ନଇଁ ନଇଁ ଆସି ତା' ଚାଳ ତଳୁ ମୁଣ୍ଡ ଟେକିଛି କି ନାହିଁ ମକରା ପଚାରିଲା – ତମର ତ ଭୋଟର କାର୍ଡ ହୋଇଛି ?

ତା' ପ୍ରଶ୍ନ ବୁଝି କିଛି ଉତ୍ତର ଦେବା ଆଗରୁ ମକରା ପୁଣି ପଚାରିଲା, ମାଷ୍ଟ୍ରମାନେ ତମର ଫଟୋ ଉଠାଇ କାର୍ଡ କରିଛନ୍ତି ନା' ନାହିଁ ?

ମୁଣ୍ଡ ହଲାଇ ସମ୍ମତି ଜଣାଇଲା ଏକଲବ୍ୟ ।

ତା' ହେଲେ ତ ତମେ ଭୋଟର, ହଉ ଶୁଣ ମନ୍ତ୍ରୀଙ୍କ ପୁଅ ବାହାଘର । ସମସ୍ତ ଭୋଟରଙ୍କୁ ସେ ନିମନ୍ତ କରିଛନ୍ତି ଯିବା ପାଇଁ ।

ଏଇ ଗାଆଁରେ ସିନା ଭୋଜିଭାତକୁ ମୁଁ ଚାଲି ଯାଉଥିଲି, ମନ୍ତ୍ରୀ କିଏ, ତାଙ୍କ ଘର କେଉଁଠି ମୁଁ ଜାଣେନା, ତାଙ୍କ ଭୋଜିକୁ ମୁଁ ବା କାହିଁକି ଯିବି ?

ଯିବୁନି ! ଇଏ କି କଥା ? ମନ୍ତ୍ରୀ ପରା ଗାଆଁଓ୍ୱାରୀ ସବୁ କର୍ମୀଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ତାଙ୍କ ନିର୍ବାଚନ ମଣ୍ଡଳୀର ସବୁ ଭୋଟରଙ୍କୁ ଭୋଜିକୁ ନେବା ପାଇଁ ?

ହଅଁ ଯେ ଭାଇ, ତମେମାନେ ଯାଅ ଏତେ ଦୂର ଭୁବନେଶ୍ୱର ଯିବାକୁ ମୋର କ'ଣ ବଳ ଅଛି ।

ଆରେ ନାଇ, ମନ୍ତ୍ରୀ ସିନା ଭୁବନେଶ୍ୱରରେ ରହନ୍ତି, ବାହାଘର ସିନା କଲେ ଭୁବନେଶ୍ୱରରେ, ହେଲେ ଭୋଜି ଦେଉଛନ୍ତି ତାଙ୍କ ଗାଆଁରେ ।

ହେଲା ଯେ, ମୁଁ କ'ଣ ତାଙ୍କୁ ଜାଣେ, ନା' ତାଙ୍କ ଗାଆଁ କୋଉଟା ଜାଣିଛି । କେମିତି ବା ଯିବି ତାଙ୍କ ଭୋଜିକୁ ?

ତମକୁ କ'ଣ ପଇସା ଖର୍ଚ୍ଚ କରି ଯିବାକୁ ପଡୁଛି ନା' କ'ଣ ? ଟ୍ରକ୍, ଟ୍ରାକ୍ଟର, ଟ୍ରେକର ଲାଗିଛି ଯାହାକୁ ଯେତେ । ତମକୁ ଯେଉଁଥିରେ ସୁବିଧା ହେବ ଯିବ । ଆରେ ଆଜିକାଲିର କେଉଁ ମନ୍ତ୍ରୀ ଆଉ ଗାଆଁରେ ଭୋଜିଭାତ ଦେଉଛନ୍ତି ? ଇଏ ସିନା ତାଙ୍କ ଅଞ୍ଚଳକୁ ଏବଂ ଭୋଟରମାନଙ୍କୁ ଭଲ ପାଆନ୍ତି ବୋଲି ଏଠି ଭୋଜିଭାତ ଦେବାକୁ ମନସ୍ଥ କରିଛନ୍ତି, ନଚେତ୍ ତାଙ୍କୁ କ'ଣ ସହରର ବଡ଼ ବଡ଼ ହୋଟେଲ ଗନ୍ଧାଉଥିଲା ।

ଆମର ମନ୍ତ୍ରୀ କିଏ କି ମକରା ବାବୁ ?

ଆରେ ହେ କେଳାଭାଇ, ତମେ କେଉଁ ରାଇଜରେ ଅଛ କି ହୋ ? ଆଗରୁ ସିନା ବୁଲୁଥିଲ ଯାଯାବର ହୋଇ, ଏବେ ପା' ଘର କଲଣି, ଭୋଟରଲିଷ୍ଟରେ ତମ ନାଆଁ ଉଠିଲାଣି, ତମେ ଏଯାଏଁ ଆମ ମନ୍ତ୍ରୀଙ୍କୁ ଚିହ୍ନିନ ? ସମସ୍ତେ ପା' ଜାଣନ୍ତି ସେ ଏ ଅଞ୍ଚଳର ମାଆ – ପ୍ରତିମା ମାଆ । ସେଇଥିପାଇଁ ତ ସିଏ ମାଆ ଓ ପିଲାଛୁଆ ବିଭାଗର ମନ୍ତ୍ରୀ । ତାଙ୍କର ପୁଅ ବାହାଘର । ଏ ଅଞ୍ଚଳର ସମସ୍ତେ ତ ତାଙ୍କର ପୁଅ ଝିଅ ପରି । ସେମାନଙ୍କୁ ଯଦି ଭୋଜିରେ ସାମିଲ ନକରିବେ ତାଙ୍କ ମନ କଷ୍ଟ ହେବନି ? ସେଇଥିପାଇଁ ତ ତାଙ୍କ ନିର୍ବାଚନମଣ୍ଡଳୀର ପ୍ରତ୍ୟେକ ଗାଆଁର ଖାସ୍ କର୍ମୀଙ୍କୁ ଡକାଇ ନିର୍ଦ୍ଦେଶ ଦେଇଛନ୍ତି ସବୁ ଭୋଟରଙ୍କୁ ଭୋଜିକୁ ନେବା ପାଇଁ । ବୁଝିଲ ମୋତେ ସମସ୍ତଙ୍କୁ ଯାଇ କହିବାକୁ ପଡିବ, ମୁଁ ଯଦି ତମରି ପାଖରେ ଏତେ ସମୟ ନେବି, ତେବେ ସାରା ଗାଆଁଟା କ'ଣ ବୁଲି ପାରିବି ? ହଁ – ମନେରଖ, କାଲି ଦିନ ତମାମ୍ ଗାଡ଼ି ବୁଲିବ ଗାଆଁ ସାରା, ତମକୁ ଯେତେବେଳେ ସୁବିଧା ହେବ ଯିବ ।

ଭୋଜି କ'ଣ ଦିନମାନ ଚାଲିବ କି ?

ଦିନମାନ୍ କ'ଣ – ଇଏ ଭୋଜି ଦିନରାତି ହୋଇ ଚାଲିବ । ଇଏ କ'ଣ ତମ ଆମ ଘରର ଭୋଜିଭାତ ନା' କ'ଣ, ପାଆଁଶ କି ହଜାରେ ଲୋକ ଖାଇବେ ? କେତେ ଖାସି ଆସିଛି ଆଉ କେଉଁଠୁ ଆସିଛି ଜାଣିଛ ? ଜଙ୍ଗଲର ଲଟାପତ୍ର ଖିଆ ଖାସି ପାଞ୍ଚଟା ଟ୍ରକ ଭର୍ତ୍ତି

ହୋଇ ଆସିଛି କନ୍ଧମାଳରୁ । ଭୋଜି ପାଇଁ ଯେତିକି ଟେଣ୍ଟ ଲଗା ଯାଇଛି ମାନ କଟକର ବାଲିଯାତରା । ସେଠିକୁ ଗଲେ ବଳେ ଦେଖିବ । ଆରେ ଏମିତି ବଡ଼ବଡ଼ିଆଙ୍କ ଭୋଜିକୁ ଆମ ତମକୁ କିଏ ଡାକୁଥିଲା ନା' କ'ଣ, ଇଏ ଅଲଗା ଲୋକ । ମନ୍ତ୍ରୀ ହେଲେ ବି ମାଟିସହ ଯୋଡ଼ି ହୋଇ ରହିଛନ୍ତି । ତାଙ୍କର ଭୋଟର ଖୁସି ହେଲେ ସିଏ ଖୁସି । ହଁ, ମନେରଖ, ଏକା ନୁହଁ ତୁମେ ଦି'ଜଣ ଯାକ ଯିବ । ମୁଁ ଚାଲିଲି ।

ଚାଲିଗଲା ମକରା । କୋଷବଦ୍ଧ ପ୍ରଜାପତି କୋଷରୁ ବାହାରି ଉଡ଼ିବା ପରି ଉଡ଼ିଲା ଏକଲବ୍ୟର ମନ । ଘର ଭିତରକୁ ନଇଁ ପଶିଲା, କୋଚିଲା ଏକଥା ଜାଣିଲା କି ନାହିଁ ବୁଝିବା ପାଇଁ । ଏକଲବ୍ୟ କିଛି କହିବା ପୂର୍ବରୁ କୋଚିଲା କହିଲା, "ମୁଁ କହିଥିଲି ନା ବଳେ ପଶି ମାଗିଖିଆ ନ ହେଲେ ଲୋକେ ଡାକି ଆସିବେ ବୋଲି ! ଦେଖିଲୁ ତ ଆଜି, କେତେ ବଡ଼ ଘରୁ ନିମନ୍ତ ଆସିଲା ?"

ଏଥର କେବଳ ମୋତେ ଡକରା ହୋଇନି ଲୋ, ତୋତେ ବି, ତୁ ବି ଯିବୁ ।

ଛେ, ମୁଁ ମାଇପି ଲୋକଟା ଭୋଜି ଖାଇବାକୁ ଗୋଟେ ଯିବି କ'ଣ ! ତାଙ୍କର ଶ୍ରଦ୍ଧା ଦେଲା, ସେ ଡାକି ଦେଲେ, ତା' ବୋଲି କ'ଣ ଆମେ ମରଦ ମାଇପ ମିଶି ଚାଲିଯିବା ? କେବେ ଦେଖିଛୁ ଏ ଗାଆଁରେ ମାଇପି ଲୋକ ଭୋଜି ଖାଇଯିବାର ?

ଆଲୋ ଇଏ କ'ଣ ଗାଆଁ ଭୋଜି, ଇଏ ପା ମନ୍ତ୍ରୀଙ୍କ ଭୋଜି, ତୁ ଯିବୁନି ? ମକରା ପରା କହିକରି ଗଲା ଏକା ନୁହଁ ଦି' ଜଣ ଯାକ ଯିବ ବୋଲି ।

ହଉ ରହିଥା', ଯିବା ବେଳ ତ ଯାଇ କାଲିକୁ । ଯଦି ଏ ଗାଆଁର ଅନ୍ୟ ମାଇପେ ଯାଉଥିବେ ମୁଁ ଯିବି ।

ସତକୁ ସତ ପରଦିନ ଯାନିଯାତ୍ରା ଦେଖିଗଲା ପରି ଟ୍ରକ୍, ଟ୍ରାକ୍ଟର, ଟ୍ରେକର ଭର୍ତ୍ତି ହୋଇ ଚାଲିଲେ ସ୍ତ୍ରୀ, ପୁରୁଷ ସମସ୍ତେ । ଏକଲବ୍ୟର ଢିଅ ତଳେ ଟ୍ରକ୍ ଯେତେବେଳେ ହର୍ଣ୍ଣ ହେଲା ଏବଂ ଟ୍ରକ୍ ଭିତରୁ କିଏ ଜଣେ ଡାକ ଛାଡ଼ିଲା – ହୋ, କେଳାଭାଇ କୁଆଡ଼େ ଗଲକି, ଆସ, ଆସ, ଦି'ଜଣ ଯାକ ଆସ, ଆଉ ବେଳ ନାହିଁ ସବୁର କରିବାକୁ । ଘର ଭିତରୁ ବାହାରି ଆସିଲେ ଏକଲବ୍ୟ ଓ କୋଚିଲା । ଇଏ ଏକ ଅନନ୍ୟ ଅନୁଭବ ଥିଲା ସେମାନଙ୍କ ପାଇଁ । ନିମନ୍ତ କରିବା ସହ ଗାଡ଼ି ଘୋଡ଼ା ପଠାଇ ନେବା କ'ଣ ଛୋଟିଆ ସମ୍ମାନ । ଏକଲବ୍ୟ ଯେମିତି ବହୁଦିନରୁ ଅପେକ୍ଷା କରିଥିଲା ଏମିତି ଏକ ଡାକରା ପାଇଁ ।

ଟ୍ରକ୍ ଡାଲାରେ ଏକଲବ୍ୟ ଓ କୋଚିଲା । ଏକଲବ୍ୟ ପାଇଁ ଭୋଜି ଖାଇ ଯିବାଟା ନୂଆ କଥା ନ ଥିଲା, ମାତ୍ର ଏମିତି ଟ୍ରକ୍ ଡାଲାରେ ବସି ଭୋଜି ଖାଇଯିବା ନୂଆ ଥିଲା । ଏତଦ୍ ବ୍ୟତୀତ ନୂଆ ବି ଥିଲା ଆଗରୁ ଯେତେ ଭୋଜି ଖାଇ ଯାଇଥିଲା, ଯାଇଥିଲା ବିନା ଡକରାରେ । ସେଥିପାଇଁ ଶାଙ୍କୁଡ଼ି ଶଙ୍କୁଡ଼ି ହୋଇ ଭୋଜି ଜାଗାରେ ଗୋଟିଏ କଣରେ ଠିଆ ହୁଏ, କେବେ ବି ବସେନି ପଙ୍ଗତରେ । ଭୋଜିଭାତ ସରିବା ପରେ କେହି ଜଣେ ପରଷାଳୀ ତାକୁ ବସାଇଦିଏ ଗୋଟେ କୋଣରେ । ଥିଲେ ଖାଏ ମେଞ୍ଚାଏ,ନ ଥିଲେ ଖାଏ କେଞ୍ଚାଏ । ମାତ୍ର ଆଜିର ଏ ଅନୁଭବ ତା' ପାଇଁ ସମ୍ପୂର୍ଣ୍ଣ ନିଆରା ।

କୋଚିଲା କେବେ ଯାଇନଥିଲା ଭୋଜି ଖାଇ । ଗାଆଁମାନଙ୍କରେ ସ୍ତ୍ରୀ ଲୋକମାନେ ଭୋଜି ଖାଇ ଯାଆନ୍ତିନି, ଶୁଣିଥିଲା ଏକଥା କେବଳ ସହରମାନଙ୍କରେ ଚାଲେ । ଶୁଣିଥିଲା ଯେ ନିମନ୍ତ କଲେ ଯାଇ ଭୋଜି ଖାଇଯାଆନ୍ତି, ହେଲେ ପ୍ରଥମେ ପ୍ରଥମେ ଏକଲବ୍ୟର ବଳେ ପଶି ଭୋଜି ଖାଇ ଯିବାଟାକୁ ସେ ଏତେ ଗର୍ହିତ ବୋଲି ଭାବିନଥିଲା । ଯଦି ସେଦିନ ସାମଲ ସାହିରେ କାଚ ପିନ୍ଧାଇବା ବେଳେ ସେ ବୁଢ଼ୀଟି ପଚାରି ନଥାନ୍ତା, "ତୁ ମାଗିଖିଆ କେଳାର ଘରବାଲିତ ?" ତେବେ ହୁଏତ ତା' ମନକୁ ଏ ଚିନ୍ତା ଆସିନଥାନ୍ତା । ଭଲ ହେଲା, ବାରଣ କଲାରୁ ସିନା ଆଜି କେଡ଼େ ବଡ଼ ଲୋକ ମନ୍ତ୍ରୀଙ୍କ ଭୋଜିକୁ ନିମନ୍ତ ମିଳିଲା । ଖାଲି ଏକଲା ଏକଲବ୍ୟକୁ ନୁହେଁ, ତାକୁ ବି ।

ଭୋଜି ଜାଗା ଆହୁରି ଅଧମାଇଲିଏ ଥିଲା, ଗାଡ଼ି ଅଟକିଲା, ସମସ୍ତେ ଓହ୍ଲାଇଲେ ଗାଡ଼ିରୁ । ଜଣେ ମାମଲତକାରିଆ କହିଲା, ସମସ୍ତେ ଧାଡ଼ିବାନ୍ଧି ଚାଲ । ଧାଡ଼ି ଆଗରେ ଠିଆ ହୋଇଥିବା ଦୁଇଜଣଙ୍କ ହାତରେ ଧରାଇ ଦେଲା ଗୋଟେ ବ୍ୟାନର । ଜଣକ ପରେ ଜଣେ ଠିଆ ହେଲେ ଧାଡ଼ିରେ । ଲମ୍ବିଥିଲା ଧାଡ଼ି ଅଧମାଇଲିଏ ଯାଏ, ପାଦେ ପାଦେ ଘୁଞ୍ଚୁଥାଏ ଧାଡ଼ି ଆଗକୁ ଆଗକୁ । ତାଙ୍କ ପାଳି ଭୋଜି ଜାଗାରେ ପଡ଼ିବାକୁ ଲାଗିଗଲା ପାଖାପାଖି ଦୁଇ ଘଣ୍ଟା । ଖରାରେ ମୁଣ୍ଡ ଭାଇଁଭାଇଁ କରିବା ସହ ଶୋଷ ବି ଲାଗୁଥିଲା ପ୍ରବଳ । ଭୋଜି ସ୍ଥାନରେ ପହଞ୍ଚିବା ପରେ ତାକୁ ଲାଗିଲା ଯେମିତି ମହାବାରୁଣୀ ସ୍ନାନ ମେଳାପଡ଼ିଛି । ଏତେ ଲୋକ ହାଉଯାଉ ଓ ଗହଳି ଭିତରେ ସେ ଭୋଜି କେମିତି ଖାଇବ ଭାବି ପାରୁନଥିଲା । ଅବଶ୍ୟ ସେ ଚିନ୍ତା ତା'ର ଖୁବ୍ ବେଶୀ ସମୟ ରହିଲା ନାହିଁ । ସେମାନେ ସେହି ଧାଡ଼ିରେ ଛିଡ଼ା ହୋଇଥିବା ବେଳେ ସେମାନଙ୍କ ହାତରେ ଧରାଇ ଦିଆଗଲା ଗୋଟେ ଗୋଟେ ପେପର ପ୍ଲେଟ୍ । ସେମାନଙ୍କ ଧାଡ଼ିକୁ

ଶୃଙ୍ଖଳିତ କରି ନିଆଗଲା ଖାଦ୍ୟ ଷ୍ଟଲର ଆଗେ ଆଗେ । ଖାଦ୍ୟ ଆସିବା କ୍ଷଣି ସମସ୍ତେ ବଢ଼ାଇ ଦେଉଥିଲେ ନିଜ ନିଜ ପ୍ଲେଟ୍ । ପରକୁ ପର ଢଳାଯାଉଥିଲା ଗୋଟେ ଗୋଟେ ଆଇଟମ୍ । ଷ୍ଟଲର ଶେଷକୁ ପହଞ୍ଚିଲା ବେଳକୁ ସମସ୍ତଙ୍କ ପ୍ଲେଟ୍ ବି ହୋଇ ସାରିଥିଲା ଭର୍ତ୍ତି ।

ବସିବାକୁ ନ ଥିଲା ଜାଗା । ସମସ୍ତେ ଠିଆ ଠିଆ ଖାଉଥିଲେ । କୋଚିଲାକୁ ଭାରି ଅଡୁଆ ଅଡୁଆ ଲାଗୁଥାଏ ଏମିତି ଠିଆ ଠିଆ ଖାଇବାକୁ । ଭାବୁଥିଲା କେଉଁଠି ଟିକେ ବସିଯାଇ ଖାଇଲେ ହୁଅନ୍ତା । ତା' ମନକଥା ବୁଝିପାରି ଏକଲବ୍ୟ ତାକୁ ଡାକି ନେଲ । ଟେଣ୍ଟର ଗୋଟେ କଡ଼କୁ, କହିଲା – "ତୁ ଠିଆ ଠିଆ ଖାଇପାରୁନୁ ନା', ଆ' ଏଇଠାରେ ବସି ଖାଇନେବା । ଗାଆଁମାନଙ୍କର ଭୋଜିରେ ବି ମୁଁ ତ ଗୋଟେ କଣକୁ ବସି ଖାଇଥାଏ ।

କୋଚିଲା କହିଲା, "କି ଭୋଜି ମ ଇଏ ? ମୁଁ ଭାବିଥିଲି ଆସନ ପଡ଼ିଥିବ, ଆମେ ଚକାମାଡ଼ି ବସିବା । ଲୋକ ପରଶୁଥିବେ, ଆମେ ମନଭରି ଖାଇବା । ହେଲେ ଏଠି ତ ସବୁ ଭିକାରି ଲେଖାଏଁ ପ୍ଲେଟ୍ ବଢ଼ାଇ ମାଗୁଛନ୍ତି । ପେଟ ନ ପୂରିଲେ ବି ଆଉ ଥରେ ସେ ଭିତରେ ପଶି ଖାଇବା ଆଣିବା ଅସମ୍ଭବ । ଥରେ ଖାଇବା ପ୍ଲେଟ୍‌ଟିଏ ପାଇବା ତ କୌଣସି ଯୁଦ୍ଧରୁ କମ୍ ନୁହେଁ ।

ଏକଲବ୍ୟ କୋଚିଲାକୁ କହିଲା, "ମୁଁ ବଳେ ପଶି ନିମନ୍ତ ଖାଇବାକୁ ଚାଲିଯାଏ ବୋଲି ତୁ ମୋତେ ମାଗିଖିଆ କହି ରାଗୁଥିଲୁ । ଦେଖ୍, ଏଠି ସମସ୍ତଙ୍କୁ ଦେଖ, ସମସ୍ତେ କେମିତି ମାଗୁଛନ୍ତି ଦେଖ୍ । ଖାଲି ତ ମାଗୁ ନାହାନ୍ତି ରୀତିମତ ଯୁଦ୍ଧ ବି କରୁଛନ୍ତି ଖାଦ୍ୟ ପାଇବା ପାଇଁ । ଆଉ ରହିଲା ନିମନ୍ତ କଥା । ମନ୍ତ୍ରୀ କିଏ ନିମନ୍ତ ଦେଉଛନ୍ତି ଆମେ ଏଠି ଦେଖିଲେ ନା ଅନ୍ୟ କେହି ଦେଖିଲେ । ସମସ୍ତେ ଗାଡ଼ିରେ ଗୋରୁ ଲଦା ହୋଇ ଆସିବା ପରି ଆସିଲେ ଅନ୍ୟ କାହାର ଡକରାରେ । ଖାଇବେ, ପୁଣି ଲଦା ହୋଇ ଫେରିଯିବେ । ଇଏ ସମସ୍ତେ ବଳେପଶା, ମାଗିଖିଆ ମେହେମାନ୍ ନୁହନ୍ତି କି ?"

ରାଗି ନ ଥାନ୍ତି ? ଆମେ ସବୁ ଖାଆନ୍ତି ବୋଲି ଆମକୁ ଲୋକେ ସବାଖିଆ କେଳା କହନ୍ତି । ସେଥିରେ ଆମର ଗର୍ବ, କାରଣ ଯେତେ ଯାହା ହେଲେ ବି ଆମ ପେଟ ଅପୂରା କି ଅପୋଷା ରହୁନଥିଲା । ହେଲେ ତୁ ସବାଖିଆ କେଳାରୁ ମାଗିଖିଆ କେଳା ହେବୁ, ଏକଥା ମୁଁ କେମିତି ବା ସହି ଥାଆନ୍ତି ?





ଦୀର୍ଘ ଚାରି ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଧରି ଓଡ଼ିଆ ଗଳ୍ପ ଓ ଉପନ୍ୟାସ କ୍ଷେତ୍ରରେ ବିପୁଳ ପାଠକୀୟତା ଓ ଶ୍ରଦ୍ଧା ପାଇଥିବା ରାଜ୍ୟବର୍ଦ୍ଧନ ଧଳ ମହାପାତ୍ରଙ୍କର ତ୍ରୟୋଦଶ ଗଳ୍ପ ସଙ୍କଳନ "ଶାରୀ ଓ ମୂକ ପୁତ୍ରର କାହାଣୀ" । କାହାଣୀକୁ ଗଳ୍ପର ଆତ୍ମା ଓ ଶୈଳୀକୁ ଏହାର ଶରୀର ରୂପେ ଗ୍ରହଣ କରିଥିବା କଥାକାରଙ୍କ ବିଷୟ ନିର୍ବାଚନର ନିଆରାପଣ ସହ ପାତ୍ରୋଚିତ ଭାଷା ପ୍ରୟୋଗ ପାଇଁ ଭିଡ଼ ଭିତରେ ବି ସେ ବାରି ହୋଇ ପଡ଼ନ୍ତି । ତାଙ୍କର କଥା ସାମ୍ରାଜ୍ୟକୁ ପାଠକ ଥରେ ପ୍ରବେଶ କଲେ ସହଜରେ ମୁକୁଳି ପାରେନି ଯାଦୁକରୀ ଆବେଗ ଓ ଆବେଶରୁ । ନିବିଡ଼ ଅନ୍ତରଙ୍ଗତା ଓ ଅକୃତ୍ରିମ ନିରୀହପଣରେ ସାଉଁଟି ଥିବା ନାନାବିଧ ଅନୁଭବ, ଅନୁଭୂତି, ସ୍ୱପ୍ନ ଓ ସ୍ୱପ୍ନଭଙ୍ଗ, ଆଶା ଓ ନିରାଶା, ଜିଜ୍ଞାସା ଓ ଜିଜୀବିଷାକୁ ସେ ଏମିତି ଏକ ଦର୍ପଣ ପରି ଟେକି ଧରନ୍ତି ଯେ ପ୍ରତ୍ୟେକ ପାଠକ ସେଥିରେ ନିଜର ପ୍ରତିଛବି ଦେଖିଥାଏ ।

ଶ୍ରୀଯୁକ୍ତ ଧଳ ମହାପାତ୍ରଙ୍କର ଏହି ଗଳ୍ପ ସଙ୍କଳନ ବିପୁଳ ପାଠକୀୟତା ଓ ପାଠକୀୟ ଶ୍ରଦ୍ଧା ପାଇବ ବୋଲି ଗଭୀର ଆଶା ଓ ବିଶ୍ୱାସ ।

-ପ୍ରକାଶକ